# ସାହିତ୍ୟ ପ୍ରବେଶ

## ଗଦ୍ୟ—ବି, ଏ,

( ଉତ୍କଳର ପ୍ରାଚୀନ ଓ ଆଧୁନିକ ଗଦ୍ୟରୁ ସଂଗୃହୀତ )




ନୂତନ ମୁଦ୍ରଣ

ପ୍ରକାଶକ— ଉତ୍କଳ ବିଶ୍ୱବିଦ୍ୟାଳୟ

# କୃତଜ୍ଞତା ସ୍ୱୀକାର

ବି. ଏ. ପରୀକ୍ଷାରେ ଓଡ଼ିଆ ଗଦ୍ୟ ଓ ପଦ୍ୟ ସାହିତ୍ୟ ପ୍ରଭୃତି ବାଧ୍ୟତାମୂଳକଭାବରେ ପଢ଼ାଯିବାର ସ୍ଥିର ହେବାରୁ ଏ 'ସାହିତ୍ୟ ପ୍ରବେଶ' ପୁସ୍ତକ ପ୍ରକାଶିତ ହେଲା । ଏହି ପୁସ୍ତକରେ ପ୍ରାଚୀନ ଯୁଗରୁ ଆରମ୍ଭ କରି ଆଧୁନିକ ଯୁଗ ପର୍ଯ୍ୟନ୍ତ ବିଭିନ୍ନ ଗଦ୍ୟ ରଚନା ଆବଶ୍ୟକମତେ ପ୍ରକାଶ କରାଗଲା । ଯେଉଁ ଲେଖକ, ପୁସ୍ତକ ପ୍ରକାଶକ ବା ଲେଖକଙ୍କ ଉତ୍ତରାଧିକାରୀମାନେ ସେମାନଙ୍କର ଲେଖା ପ୍ରକାଶ କରିବା ନିମନ୍ତେ ଅନୁମତି ଦେଇ ଅଛନ୍ତି, ଏ ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷମାନେ ସେମାନଙ୍କ ନିକଟରେ କୃତଜ୍ଞ ।

---

# ସୂଚିପତ୍ର

| ବିଷୟ | ଲେଖକ | ପୃଷ୍ଠା |
|---|---|---|

---

ତାରକିତ ଗୁଡ଼ିକ ଗ୍ରନ୍ଥ ବା ପତ୍ରିକା,— ଉଦ୍ଧୃତ । ସମସ୍ତେ ପ୍ରବନ୍ଧ ଲେଖକ ଅଟନ୍ତି ।

ପ୍ରକାଶ ଥାଉକି ସୂଚିପତ୍ର ଅନୁଯାୟୀ ଗ୍ରନ୍ଥରେ ପ୍ରବନ୍ଧମାନ ଅନୁତାପ ପର୍ଯ୍ୟନ୍ତ ଠିକ୍ ଅଛି—ତାପର ସୂଚି ଅନୁଯାୟୀ ପ୍ରବନ୍ଧ ସଂଖ୍ୟାରେ ବ୍ୟତିକ୍ରମ ଘଟିଅଛି— ସୂଚୀ ଅନୁଯାୟୀ ପ୍ରବନ୍ଧର ସଂଖ୍ୟା ସଂଶୋଧନ କରିନେବେ ।

---

# ସାହିତ୍ୟ ପ୍ରବେଶ

(୧)

## ମାଦଳା ପାଞ୍ଜି

### ଅନଙ୍ଗଭୀମ ଦେବ

୧ମ ପାଞ୍ଜିମତେ—ଏ ଉତ୍ତାରେ ଅନଙ୍ଗଭୀମ ଦେବଙ୍କ ସାନ ଭାଇ ଭୀମ ପରିରାଏଙ୍କୁ ଭୀମନଗର ଦଣ୍ଡପାଟଂ ଅଣି ରାଜା କଲେ । ଏ ଦୁଷ୍ଟ ଅନଙ୍ଗଭୀମ ଦେବ ହୋଇଲେ । ଏ ରାଜା ନଗର ଚଉଦ୍ୱାରେ କଟକେ ବିଜେ କରିଅଛନ୍ତି । ଏମନ୍ତରେ ଏକ ଦିନକରେ ରାଜାଏ ବିଜେ କରି ଅସ୍ତି ମହାନଦୀ ପାର ହୋଇ ଏ ନଗରୁ ଦକ୍ଷିଣଗାରେ ଦେଖିଲେ କୋଦଣ୍ଡା ଦଣ୍ଡପାଠର ବାରବାଟି ଗ୍ରାମରେ ବିଲ୍ୱେଶ୍ୱର ଦେବଙ୍କ ସନ୍ନିଧେ ଶାମଲ ପକ୍ଷୀକି ବଗ ମାଡ଼ି ବସିଅଛି । ଏହା ଦେଖି ରାଜାଏ ବଡ଼ ଆଶ୍ଚର୍ଯ୍ୟ ପାଇ ଶୁଭଯୋଗ ଦିନରେ ଏ ବାରବାଟି ଗ୍ରାମରେ ଖୁଣ୍ଟ ଦେଇ ନଅର ତୋଳାଇ କଟକ କରି ଏ କଟକ ନାମ ବାଣରାଣୀ କଟକ ବୋଲି ନାମ ଦେଇ ନଗର ଚଉଦ୍ୱାର କଟକ ଛାଡ଼ି ଅସ୍ତି କଟକ କରି ରହିଲେ । ଥୋକାଏ ବରଷ ରାଜ୍ୟ ଉତ୍ତାରେ ଏକ ଦିନକର ରାତ୍ରରେ ରାଜା ପରମେଶ୍ୱରଙ୍କୁ ସପନରେ ଦେଖିଲାରୁ ପରମେଶ୍ୱରଙ୍କୁ ଦରଶନ କରିବାକୁ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରକୁ ବିଜେ କରି ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଦରଶନ

ଜରି ଝମୁରେ ଶାଢ଼ି ପ୍ରସାଦ ଲଗି ହୋଇ ଶ୍ରୀନବରେ ବସେ କରି ମୁଦଲ କରାଇଲେ । ଏ ମୁଦଲର ସ୍ରଷ୍ଟା ଶ୍ରୀବୀର ଶ୍ରୀଗଜପତି ଗଉଡ଼େଶ୍ବର ନବକୋଟି କର୍ଣ୍ଣାଟ କଲବରଗେଶ୍ବର ଅଭିରାଏ ଭୂତ ଭୈରବ ଦୁଃସହ ଦୁଶାସନ ଅଳାକରଣେ ରାଉତରାଏ ଅତୁଳବଳପରାକ୍ରମ ସଂଗ୍ରାମ ସହସ୍ରବାହୁ ଧୂମକେତୁ ଶ୍ରୀଅନଙ୍ଗଭୀମ ଦେବ ମହାରାଜାଙ୍କର ଶରଳ ଅଂ୫ଙ୍କ ଶ୍ରାହ୍ମ ଫଗୁଣ ଶୁକ୍ଳ ଦା୧୦ମୀ ତତ୍କାଳ ଏକାଦଶୀ ଗୁରୁବାରେ ଶ୍ରୀପୁରୁଷୋତ୍ତମ କଟକେ ଶ୍ରୀନବର ଦକ୍ଷିଣ ଘରେ ଦେବାର୍ଚ୍ଚନ ଅବସ୍ଥାରେ ଅଭିନବ ଯଯାତି ନଗର ବାସ୍ତୁ ଶ୍ରୀପାଦ ମୁଦଲେ ପୁରବୈଖି ନବରେ ବାକିଥରେ ବସେ ସମସ୍ତେ ପାଟଣେ ପାତ୍ର ପରମହଂସ ବାଜପେଇ ଦାମୋଦର ପୁରୋହିତ, ମହାପାତ୍ର ନୀଳକଣ୍ଠ ରାଜଗୁରୁ, ମହାପାତ୍ର ବଳଭଦ୍ର ପ୍ରହରାଜ, ମହାପାତ୍ର ଚଇନ ପାଟଯୋଷି, ମହାପାତ୍ର ଦାମୋଦର ପଣ୍ଡା, ପାତ୍ର ଗଙ୍ଗାଧର ପଣ୍ଡା, ପାତ୍ର ଚକ୍ରଧର ପଣ୍ଡା, ପାତ୍ର ବିଦ୍ୟାଧର ପଣ୍ଡା, ପାତ୍ର ଜଗନ୍ନାଥ ପଣ୍ଡା, ପାତ୍ର ନୀଳକଣ୍ଠ ପଣ୍ଡା, ପାତ୍ର ଶ୍ରୀମଙ୍କର ପଣ୍ଡା, ପାତ୍ର ଗୋପୀନାଥ ପଣ୍ଡା, ପାତ୍ର ବଳଭଦ୍ର ପଣ୍ଡା, ପାତ୍ର ପ୍ରୀତିଦାସ ମିଶ୍ର ଜେନା ବଡ଼ରାଏ ନରସିଂହ ଦେଓ, ଅଜୟ ଦେଓ, ପରିରାଏ ଅନନ୍ତ-ଦେଓ, ପରିରାଏ ଈଶ୍ବର ଦେଓ, ପରିରାଏ ଶମ୍ଭୁ ଦେଓ, ପରିରାଏ ହରିହର ଦେଓ, ପରିରାଏ ରାମ ଦେଓ, ପୋଇ ପାଣିଧର ପରୀକ୍ଷା ମିଥୁନ ପଣ୍ଡା, ପୋଇ ଶ୍ରୀକରଣ ପୁରୁଷ ପୁରନାୟକ, ମାରକଣ୍ଡ ମହାସେନାପତି ସମସ୍ତ ପାତ୍ର ଶଠନ୍ତି । ଧୂଡ଼ା ଲେଙ୍କା ଥାଇ ଠାକୁରେ ପୁରୁଣା ହୋଇ ଏମନ୍ତ ବୋଲି ତରପ କରାଇଲେ । ଠାକୁରେ ଏମନ୍ତେ ବୋଲିଛନ୍ତି ଯେ—ଶ୍ରେ ଲବଷ ମହାରାଜାମାନେ ଦେବତା ବ୍ରାହ୍ମଣଙ୍କୁ, ବାଲଭଣ୍ଡାରକୁ ରାଜଗାଡ଼—ତେଏକୁ ମଧ୍ୟ କରି ମୁଂ ଯେମନ୍ତ ପ୍ରକାରେ ଭିଆଣ କରି ହେଉଅଛୁ ଏଥିକି ତୁମ୍ଭେମାନେ ନ ପୁଣି ବୋଲି ସେ ହେଲି ଗଲେ ଅନ୍ତର କି ହୋଇଲା, ଅମ୍ଭେ କିମ୍ପା ଦବୁ ଏମନ୍ତ ନ ବୋଲିବ । ଏ ତ ଓଡ଼ିଶା ରାଇଜ ଯେ କେଶରୀ ରାଜାମାନଙ୍କୁ ଆଦ କରି ଗଙ୍ଗବଂଶ ଅନ୍ତ ଛପାଠ ସରିକି ରାଜ୍ୟ ଅଏ ହୋଇଥିଲା । ମୁଦଦରେ ଅର୍କକ୍ଷେତ୍ର ସୋମୋଦ୍ର

ଗାରଠାରୁ ପଶ୍ଚିମେ ଶ୍ରୀମନଗର ଦଣ୍ଡପାଟ ସରହଦ ଦକ୍ଷିଣେ ଅଏ ହୋଇଥିଲା । ଉତ୍ତରେ କାଅଁସାବାଅଁସାଠାରୁ ଦକ୍ଷିଣେ ଋଷିକୋଲ୍ୟା ନଦୀ ସରହଦ । କତ ସୁନା ପନ୍ଦର ଲକ୍ଷ ମାତ୍ରେ ଏହି ଖଣ୍ଡ ମଣ୍ଡଳ ହୋଇ ଅଏ ହୋଇଥିଲା । ଏମନ୍ତ ରାଜ୍ୟ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପଦାରବିନ୍ଦ ଧ୍ୟାଏ ବ୍ରାହ୍ମଣମାନଙ୍କର କଲ୍ୟାଣେ ଖଣ୍ଡାରେ ପଣ କରି ଭୁଇଁଅ ପୁରାଣମାନଙ୍କୁ ଜୟ କରି ଅଏ କଲେ । ଉତ୍ତରଦଗେ କାଅଁସାବାଅଁସାଠାରୁ ଦନାଇବୁଣ୍ଡ ନଦୀ ସରହଦ । ଦକ୍ଷିଣେ ଅଏ କଲେ ଋଷିକୋଲ୍ୟା ନଦୀଠାରୁ ରାଜମହେନ୍ଦ୍ର ଦଣ୍ଡପାଟ ସରହଦ । ପଶ୍ଚିମେ ଅଏ କଲେ ଶ୍ରୀମନଗର ଦଣ୍ଡପାଟଠାରୁ ବଉଦ ସୀମା ସୁନ୍ଦରପୁର ସରହଦ । ଏ ତିନି ଦଗରୁ ରାଇଜ ଅଏ କଲେ କତସୁନା ୨୦ ଲକ୍ଷ ମାତ୍ର । ଗାଏ ଦୁଇ ପଦରୁ କତ ସୁନା ୩୫ ଲକ୍ଷ ମାତ୍ର ଅଏ ହୋଇଲାରୁ ଦେବତା ବ୍ରାହ୍ମଣରୁ ନାନା ନିଯୋଗରୁ ବଳ ପୋଷିବାରୁ ରାଜାଗାଡିରୁ ଭଣ୍ଡାର ସରିବାରୁ ନାନା ବିଏରୁ ମଧ୍ୟ କରି ଭିଆଣ କରି ଦେଲେ । ହେ ମହାରାଜାମାନେ, ତୁମ୍ଭେମାନେ ଏହା ଅନ୍ୟଥା ନ କରିବ । ହରିଙ୍କର ତ ପାପ ଶ୍ରୁତି ସ୍ମୃତି ବଚନମାନରେ ଶୁଣୁଥିବ । ଏଥିରୁ ତୁମ୍ଭେମାନେ ଯେବେ ବଳାଅର ପଣ କରି ଲୋଭବଶରେ ହରିବ ତେବେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଚରଣରୁ ଦ୍ରୋହ କଲାରୁ ଯେ ପାପ-ତାହା ପାଇବ । ମୁଁ ଯାହା ଯଉଁ ପ୍ରକାରେ ଭିଆଣ କରି ଦେଇଅଛି ଦେବତା ବ୍ରାହ୍ମଣଙ୍କୁ ଭୋଗ କରାଇ ସେ ପ୍ରକାରେ ପ୍ରତିପାଳନ କରୁଥିବ । ସାମନ୍ତମାନଙ୍କୁ କଉଡ଼ି ଭାଗ ବରତନ, ମାହାନ୍ତମାନଙ୍କୁ ଦଶମାସି ଠଙ୍କା ବରତନ, ବାଣୁଆ ପାଇକ ମାନଙ୍କୁ ଦଶମାସି ଭୂମି ଭାଗେ ଓଡ଼ହୋଇ ବରତନ, ନିଯୋଗ ସେବକମାନଙ୍କୁ ଆଉ ସମସ୍ତ ସେବକମାନଙ୍କୁ ମଧ୍ୟ କରି ଭୂମିରେ କତ ସୁନା ବଉଳ ଦେଇ ପରିବାର ପୋଷୁଥିବ । ଭଣ୍ଡାର ସରିବାରୁ ଯଉଁ ପ୍ରକାରେ ରାଜ୍ୟରୁ ଘେନିବାରୁ ଭିଆଇଲା ଅଛି ସେ ପ୍ରକାରେ ଭଣ୍ଡାର ସରୁଥିବ ? ରାଜ୍ୟ ଯଉଁ ପ୍ରକାର ଭୂଇଁ ହଳରେ ମାତ୍ର ମୂଲ କରି ସୁନା ଭିଆଇଲା ଅଛି ସେହି ପ୍ରକାରେ ଯୁକ୍ତି ନକ୍ସି ବେକିଁ କରି ଘେନି ପରଜାଙ୍କୁ ପରିପାଳନ କରି ପୃଥିବୀ ଭୋଗ

କରି ସୁଖେ ସ୍ୱର୍ଗକୁ ଯିବ । ହେ ମହାବ୍ରାହ୍ମଣମାନେ ଏ ସବୁଠାରୁ ଧର୍ମହିଂ ହେତୁ କାରଣ । ରାଜ୍ୟରୁ ଏମନ୍ତ ମୁଦ୍ଗଲ କରାଇ ପାଣ୍ଡମାନଙ୍କୁ ଏମନ୍ତ ଅର୍ଘ୍ୟାଂ ଦେଲେ । ବୂଯ୍ୟାଂ ସୁବର୍ଣ୍ଣମାନଙ୍କୁ ଭୂଇଁରେ ଜୟ କରି ରାଜ୍ୟ ଜିଣି ଅଣିଲ ବାହାରେ ଯେ ଭଣ୍ଡାର ଧନମାନ ଅଣା ହୋଇଲା ସୁନା ୪୦ ଲକ୍ଷ ମାତ୍ର ରତନମାନ ଅଣି ହୋଇଛ । ମୂଲ ପ୍ରମାଣେ ମାତ୍ର ୭ ଲକ୍ଷ ୮୮ ହଜାର । ଗୋଏ ଦୁଇ ପଦକୁ ମାତ୍ର ଲ ୪୬୮୮୦୦୦ କ୍ଷ ଅଣି ହୋଇଛି । ଏ ଅମୂର ଅରକ୍ଷିତ ପଦାର୍ଥ । ଏଥିଂ ଅମ୍ଭେ ଥୋକାଏ ପ୍ରମେଶ୍ୱରଙ୍କ ଅଢ଼ଢରେ ଲଗାଇବାକୁ ଏଥକୁ ଅମ୍ଭେମାନେ ଏମନ୍ତ କଳ୍ପଣା କରୁଅଛୁଂ । ଯଯାତି ରାଜା ଯୋଉଂ ପାଟଳ ତୋଳାଇ ପ୍ରମେଶ୍ୱରଙ୍କୁ ବଢେ କରାଇଅଛନ୍ତି ସେ ପାଟଳ ଗୋଟି ଅଚ୍ଛ କଇଷମ ହୋଇଛ । ଏହା ଭାଙ୍ଗି ଶଏ ହଥ ଉଚେ ପ୍ରାସାଦ ଗୋଟିଏ ତୋଳାଇବା ପ୍ରମେଶ୍ୱରଙ୍କୁ । ଅଯୂତନ ଭିତର ଦେବତାମାନଙ୍କର ହେଉଳ ଗୋଠାମାନ ଅନ କରି ତୋଳାଇବା । ଏଥକୁ ଥୋକାଏ ସୁନା ଦବା । ପ୍ରମେଶ୍ୱରଙ୍କ ତଡାଜମାନ ଖଟଣି ଯୋଗାଡ଼ମାନଙ୍କୁ ମଧ୍ୟ କରି ଥୋକାଏ ସୁନା ଥୋକାଏ ରତନ ଦେବା ଅମ୍ଭେ ବିଚାରିଅଛୁଂ । ଏଥକୁ ପାଣ୍ଡମାନେ ଜଣାଇଲେ ଦେଓ ଏମନ୍ତ ଯେବେ ବିଚାରିବା ହୋଇଅଛ ଏବେ ହୋଇ ଭ କଥା ନାହିଂ । ଏ କଥାକୁ ବଡ଼ ବେଗ ଅବଧାନ ହୋଉ; ଧର୍ମସ୍ୟ ତ୍ୱରିତା ଗତି, ଧର୍ମ ବିଚାରିଲେ ବଡ଼ ବେଗ କରି । ଏତେ କେବଳ ଜଣାଉଅଛୁଂ ପ୍ରାସାଦ ଯେ ଶଏ ହାଥ ଉଚେ କରିବ ବୋଲି ବିଚାରିବା ହୋଇଅଛି । ଶସ୍ତର ନିତ୍ୟ ନୋହଇ ଏ ଅନିତ୍ୟ ଦେହ । ଏ ବହୁତ କାଳ ଲାଗିବ । ଏଥିଂ ଦଶ ହାଥ ତୁଟି ନଭ ହାଥ ହୋଇ ପ୍ରାସାଦ ହୋଇଲେ ବଡ଼ ବେଗ ହୋଇବ । ଏଥକୁ ରାଜାଏ ଅର୍ଘ୍ୟାଂ ଦେଲେ, ବିଚାରିବାରୁ ତୁଟିଲେ ଦୋଷ ହୋଇବ ପଣ । ଏଥକୁ ପାଣ୍ଡମାନେ ଜଣାଇଲେ ଦେଓ ବନ୍ଧ ହୋଇ ରହିଲେ ସେ ସବୁହିଂ ଅସାର ହୋଇବ । ଏଥକୁ ଠାକୁରେ ଅର୍ଘ୍ୟାଂ ଦେଲେ ହୋଉ, ନଉ ହାଥ ଉଚେ ପ୍ରାସାଦ ହୋଉ । ଏମନ୍ତକୁ ଶିଳ୍ପୀଶାସ୍ତ୍ରମାନ ଦେଖ, କୋଉଂ ପ୍ରାସାଦ ହେଲେ ବସ୍ତୁ ଯୋଗ୍ୟ । ଏଥକୁ ଭଟ୍ଟ ମିଶ୍ରମାନେ କହିଲେ

ପ୍ରାସାଦ ଯେ ଛତିଶ ପ୍ରକାରେ । ଏଥିରୁ କୋଡ଼ିଏ ପ୍ରକାର ପ୍ରାସାଦ ଶ୍ରେଷ୍ଠ, ଏଥି ଭିତରୁ ଶ୍ରୀବତ୍ସ ଖଣ୍ଡଶାଳ ହୋଇ ଯଜଂ ପ୍ରାସାଦ ସେ ପ୍ରାସାଦ ହରିର ବଡ଼ ପ୍ରିୟ । ଏହା ଶୁଣି ରାଜାଏ ଆଗ୍ୟାଂ ଦେଲେ ଏହି ପ୍ରାସାଦ ତୋଳ କରିବ । ଏଥିରୁ ଦେଉଳ ତୋଳ ରୁ ଦେଲେ ପରମହଂସ ବାଜପେଇ ମୂଲେ ସୁନା ୧୦ ଲକ୍ଷ ମାଢ଼ । ପରମେଶ୍ୱରଙ୍କ ଅଳଙ୍କାରକୁ ସୁନା ୨ ଲକ୍ଷ ୫୦ ହଜାର ମାଢ଼ । ଗାଏ ୨ ପଦକୁ ସୁନା ୧୨ ଲକ୍ଷ ୫୦ ହଜାର ମାଢ଼ ଏ ଦେଉଳ ତୋଳାକୁ ଖର୍ଚ୍ଚ ଦେଲେ । ୧୫ ଅଙ୍କ ଫଗୁଣ ଶୁକ୍ଳଦଶମୀ. ଉତ୍ତାଳ ଏକାଦଶୀ ଗୁରୁବାର ବେଳ ୧୪ ଦଣ୍ଡ କରି ପରମେଶ୍ୱରଙ୍କୁ ସମ୍ମୁଖେ ବୃଷଲଗ୍ନେ ଅଭିଜିତ ମୂହୂର୍ତ୍ତେ ତୋଳାଇ ଦେଉଳ ପ୍ରତିଷ୍ଠା କଲେ କରାଇ ଭୋଗ ମାଡ ଫୁଲ ଭିଆଇଲେ ।

ଏ ରାଜ୍ୟପାଳ ନଳ କଲେ । ଗଙ୍ଗାକୂଳରୁ ଗୋଦାବରୀ ପାଏ ସୁରନଦୀ କୂଳରୁ ବେଣୀନଦୀ ପାଏ । ଏ ରାଜା ଏଏ ହୋଏ ଯେତେ ଯାଏ ନଳ ମାଇଲ ଦଣ୍ଡୀ ଗୋପନ୍ତ କଣିଆ ବଣିଆ ନଦୀ ପର୍ବତ, ଭୂମି ୬୨ ଲକ୍ଷ ୨୮ ସହସ୍ର ବାଟି । ଦଣ୍ଡୀ ଗୋପନ୍ତ କଣିଆ ନଦୀ ପର୍ବତ ମଧ୍ୟ ୧୨ ଲକ୍ଷ ୮୦ ସହସ୍ର ବାଟି ଯାଇ ରହିଣି ୪୭ ଲକ୍ଷ ୪୮ ସହସ୍ର ବାଟି ତା ରାଜାଙ୍କର କୋଠେ ବରତନ ବଏ ୨୫ ଲକ୍ଷ ୩୦ ହଜାର ବାଟି ରହିଣି ୨୦ ଲକ୍ଷ ୧୮ ହଜାର ବାଟି । ଏଥିରୁ ମହାରାଜାଙ୍କ ଫଉଦ ଅଠନ୍ତ ଦନ୍ତା ମସ୍ତ ମାଖନା ହାଥିଣୀ ମଧ୍ୟ ଦୁଇ ହଜାର ପାଞ୍ଚଶ ଘର । ଚଉଦ ପ୍ରଭରେ ଗୁଜ୍ଜର ଘୋଡ଼ା ବାଖର । ୨୦ ହଜାର ବାଣୁଆ, ଧନୁକା, ଫଡ଼ିକାର, ଇଟିକାର; ମଧ୍ୟ ପାଇକ ୩ ଲକ୍ଷ ଜଣ ।

ଏ ରାଜା ଛତିଶା ନିଯୋଗ କରାଇଲେ । ଷୋଳ ସାଆନ୍ତ ପଦମାନ ଦେଲେ । ଛତିଶହ ଖଣ୍ଡ ପଡ଼ିଆ ପେଣ୍ଠ କଲେ । ଛତିଶ ପାଟଣ ଘାଟ ବସାଇଲେ । ଘାଇ ନଈ ବନ୍ଧାଇବାକୁ ଲାଗିଲେ ୧ ଲକ୍ଷ ୮୦ ହଜାର କାହାଣ । ଏ ମହାରାଜା କାଟିଲ ବ୍ରହ୍ମହତ୍ୟା କଲେ । ଏଥିରୁ ପ୍ରାୟଶ୍ଚିତ କଲେ । ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କୁ ୧୦ ହଜାର ସୁନାଅ

ମୋହର

ଦେଲେ । ନିତ୍ୟ ପ୍ରମାଣେ ଭୋଗ ଭିଆଇଲେ । ମୋଟେଣାହି ଦ୍ୱାର ଅଳ ଛତ୍ରକୁ ୧୦ ହଜାର ଭରଣ ଧାନ ଭିଆଇଲେ । ୮୪ ଗୋଟା କୂଅ ଖୋଳାଇଲେ । ୬୦ ଗୋଟା ସାନ ଦେଉଳ ତୋଳାଇଲେ । ୪୫୬ ଶାସନ ବସାଇଲେ । ଏ ମହାରାଜା ଅଳ୍ପଦିନେ ବହୁତ କୀର୍ତ୍ତି କଲେ । ଏ ରାଜା ଭୋଗ କଲେ ବ ୨୭ ବର୍ଷ ।

ଅନ୍ୟ ପାଞ୍ଜିମାନଙ୍କରେ ଅଧିକାः—ରାଜା ବଡ଼ ଦେଉଳ ତୋଳାଉ ଥିଲେ । ଏଥିରେ ଜଙ୍ଘା ସିଂହ ବାଙ୍କ ହୋଇ ବସିଲା । ଏଥିକି ବାଢ଼ଣୀ ସଳଖି ନ ପାରିଲେ । ଏ ରାଜା ବଡ଼ ବିସ୍ମୟ ହୋଇ ନିରାହାର କରି ଶୋଇଲେ । ଏ ଦିନ ମହାପ୍ରଭୁଙ୍କର ମଣାଣିଆ ବିକ୍ରମନ୍ତଙ୍କୁ ଅଗ୍ୟାଂ ହୋଇଲା । ସେ ଅସ୍ତି ଖିଅକୁ ସଳଖି ବସାଇଲେ । ଏ ରାଜା ଦେଖି ବଡ଼ ଆନନ୍ଦ ହୋଇଲେ । × × × ପଛ, ମୁଦରଥ, ପଣ୍ଡା, ପଣୁପାଳକ, ଖୁଣ୍ଟିଆ, ସୁଆର ବଡ଼ୁ, ପତୀ ବଡ଼ୁ, ଗରବଡ଼ୁ, ସୁଆର ମୁଦୁଲି, ପଡ଼ିଆରି ଆଦି ସମସ୍ତ ସେବକ କରି ଛତିଶ ନିଯୋଗ କଲେ । ଶ୍ରୀନଗରରେ ତୋଳ ସାଆନ୍ତ ବାନ୍ଧିବା ନିଯୋଗ କଲେ । ପଦମାନ ଦେଲେ । ଶ୍ରୀପୁରୁଷୋତ୍ତମ ପୁରେ ଦେଉଳ ଦୁଇ ପାଖରେ ବଳଭଦ୍ର ପୁର ଜଗନ୍ନାଥ ପୁର କରି ଦୁଇ ଶାସନ କଲେ । ଦ୍ୱାଦଶ ଯାତ୍ରା ପର୍ବ ପର୍ବାଣିମାନ ଭିଆଣ କଲେ । ନାରାୟଣ ମୂର୍ତ୍ତିକି ବିଜେ ପ୍ରତିମା କଲେ । ସେଠାରୁ କେତେଦିନ ଉତ୍ତାରୁ ରାଜାଙ୍କୁ ବ୍ରହ୍ମହତ୍ୟା ଲାଗିଲା । ଏ ସକାଶୁଂ ବ୍ରାହ୍ମଣମାନେ ନମସ୍କାର ନ ନେଲେ । ଦେବାର୍ଚ୍ଚନା ନ କଲେ । ଏ ରାଜା ବହୁତ କାତର ହୋଇଲେ । ବ୍ରାହ୍ମଣେ କହିଲେ ଏଥକୁ ପ୍ରାଶ୍ଚିତ୍ତ ନାହିଂ । କୀର୍ତ୍ତିମାନ କର ।

( ୨ )

# ଛୁଦ୍ର ସୁଧାନିଧି

## ଅବଧୂତ ନାରାୟଣ

ମନର ଶୋକ ମୋହ ପ୍ରାଣର କ୍ଷୁଧା ପିପାସା, ଦେହର ଜରା ମୃତ୍ୟୁ ଏ ଷଡ଼ ଊର୍ମି ବେଢ଼ିବ । ସମସ୍ତ ଅବସ୍ଥାମାନ ସ୍ଥାବର ପ୍ରାଏକ ହୋଇ ଏ ଶରୀର ସହିବ । ଚିତ୍ତ ଚଞ୍ଚଳ କଳ୍ପନା ନିଦ୍ରା ମୂର୍ଧ ଏ ଯୋଗଂ ଅବିଦ୍ୟା ଅଭ୍ୟାସ, ସେ ସତ ବୋଲି ମୋତେ ହୋଇବ ପ୍ରକାଶ । ବିଷୟା ବିଷ ଘାରିବ, ଧଇର୍ଯ୍ୟ ସରିବ, କ୍ଷୋଭ ଚଳିବ, ତୃଷ୍ଣା ବଳିବ, ବ୍ୟାଧି ଆକର୍ଷିବ, ହିଂସା ବସିବ, ଆଶା ଦଂଶିବ, ତ୍ରିଗୁଣ ଛନ୍ଦିବ, ଜନ୍ମ ମରଣ ରୁନ୍ଧିବ, କର୍ମ ବାନ୍ଧିବ, ଅବିଦ୍ୟା ଚୁମ୍ବିବ, ମୋହ ବଢ଼ିବ, ବିବେକ ଉଡ଼ିବ, ଚିନ୍ତା ଜ୍ୱରେ ବୁଡ଼ିବ, ମାୟା ମୋହିବ, ଛଳ ଦଂଶିବ, ଅଗ୍ୟାନ ଘୋଟିବ, ଷଡ଼ଊର୍ମି ବେଢ଼ିବ, ବିଭ୍ରମ ବଳକାର କରିବ, ମୁକ୍ତିପଥକୁ ଗ୍ୟାନ ନେବ, ଗ୍ୟାନ ଉଡ଼ିବ ଶାନ୍ତି ଛାଡ଼ିବ, ସେନେହ ପୀଡ଼ିବ, ସମସ୍ତ ଫୁଲିବ, ଚିତ୍ତ ଭୁଲିବ, ଅବିଦ୍ୟା ଭ୍ରମ ବଳକାରେ ମୁଁ ପଦକୁ ନେବ, ଚିତ୍ତର ଚଞ୍ଚଳ ବୁଦ୍ଧିର କଳ୍ପନା ନିଦ୍ରାର ସ୍ୱପନ ଅବିଦ୍ୟାର ଅଭ୍ୟାସ ନିଶ୍ଚୟ ଶରୀରେ ହୋଇଥିବ ପ୍ରକାଶ । ଏ ଦେହ ନିଶ୍ଚୟ ମୁଁ ବୋଲି ମନବୁଝି ଘେନିମ । ବ୍ୟାଧିଙ୍କର ପରିକ୍ରିୟା ଔଷଧକୁ ସୁଖଭୋଗ ବୋଲି ମନବୁଝି ଘେନିମ । ତ-କେବଣ କେବଣ ପ୍ରକାରେ । ତୃଷା ବ୍ୟାଧିକି ଲୋଡ଼ିବ ପଣା ପୟୋଦରସ, କ୍ଷୁଧାବ୍ୟାଧି ଶାନ୍ତି କରିବ ଔଷଧ ପ୍ରକାରେ ଅନ୍ନ ବ୍ୟଞ୍ଜନ ଦ ବିବିଧ ଗ୍ରାସ । କ୍ଷୁଧା ବ୍ୟାଧି ନ ଥିବ ଯେବେ । ଅନ୍ନ ପାଣି କାମ। ଲୋଡ଼ିବ ତେବେ । ଗ୍ରୀଷ୍ମ

ଋତୁରେ ଯେବେ ଶରୀର ପୋଡ଼ଇ । ସେ ତାପ ବ୍ୟାଧିକି ଔଷଧ ଚନ୍ଦନ ଲେପଇ । ହେମନ୍ତ ଋତୁରେ ଯେବେ ଶୀତ ବ୍ୟାଧି କରଇ । ବେଶ୍ୱରେ ଚନ୍ଦ୍ରକୁ ଆଦର କରଇ ।

× × × × ×

ଯେଣୁ ଅନିତ୍ୟ ଶରୀର । ସମସ୍ତ ଦୁଷ୍କର୍ମମାନଙ୍କର ଏ ଅଟଇ ଘର । ମେଦଅସ୍ଥିନିର୍ମାଣ ଅତ୍ୟନ୍ତ ଜଡ଼ ଶରୀର ବନ୍ଧ କେବା ହୋଇବ ବନ୍ଧ । ବ୍ୟାଧିମାନଙ୍କର ଏ ତ ବଢ଼ିବା ସଦନ । × × ଅନବରତ ନବଦ୍ୱାରେ ସ୍ରବୁ ଥାଇ ନରକ । ଖାଦ୍ୟ ଅଭ୍ୟନ୍ତରେ ବସୁରଲେ କେହ ନିନ୍ଦକ ସରକ । ଏ ଗୁଣ ବନ୍ଧନ ଦଜଡ଼ ଜଡ଼ ଶରୀରକୁ ଧୁଃସହ ଦୁଃଖ ଯେତେକ । ଅହଂକାର ପ୍ରାୟେକ ହୋଇ ଯୁବା ଅବସ୍ଥାରେ ମୁଁ ଗାର୍ବ ତେତେକ । ଶୁଣ ନାଥ । ଏଥର ଅନ୍ତରେ ଯେ ହୋଇବ ଜରା । ଏ ଶରୀର ଦଶିବ ନଟବଦ୍ୟାର ତରଙ୍ଗ ପରା । ଭ୍ରମରକୁ ନନ୍ଦଇ ଯେବଣ ସେ କେଶ । ଶ୍ୱେତ ଚୂମର ପ୍ରାଏକ ହୋଇବ ପ୍ରକାଶ । ନୀଳୋତ୍ପଳ ପ୍ରାୟେକ ଯେବଣ ସେ ଚକ୍ଷୁ । ସେ ମର୍କଟ ବକ୍ତ ନୟନ ସ୍ଥାଣ ହୋଇବ ଦେଖୁଁ ଦେଖୁଁ । ଶୁଦ୍ଧ ସୁବର୍ଣ୍ଣ ପ୍ରାୟେକ ଯେବଣ ଶରୀର କାନ୍ତି । ସେ ଶୁଷ୍କ ଶବର ପ୍ରାୟ ଦଶିବ ଦେହର ଭ୍ରାନ୍ତି । ସିଂହବକ୍ଷ ପ୍ରାୟେକ ଯେବଣ ମଝା । ସେ ଲଙ୍ଗଳ କାଠର ପ୍ରାୟେ ଦଶିବ କୁବୁଜା । ତୁଣ୍ଡରୁ ନିରନ୍ତରେ ଗଳୁଥିବ ଲାଳ । ବକ୍ଷସ୍ଥଳ ପାଞ୍ଜ ବସିଥିବ ଗାଲ । ହାଡ଼ମାଳ କଙ୍କାଳ ଯେ ଦେହ ଦଶଇ । ସଂଯୋଗେ ଅସ୍ଥି ବଳ ହାଳ ତ ପିଶଇ । ନୟନ ଗଳଇ ଜଳକୁ କରଇ ତୁଣ୍ଡ । ବାତେ ପଦପ ପ୍ରାୟେ ହୋଇ ହଲୁଥାଇ ମୁଣ୍ଡ । ଚାଲିଲେ ଝଟଇ, ବଳ ତୁଟଇ, ଉଠିଲେ ଫୁଟଇ, ଚରଣ ଲୋଟଇ, ହସିଲେ କାଶଇ, ଭେଡ଼ାକେ ବସଇ, ଲଉଡ଼ ଧରି ଥର ଥର ହୋଇ ଉଠଇ । × × ଶୁଣ ନାଥ । ଭୋଗ ଇଚ୍ଛା ସରଇ, ସପ୍ତଧାତୁ ମରଇ, ସଦବୁଦ୍ଧି ହରଇ, ବହୁଳ କରଇ, ପ୍ରପଞ୍ଚ ଦଶଇ, କେଶ ଖସଇ, ଧୈର୍ଯ୍ୟ ନାଶଇ ଶିର ସଙ୍କୋଡ଼ଇ, ସ୍ନେହ ଟାଙ୍କୋରଇ, ହୃଦୟ ନହଙ୍କଇ, ଜାନୁ କମ୍ପଇ,

ନିଶ୍ୱାସ ଧକଇ, ନିଦ୍ରା ଯାଉଥିଲେ ସ୍ୱପ୍ନାବସ୍ଥାରେ ପ୍ରଳାପ କରଇ, ଭୋଜନ ଅଙ୍ଗାରନ୍ଧି ନ କରଇ । ଅଗ୍ନି କ୍ଷୀଣ । ନୂଆଗନ୍ଧ ନ ଶୁଙ୍ଘଇ ଶୁଣ୍ଠି ଲୀନ । କଣ୍ଠମୂଳ ପଶିଯାଇ, ଦାନ୍ତ ଖସିଯାଇ । ଅମୃତ ସମାନ ଗ୍ରାସ ପାଉଁଳାଇ ଖାଇ ।

( ୩ )

# ଶ୍ରୀ ପୁରୁଷୋତ୍ତମ ଦେବଙ୍କ ଦାନ ଶାସନ ପଟ୍ଟା

### ପ୍ରାଚୀନ ଗଦ୍ୟପଦ୍ୟାଦର୍ଶରୁ ଗୃହୀତ

### ୧୪୭୨ ଖ୍ରୀଷ୍ଟାବ୍ଦ

ଶ୍ରୀ ଜୟଦୁର୍ଗାୟୈ ନମଃ । ବୀର ଶ୍ରୀଗଜପତି ଗଉଡ଼େଶ୍ୱର ନବକୋଟି କର୍ଣ୍ଣାଟ କଲବର୍ଗେଶ୍ୱର ଶ୍ରୀପୁରୁଷୋତ୍ତମଦେବ ମହାରାଜାଙ୍କର ପୋତେଶ୍ୱର ଭଟ୍ଟଙ୍କୁ ଦାନ ଶାସନ ପଟ୍ଟା । ଏ ଅ୫ ଙ୍କ ମେଷ ଦି୧୦ନ ଅଂ ସୋମବାର ଗ୍ରହଣ କାଳେ ଗଙ୍ଗାଗର୍ଭେ ପୁରୁଷୋତ୍ତମ ପୁର ଶାସନ ଭୂମି ଚଉଦଶ ଅଷ୍ଟୋତ୍ତର ବା୧୪୦୮ଟି ଦାନ ଦେଲୁଂ । ଏ ଭୂମି ଯାବଚନ୍ଦ୍ରାର୍କେ ପୁତ୍ର ପୌତ୍ରାଦ ପୁରୁଷାନୁକ୍ରମେ ଭୋଗ କରୁଥିବ । ଜଳାରାମ ନିକ୍ଷେପ ସହିତ ଭୂମୀ ଦେଲୁଂ ।

ଯାବଚନ୍ଦ୍ରଶ୍ଚ ସୂର୍ଯ୍ୟଶ୍ଚ ଯାବତ୍ତିଷ୍ଠତି ମେଦନୀ<br>
ତାବଦ୍ଦତ୍ତା ମୟା ହ୍ୟେଷା ସଂଯୁକ୍ତା ଚ ବସୁନ୍ଧରା ।<br>
ସ୍ୱଦତ୍ତାଂ ପରଦତ୍ତାଂ ବା ବ୍ରହ୍ମବୃତ୍ତିଂ ହରେତ ଯଃ<br>
ଷଷ୍ଟିର୍ବର୍ଷ ସହସ୍ରାଣି ବିଷ୍ଠାୟାଂ ଜାୟତେ କ୍ରିମିଃ ।

ଶ୍ରୀ ମଦନ ଗୋପାଳଂ ଶରଣଂ ମମ<br>
ମୁଦ୍ରିକ ଚକ୍ର, ଶଙ୍ଖ, ଖଣ୍ଡା ଓ ଢ଼ାଲ ।

(୪)

# ଘୁମୁସର ରାଜା ବଂଶାବଳୀ

## ମାଦଳା ପାଞ୍ଜି

ଏହାଙ୍କ (ବନମାଳୀ ଭଞ୍ଜଙ୍କ) ମାଇ ଏହାଙ୍କ ଭାଇ ଗୋପୀନାଥ ଭଞ୍ଜ ରାଜୁତି କଲେ ୧୫୪୮ ଶକାବ୍ଦ ସରକି ବ ୨୨ ର୍ଷ । ୧୫୪୧ ଶକାବ୍ଦରେ ଗୋପୀନାଥପୁର ଶାସନ କଲେ । ଏହାଙ୍କ ଧନଞ୍ଜୟଭଞ୍ଜ ୧, ଗୋବିନ୍ଦ ଭଞ୍ଜ ଥାଟ ରାଜା ୨, ବଳଭଦ୍ର ଛୋଟରା ୩, ନଧିଭଞ୍ଜ ସାମନ୍ତ ସିଂହାର ୪, ଏ ଚାରିପୁଅ ତାଙ୍କର ହୋଇଥିଲେ । ତାଙ୍କ ଭିତରୁ ବଡ଼ପୁଅ ଧନଞ୍ଜୟ ଭଞ୍ଜ ରାଜତ୍ୱ କଲେ । ଏ ରାଜତ୍ୱ କଲେ ଓ ରାଜତ୍ୱ କରିବାରେ ଷାଠିଏ ହଜାର ଟଙ୍କା ଲଗାଇ ଜଗନ୍ନାଥ ଗୋଟିଏ ଛଅର କରିଥିଲେ ୫ଟ ବୋଲ ବାଙ୍କିସୁଆ ରତନଜଡ଼ିତ କରି ଛଅର କରିଥିଲେ । ଏହାଙ୍କ ବିଶେଷ ମହାଦେଈ ରାଣୀ କରିଥିଲେ । ଏ ବଡ଼ ଭୋଗୀ । X X ଏ ରାଜ ଧୁଇଧଡ଼ ଥାଏ ସବୁ ଚଳନ୍ତି ଦୁଧ ଯୋଗଣ କରନ୍ତି । ଏ ରାଜା ଧନଞ୍ଜୟପୁର ଶାସନ ୧୫୭୮ ଶକାବ୍ଦରେ କଲେ । ଏପରି ଯଶମାନଙ୍କୁ କରି ରାଜତ୍ୱ କରିବାରେ ଏ ରାଜତ୍ୱ କଲେ ୧୬୨୩ ଶକାବ୍ଦ ସରକି ବ ୬୪ ର୍ଷ । ଏଥିରୁ ୧୬୧୬ ଶକାବ୍ଦ ସରକି ପେସକସି ତାହାକୁ ଦବାର ନ ଥିଲା । ୧୬୧୭ ଶକାବ୍ଦ ସରକି ମୁଗଲଇ ନବାବ ଅସିବାରେ ଏକ ବର୍ଷ ୫୦୦୦ ଙ୍କା ପାଞ୍ଚହଜାର ଟଙ୍କା ଜେଖାଏଂ ମୂଲ କଲେ । ସେ

ଜନରୁ ପେସକସ ଦେବାର ହେଲା । × × × । ଏ ସମୟରେ ସୁଆଗୀ ମହାଦେଈ ହାଡ଼ି ଦେଈଙ୍କଠାରେ ରାଜାଙ୍କର ବଡ଼ ସ୍ନେହ ଥାଏ । ସେ ମହାଦେଈ ପୁଅ ନୀଳକଣ୍ଠ ଭଞ୍ଜଙ୍କୁ ଗାଡ଼ି ଦେବେ ବୋଲି କହୁଥାଆନ୍ତି । ( ବଡ଼ ) ଗଙ୍ଗାଧର ପାଟକୁମାରଙ୍କଠାରେ ଗୋବିନ୍ଦ ଭଞ୍ଜ ଆଠରାଜାଙ୍କର ଛଅ ପୁଅ ପ୍ରୀତି କରୁଥାନ୍ତି । ହାଡ଼ିଦେଈ ତାହା ଶୁଣି ରାଜାଙ୍କଠାରେ କମନ କରି ଖିଲ କହିଲେ । ଗୋବିନ୍ଦ ଆଠରାଜାଙ୍କୁ ଛ ପୁଅ ସମେତରେ ରାଜ୍ୟରୁ ଅନ୍ତର କରାଇ ଦେଲେ । × × । ଏ ଉତ୍ତାରୁ ବହୁତ କାଳ ଯାଇବାରୁ ହାଡ଼ିଦେଈ ବିଗୁରିଲେ । ଏ ତ ବହୁତ କାଳ ରାଜତ୍ୱ କଲେ । ପୁଅ ମୋର ରାଜା ହୋଇ ନ ପାରିଲା । ଏମନ୍ତେ ଦୁବ ଷୀର କରି ଚମ୍ପା ନାଗୀ ହାତେ ସରୁ ଚକୁଳି ଖାଇବାରେ ସେଥିରେ ବିଷ ଦିଆଇଲେ । ପୁଅ ନୀଳକଣ୍ଠ ଭଞ୍ଜଙ୍କୁ ବାପାଙ୍କୁ ଏ ସମୟରେ ଅପାୟୁ ବିଗୁର କର ବୋଲି କହିଦେଲେ । ନୀଳକଣ୍ଠ ଭଞ୍ଜ ତାହା ଜାଣି ବାପାଙ୍କୁ ମାଇଲେ ଇତ୍ୟାଦ । ନୀଳକଣ୍ଠ ଭଞ୍ଜ ରାଜ୍ୟରୁ କଟଲ ୧୬୨୫ ଶକାବ୍ଦ ସନ୍ଧିକ ବ ୨ ବର୍ଷ ।

( ୫ )

# ଚତୁର ବିନୋଦ

## ଁ ବ୍ରଜନାଥ ବଡ଼ଜେନା

( ପ୍ରୀତିବିନୋଦରୁ କେତେକ ଅଂଶ )

ମୋହନାଙ୍ଗକୁ ପୁଣି ଚଞ୍ଚଳାକ୍ଷୀ କହିଲା, ହେ ପ୍ରିୟତମ ! ପ୍ରୀତି-ବିନୋଦ ବୋଲି ଯଉଁ କଥା ତାହା ତେବେ କହିବା ହୋଉ । ମୋହନାଙ୍ଗ ବୋଇଲା ହୋଉ, ତେବେ ପ୍ରୀତିବିନୋଦ କଥା କହିବା, ଶୁଣ,

କଥା —ପ୍ରୀତି ଯେ ସେ ଏକ ପ୍ରକାର ନୁହଇ । ତେବେ କେତେ ପ୍ରକାର କି ? ନାଁ ଶଠପ୍ରୀତି, ଦୁଷ୍ଟପ୍ରୀତି, ନୀଚପ୍ରୀତି, କାର୍ଯ୍ୟଯୋଗପ୍ରୀତି, ପ୍ରବଳ ଶଠପ୍ରୀତି, ଅଭେଦପ୍ରୀତି, ପରସ୍ପରପ୍ରୀତି, ନିଜସୁଖପ୍ରୀତି, ଏରୂପେ ବହୁତ ପ୍ରକାର ଅଛି, ତହିଁକି ଚଞ୍ଚଳାକ୍ଷୀ କହିଲା, ଶଠପ୍ରୀତି କେମନ୍ତ କି ?

ମୋହନାଙ୍ଗ କହିଲା :—

ସେ ଯେ କର୍ମପୁର ନାମେ ବ୍ରାହ୍ମଣ ଜଣେ ଥିଲା । ସେ ବ୍ରାହ୍ମଣ ଗଙ୍ଗାସ୍ନାନ କରିବାକୁ ବାହାରିଲା । ଘରଠାରୁ ଦୁଇକ୍ରୋଶ ବସା ଗଲା ଉତ୍ତାରୁ ଏକ ବନକରେ ନାପିତ ଜଣେ ସେ ବ୍ରାହ୍ମଣକୁ ଦେଖି କିଛି ଦୂର ଯାଏ ତାଙ୍କ ସଙ୍ଗେ ଗମନ କରନ୍ତେ ଅନୁମାନ କଲା ବ୍ରାହ୍ମଣଠାରେ ଧନ ଅଛି । ଏ ଧନ ଏହାଠାରୁ କିରୂପେ ନେବି ଏମନ୍ତ ବିଚାରି ବ୍ରାହ୍ମଣ ପଛେ ପଛେ ଯାଉଥାଇ । ଦୁଇ ଚାରି କୋଶ ପଥ ହୁଅନ୍ତେ କର୍ମପୁର ପଚାରିଲେ ଅରେ ବାବୁ, ତୁ କି କୁଳରେ ଜନ୍ମ ? ତୋ ଘର କେଉଁଠାରେ ? ତୋ

ନାମ କି ? କେଉଁଠିକି ଯିବ ତାହା କହ । ନାପିତ କହିଲା, ମୁଁ ଜାତିରେ ଗୋପାଳପୁତ୍ର, ମୋ ଘର ମଗଧ-ଦେଶରେ, ମୋ ନାମ ମନମନୁଆଁ ; ଗଙ୍ଗାସ୍ନାନ କରିବାକୁ ଆସିଛି । ଯେବେ ଉତ୍ତମ ସଙ୍ଗ ମିଳନ୍ତା ତେବେ ତା ସଙ୍ଗେ ଯାଆନ୍ତି । ଗୋସାଇଁ କେଉଁଠିକି ଗତି କରୁଛ ? ସେ ବୋଇଲେ, ଆମ୍ଭେ ଗଙ୍ଗାସ୍ନାନ କରିବାକୁ ବାହାରିଛୁଁ । ନାପିତ କହିଲା, ମୋ ର ପୂର୍ବ ଭାଗ୍ୟ ଦର୍ଶିଲା । ଗୋସାଇଙ୍କ ଚରଣ ସେବା କରୁଥିବି । ଆପଣଙ୍କ ସଙ୍ଗେ ଗଙ୍ଗାସ୍ନାନ କରିବି । କର୍ପୂର କହିଲେ । ତୋ ଆମ୍ଭର ତ ପରଚେ ନାହିଁ । କି ରୂପେ ସଙ୍ଗେ ନେବୁଁ । ଅଚିହ୍ନା ଲୋକ ସଙ୍ଗେ ରଖିଲେ କାଳେ ବିଡ଼ମ୍ବଣ ହୁଅଇ ।

ଅଜାଣ ଲୋକ ସଙ୍ଗ ପ୍ରଭାତ ରବି ରଙ୍ଗ,
ଲୋଭ-ଅତୁର ବ୍ରତ ଲୋଭୀ ସାମନ୍ତ ସତ,
ମୂର୍ଖ ନାୟକ ଗୃହ ଅମ୍ବ-ବାଉଆ ନାଚ,
କୃପଣ ଜନ ଭୋଗ ମୁଣ୍ଡବୋଝିଆ ଯାଗ,
ସଦା-ଋଣିଆ ଗୃହ ନଈକୂଳିଆ ବାସ,
ଅମଳଖିଆ ମନ ପାପ ଅର୍ଜିତ ଧନ,
ବିଧବା ନାରୀ ବେଶ ଦାନ୍ତୁରୀ-ମୁଖୀ ହାସ,
ଦୁଷ୍ଟନାୟକ ବାଳା ଦରିଦ୍ରପୁଅ ଲୀଳା,
ବୀଣାସେବକ କୋପ ପୁରୁଣା ଗୁଣ ଗୃପ,
ସିଂହଦୁଆର ତେଲି ଗୁହାଳ ପାଖ ବଲ୍ଲୀ,
କାଉଡ଼ଦିଆ ରଥ କପଟୀ ମିତ୍ର ପ୍ରୀତି,
ବାଟ ଚଢ଼ାଇ ବସା,
ଯେତେ କଥା କହିଲି ରେ ମନମନୁଆଁ
ଏ ବେଳ ବେଳକୁ ହୋଏ ଭେଳକହସା ।

ଏହା ଶୁଣି ନାପିତ କହିଲା ହେ, ଗୋସାଇଁ ! ଯାହାକୁ ଯେଉଁ ଯୋଗ ଥାଏ ସେ ଅବଶ୍ୟ ହୁଅଇ । ହାତ ହେଲେ ପରଲୋକ ଅପଣାର, ଅହିତ

ହେଲେ ଆପଣା ଲୋକ ପର । ଅମୃତ ସମାନ ଅହାର ଖାଇ, ସେ ଅଗ୍ରାକ ହେଲେ ପେଟରେ ଥାଇ ପ୍ରାଣ ନଥାଇ । ଦେହରେ ବ୍ୟାଧି ହେଲେ ଶଏ କୋଶ ଅରଣ୍ୟରୁ ମୂଳମୂଳିକା ଆଣି ଖାଇଲାବେଳେ ପିତା କଷା ଲାଗୁଥାଇ । ଦେଲକୁ ପ୍ରାଣ ଦାନ ଦଅଇ । ବିଧାତା ସୁମୁଖ ହେଲା ବେଳେ ମନେ ନ ଥିଲା ସୁଖ ମିଳଇ । ସେ ବାମ ହେଲାବେଳେ ଅଚଳାଚଳ ସମ୍ପତ୍ତି ନାଶ ଯାଇ । ମୁଁ ପ୍ରସଙ୍ଗ ଟିଏ କହିବ ତେବେ ଶୁଣିବା ହୋଉ ।

ସେ ଯେ ହେମକାଞ୍ଚନ ନାମେ ଏକ ନଗର ଅଛି । ସେ ନଗର ରାଜା ନାମ ବୀରଭୁଜ । ସେ ରାଜାଙ୍କ ଗୁରୁଗୋସାଇଁଙ୍କ ନାମ ଜ୍ୟୋତି-ପୁଞ୍ଜ । ଏକ ଦିନକରେ ସେ ରାଜଗୁରୁ ଗୋସାଇଁ ପାଲିକିରେ ବସି ବିଜେ କରିଛନ୍ତି ।

ଖାଦ ପିଛ ଚାମର ଅଢ଼େଣି ଛତା ପାଟର
ବଇଷ୍ଣବ ମଣ୍ଡଳୀ ଭେରି ତୁରି ବାଂଶରି
ମୃଦଙ୍ଗ କରତାଳ ଚଉପାଶେ ଲୋକବଳ
ମହିମା ମହିମା ଡାକ ।
ଗୋସାଇଁ ବିଜେ କରନ୍ତେ ଜନ୍ତୁନ ପଞ୍ଚୁଛ
ଦାଣ୍ଡ ବାଟ ନଗର ଯାକ ।

ଏହି ସମୟରେ ନିତମ୍ବିନୀ ନାମେ ବେଶ୍ୟା ସେହି ରାଜାଙ୍କ ଛାମୁକୁ ଯାଉଥିଲା । ତା' ପଛେ ଖର୍ବରୂପ ନାମେ ଏକ ଜଣେ ମର୍ଦ୍ଦଳ ବଜେଇ ଯାଉଛି, ଜ୍ୟୋତିପୁଞ୍ଜ ଗୋସାଇଁଙ୍କି ସେ ବେଶ୍ୟା ଦେଖି ଷଲଚ୍ଛ ହୋଇ ଦଣ୍ଡବତ କରି ଅଡ଼ ହୋଇ ରହିଲା । ଖର୍ବରୂପ ମାଦଳଆଡ଼ି ଗୋସାଇଁ ଦେଖି ମନେ ବଡ଼ ଉପହାସ କଲେ । ବିଚାରିଲେ, ଏହା ଜନ୍ମରୁଁ କି କାର୍ଯ୍ୟ, ଦାସୀ ପଛେ ଗୋଡ଼ାଇଛି, ଏହା ଜନ୍ମ ଧିକ । ଅମ୍ଭମାନଙ୍କ ଜନ୍ମ ବଡ଼ ସୁଫଳ । ଏତେ ବଡ଼ ସମ୍ପଦ ଭୁଞ୍ଜୁଥାଇଁ । ଏରୂପ ମନେ ଗର୍ବ କଲେ । ଖର୍ବରୂପ ଦଣ୍ଡବତ କରନ୍ତେ ତାକୁ କଲ୍ୟାଣ ନ କରି କହିଲେ ।

ହୁମ୍ ଠାକୁରାଣୀ ତେଣେ ଯାଉଛନ୍ତି ଯାଇଁ ତାଙ୍କ ଚରଣ ସେବା କର । ଏହା ଶୁଣି ଖର୍ବରୂପ ମନରେ ବଡ଼ ଅକୁଳ ହୋଇ ରୋଦନ କଲେ । ବୋଇଲେ, ମୁଁ ବଡ଼ ପାପୀ । ଦାସ୍ୟଦାସ ହୋଇବୁ ସିନା ମୋତେ ଏତେ ଉପହାସ କଲେ । ହେ ମହାପ୍ରଭୁ, ମୋ ଅଦୃଷ୍ଟରେ ଏହା ଲେଖିଥିଲ । ଏମନ୍ତେ ବଡ଼ ଆରତରେ ଈଶ୍ୱରଙ୍କ ଚିନ୍ତା କଲେ । ପ୍ରଭୁ ତ ଗର୍ବଗଞ୍ଜନ, ଆରତତ୍ରାଣ । ଜ୍ୟୋତିପୁଞ୍ଜ ଗର୍ବ, ଖର୍ବରୂପ ଅତି ଏ ଦୁଇ କଥା ସହି ନ ପାରି ଆଜ୍ଞା ଦେଲେ ଦୁହେଁ ଦୁହିଙ୍କ ପରି ହୁଅ ! ଏମନ୍ତେ ରାଜବାଟୁ ଗୋସାଇଁ ମଠକୁ ଗଲେ । ଖର୍ବରୂପର ଏ ଚିନ୍ତା ହୁଅନ୍ତେ ବେଶ୍ୟାସଙ୍ଗ ଗୋଡ଼ାଇ ଯାଇ ନ ପାରିବାରୁ ସେ ବେଶ୍ୟା ତାକୁ ବହୁତ ଗାଳି ଦେଲା । ତା ଗାଳି ଶୁଣି ଖର୍ବରୂପ ଧାଇଁ ଯାଅନ୍ତେ ବାଟରେ ଝୁଣ୍ଟି ପଡ଼ିବାରୁ ମର୍ଦ୍ଦଳ ଭାଜିଗଲା । ନିତମ୍ବିନୀ ମର୍ଦ୍ଦଳ ଭାଜିବାରୁ ବିମୁଖ ହୋଇ ନଗରକୁ ନ ଯାଇଁ ନେଉଟି ଆସି ଖର୍ବରୂପକୁ ବନ୍ଧାଇ ଅନେକ ମାଡ଼ ମରାଇ କନା ଖଣ୍ଡେ ପିନ୍ଧାଇ ବାହାର କରି ଦେଲା । ଖର୍ବରୂପ ସେ ରାଜ୍ୟରେ କାହାରି ମୁଖ ଚାହିଁ ନ ପାରି ଯାଇଁ ଅରଣ୍ୟ ଭିତରେ ପଶିଲା । ଏ ରୂପେ ତିନି ଦିନ ତିନି ରାତି ଗଲା, ଭୋକରେ ପେଟ ପୋଡ଼ି ଯାଉଛି । ପାଣି ମାତ୍ରକ ଦେଖିଲେ ପିଅଇ । ଏହିରୂପେ ଯାଇଁ ଯାଇଁ ରସରଙ୍ଗ ନାମେ ଏକ ନଗର, ସେ ନଗର ପାଖେ ଶ୍ମଶାନ ପଦାଟାକେ ସନ୍ଧ୍ୟା ସମୟରେ ପ୍ରବେଶ ହେଲା । ସେଦିନ ସେଠାରେ ଏକ ମୃତ ମଣିଷକୁ ଦହନ କରି ଯାଇଛନ୍ତି ଯେ ସେ ମହାଭୂତ ଅଟିକା ଗୋଟାକେ ଅଛି । ନିଆଁ ଜଳୁଛି । ଖର୍ବରୂପ କ୍ଷୁଧାରେ ଅଚେତନ ହୋଇଥିବାରୁ ସେ ଭୂତ ଖାଇ ମଡ଼ାନିଆଁ ମୁଆଁଉଛି । ଏହି ସମୟରେ ସେହି ନଗ୍ର ଗୋପାଳ ଗାଈ ଗୋଠ ଦେନ ନଗ୍ରକୁ ଲେଉଟି ଆସନ୍ତେ ଖର୍ବରୂପ ଭୂତଖିଆ ନିଆଁ ମୁଆଁ ଦେଖିଲେ । ବୋଇଲେ ଏ ତ ମହାପୁରୁଷ ଗୋସାଇଁ । କେଉଁଠାରୁ ଏଠାକୁ ବିଜେ କଲେ । ସିଦ୍ଧ ସାଧୁ ରୂପ ଏ । ଆନ ଛାର ଲୋକେ କି ଏ କର୍ମ କରି ପାରଇ ? ଏମନ୍ତେ ଯାଇ ଗ୍ରାମରେ ବାରତା କହନ୍ତେ ତାହା ଶୁଣି ଏକ ତନ୍ତ୍ରୀ ପେଟଚଣ୍ଡା ରୋଗୀ ଥିଲା ଯେ ସେ ଶ୍ମଶାନକୁ ଧାଇଁ ଯାଇ ଦେଖିଲା ନିଆଁ

ପୂଅଁ ଉଠୁଛନ୍ତି, ଘୃତ ଖାଉଛନ୍ତି । ତନ୍ତ୍ରୀ ଯାଇଁ ଆଗରେ ଉଭା ହୁଅନ୍ତେ ଖର୍ବରୂପ ବିଚାରୁଛି ଏବେ ଏହାକୁ କି କହିବ । ଈଶ୍ୱର ତ ତାକୁ ସୁମୁଖ ହେଲେଣି । କହିଲା, ରେ ବାବା, ସେହି ବଡ଼ା ଦୁଃଖୁ ଦେଖା ହେବି । ଏହା ଶୁଣି ତନ୍ତ୍ରୀ ଭୂମିରେ ଦଣ୍ଡପ୍ରାଏ ହୋଇ ପଡ଼ିଲା । ବୋଇଲା ଗୋସାଇଁ, ମୋ ଦୁଃଖ ଜାଣି ଅନ୍ତ କଲ । ଏବେ ରୋଗ ଖଣ୍ଡନ କର । ଏମନ୍ତ କହି ଆନନ୍ଦରେ ଗ୍ରାମକୁ ବୋଲି ଧାଇଁ ଯାଇ ହୁରି କଲା, ମହାପୁରୁଷ ଗୋସାଇଁ ଶ୍ମଶାନ ପଦାରେ ବିଜେ କରିଛନ୍ତି । ମୋ ମନ କଥା କହିଲେ । ଏମନ୍ତେ ଗ୍ରାମଯାକରେ ତହଲ ହୁଅନ୍ତେ କି ନାରୀ କି ପୁରୁଷ ସମସ୍ତେ ଦରଶନ କରିବାକୁ ବାହାରିଲେ । ବନ୍ଧ୍ୟାନାରୀ ଦୁଇଗୋଟା ନଡ଼ିଆମାନ ଘେନି ଆଗରେ ଯାଇଁ ଦେଖିଲେ ଘୃତ ଖାଉଛନ୍ତି । ନିଅଁ ପୁଅଁ ଉଠୁଛନ୍ତି । ନଡ଼ିଆ ରଖି ଦଣ୍ଡବତ କରନ୍ତେ ସେ କହିଲେ 'ରେ ମାତା, ରେ ମାତା, ଉଦର କେ ବାଢ଼୍ ମୁଁ ଦଓଡ଼ର୍' । ଏହା ଶୁଣି ସେ ସ୍ତ୍ରୀ ଦୁହେଁ ବଡ଼ ଆଶ୍ଚର୍ଯ୍ୟ ହେଲେ । ବୋଇଲେ, ଗୋସାଇଁ ଏ କପଟ କପଣ ଭଲ କର । ମନ୍ତ୍ରୀ ପୁଅର ଘୋଡ଼ା ଦେହ ବେଦନା ହୋଇଥିଲା ଯେ ସେ ମୁଦା ଘେନି ଧାଇଁଲା । ଖର୍ବରୂପକୁ ଦର୍ଶନ କରି କହିଲା, ଗୋସାଇଁ ମୁଁ କ. କାର୍ଯ୍ୟରେ ଅଇଲି ତାହା ଅନ୍ତ ହୋଉ । ଖର୍ବରୂପ ବିଚାରିଲା, ଏଥର କଷ୍ଟେ ଭଣ୍ଡ ହୋଇଗଲି । ଏମନ୍ତ ଅଭିମନରେ କହିଲା 'ଅବ ସଙ୍କଟ ଜାନକୀରାମୋ ହରେ' । ଏହା ଶୁଣି ମନ୍ତ୍ରୀପୁଅ ବିଚାରିଲା, ଏ ସାକ୍ଷାତ ଈଶ୍ୱର ସ୍ୱରୂପୀ । ଏମନ୍ତ ବିଚାରି ଦଣ୍ଡପ୍ରଣାମ କରି ପୂଜା ସାମଗ୍ରୀମାନ ଅଣି-ଦେଲା । ସାଧବ ମୁକ୍ତାହାର ଗୋଟିଏ ଗୁପ୍ତ କରି ମୁଦା ଘେନି ଯାଇଁ ଦେଖିଲା, ନିଅଁ ପୁଅଁ ଉଠୁଛନ୍ତି । ଷଣ୍ଢ ଶଣ୍ଢ ଲୋକ ପାଏ ପଡ଼ି ଶୋଇ ଜଣାଉଛନ୍ତି । ଏ ସମୟରେ ସାଧବ ଯାଇଁ ବୋଇଲା । ଗୋସାଇଁ ମୁଁ କି ଅଣିଛି ଅଗ୍ୟାଂ କର । ଖର୍ବରୂପ ଉତ୍ତରେ କହିଲା, 'ଅବ୍ ତୁମାରା ତହିଁ ହାରା ।" ଏହା ଶୁଣି ସାଧବ ବହୁତ ଦଣ୍ଡ ପ୍ରଣାମ କରି ବିଚାରିଲା, ଏ ପୃଥୀରେ ଅସି ଭାଗ୍ୟ ପ୍ରବେଶ ହେଲା । ମହାମହିମ ଯଣ୍ଢ ମିଳିଲେ । ସାଧବ ଗୋସାଇଁଙ୍କି ବହୁତ ପୂଜା କରି ଯାଇ ରାଜାଙ୍କ ଛାମୁରେ କହିଲା ।

ଏଥିଉତରେ ଦୁଇ ବୃଷ ଦନ ଗଲ । ଗୋସାଇଁଙ୍କି ଦେଖିବାକୁ ଅନେକ ଦେଶରୁ ଲୋକ ଅଇଲେ । ନାନା ସାମଗ୍ରୀମାନ ଭେଟିଲେ ।

କେ ରୋଷାଇର ଭୁଲ        କେ ଫଳମୂଳ
କେ ଜଳପାନ ଅଣଇ        କେ ଭାଙ୍ଗ ତମାଖୁ ଦେଇ
କେ ଚନ୍ଦନ ଚୁଆ କର୍ପୂର        କେ କନକ କଣ୍ଠା ନୂପୁର
କେ ପୋଢ଼ୋଳା ମୋଢ ମାଳୀ        କେ କଣ୍ଠି ରୂପା ଶିଙ୍କୁଳ
କେ ତାମ୍ବୁଲ ବଣ୍ଡିଆ ବଟା        କେ ଦବ୍ୟ କୁସୁମ୍ବା ଘୋଟା,
କେ ମୋହନା ଗଞ୍ଜା ଖଟଇ        କେ ତମାଖୁ ବଣ୍ଡା ଭେଟଇ
କେ ପାଗଲ୍ଲ ପାନ ଶଏ        କେ ଲବଙ୍ଗ ମରିଚ ପାଏ,
କେ ଖଇର ଗୁଆ ନେଇ        କେ କଲ୍ ଭଡ଼ଙ୍କା ଦେଇ
କେ ଘର ଲବଣୀ ଦହି        କେ ପୁଷ୍ଟ କାକରା ଖଇ,
କେ କମ୍ବଳ ଲୋହି ଶାଲ        କେ ସହନ ମଲ ମଲ
କୁର୍ତ୍ତୀ କାମଳୀ କେମ୍ପା ବାଉଳୀ        କଣା କୁବୁଜା ଲେଉଟା ବମଙ୍କା
ପଙ୍ଗୁ ଗୋଦଗ୍ରୀ ପେଟ ରେଦଗ୍ରୀ        ଏକୁଆପାଳ ପିତ୍ତଗଙ୍ଗୋଳ
ଆଁଖି ଛଟା ମେଟ ଚକଟା        ଅଣପୁରୁଷା କମଳଖସା,
ଦନ୍ତକଟି କାନକୁଟୁରି ଛଳକା କାଣି ଠେଣ୍ଟି
କାଞ୍ଚ ମଣ୍ଡଚ୍ଛ ପୀନାସ ନାକପେଚୀ
ଧାଇଁଲେ ଶହ ଶହ        ଧକାଇ ସଅଁ ସଅଁ
ପଡ଼ ଉଠି ଧାମନ୍ତ        ତଳକୁ ନ ଚାହାଁନ୍ତ
କେ ବୋଲଇ ଲେ ମାଆ        ମୋ ହାତ ଧରଥାଆ
କେ ବୋଲଇ ଦୁଲଣା        ହୋଇଛି ଲେ କଣା
କେ ବୋଲଇ ବର        ଦେଖି ନ ପାରଇ ମୋର
କେ ବୋଲଇ ଚୂଳ        ତାହାର ଏହି ହାଲ
ଏମନ୍ତରେ ଯାଇ        ଭେଟନ୍ତି ଗୋସାଇଁ
କେହି କେହି ଦୁଃଖ ଜଣାନ୍ତି        ଗୁଆ ନଡ଼ିଆ ମାନ ଥୋଇ
ତାଟକା ହୋଇ ଖର୍ବରୂପ ଗୃହି ।

ବସ୍ତୁର ବଳ ଏ କଥ
କେମନ୍ତେ ଏଥୁଁ ପାର ହୋଇ ପଶିବ ଗହନ କାନନ ଦେଶ ।

ଏମନ୍ତେ ରାଜା ବୀରମଣ୍ଡନଙ୍କ ସମ୍ମୁଖରେ ଯାଇଁ ଏ ବାର୍ତ୍ତା ପଚାରନ୍ତେ ରାଜା ଆଜ୍ଞା କଲେ, ଆମ୍ଭେ ମହାପୁରୁଷଙ୍କ ଦର୍ଶନ କରିବା । ଶୀଘ୍ର ପାଲିକି ନେଇ ଗୋସାଇଁଙ୍କି ଘେନି ଆସ । ଏରୂପେ କର୍ମପୁରୁଷଙ୍କ ଆଗେ ମନମନ୍ତ୍ରୀ କହୁଛି, ଅହେ ଗୋସାଇଁ ଏବେ ଶୁଣ ।

ସେ ବୀରମଣ୍ଡନ ରାଜାଙ୍କୁ ମାରି ତାଙ୍କ ଭାଇକି ରାଜା କରିବାକୁ ସେ ରାଜ୍ୟ ଲୋକେ ମେଳ କରି ଥାଆନ୍ତି । ସମସ୍ତ ନ ପାଇବାରୁ ମାରି ନ ପାରନ୍ତି । ସେହିଦିନ ସେ ମେଳଥାଏ ବସିରହିଲେ ଆଉ ନ ମାଇଲେ ଗୋସାଇଁ ତ ସର୍ବଜ୍ଞ, ନିକ ଆମ୍ଭ ମେଳ କଥା କହି ଦେଇ ପାଏ ଏମନ୍ତ ଭାଳି ସମସ୍ତ ଲୋକେ ସେ ଦିନ ରାଜାଙ୍କ ମାରିବାକୁ ନଅରଠାରେ ଜଗି ରହିଛନ୍ତି । ଏମନ୍ତେ ସନ୍ଧ୍ୟା ସମୟରେ ପାଲିକି ଘେନି ମନ୍ତ୍ରୀ ଯାଇଁ ଗୋସାଇଁକି କହିଲା, ରାଜା ଦରଶନ କରିବେ ପାଲିକିରେ ବିଜେ କରି, ନବରଠାକୁ ଯିବା । ଏହା ଶୁଣି ଖର୍ବରୂପ ବସ୍ତୁରଙ୍କ ଅସି ମରଣକାଳ ନିକଟ ହେଲା । ଏବେ କି ବୁଦ୍ଧି କରିବି । ଭଲ ଦେଖି ଯିବା, ଯା ହୋଇଥିବ ହେଉ । ଏମନ୍ତ ବସ୍ତୁରି ପାଲିକିରେ ବସି ନବରଠାକୁ ଗଲା ।

ମଶାଲ ଅଲୋକ ଶହ ଶହ ଲୋକ,
ସଙ୍ଗେ ସଙ୍ଗେ ଧାମନ୍ତି ହରିବୋଲ ଧଅନ୍ତି,
ଏମନ୍ତରେ ଯାଇଁ
ସିଂହଦ୍ୱାରଠାରେ ମିଳିଲେ ମହାମହିମ ଗୋସାଇଁ ।

ରାଜା ଶୁଣି ପାଦଗଡରେ ସିଂହଦ୍ୱାରଠାକୁ ବୋଲି ପାଦେଛନ୍ତି ଅଇଲେ । ସେ ରାଜାଙ୍କର ପୁତ୍ର ନ ଥିବାରୁ ପୂର୍ବରୁ ବସ୍ତୁରିଛନ୍ତି ଆମ୍ଭର ପୁତ୍ର ହୋଇବ କି ନାହିଁ ଏ କଥା ଗୋସାଇଁଙ୍କଠାରୁ ଜାଣିବା । କଥାରେ କଅ ଫୁଲ ଗୋଟିଏ ଗୁପ୍ତ କରି ଧରିଛନ୍ତି । ରାଜା ଗୋସାଇଁଙ୍କି ଦଣ୍ଡବତ

କରି ଭିତରକୁ ନେଇ ଉତ୍ତମ ଆସନରେ ବସାଇଲେ । ରାଜାହିଁ ଆସନରେ ବଳେ କଲେ । ଦିଅନେ ମୁଦା ଯେନ ବସି ଗୋସାଇଁଙ୍କି ଗୃହିଁଛନ୍ତି । ସେ ଯଉଁ ମେଳିଅମାନେ ସେ କାତର ହୋଇ ଯାଏ ଲୁଚାଇ ଅନ୍ଧାରରେ ବସି ବସୁଛନ୍ତି ଗୋସାଇଁ ନିକ ଆମ୍ଭ ମେଳ କହୁ ଦେଇ ଥାଇ । ଏମନ୍ତ ଭାଞ୍ଜ ତହିଁରୁ ଦୁଇଜଣ ଆସି ସମ୍ମୁଖରେ ଠିଆ ହୋଇ ବୁଝୁଛନ୍ତି । ଏଥିଉତ୍ତାରୁ ରାଜା ଦିଅନ ଉଠି ଠିଆ ହୋଇ ହାତ ଯୋଡ଼ି ଜଣାଇଲେ "ମହାରାଜ, ହୁକୁ ହୁକୁମ କରେ, ଇସ୍ ତରଫେ ଦଲ ଖାତରନଶାଁ ହୋଗା ।" ଏହା ଶୁଣି ଖଣ୍ଡରୂପ ଭୟରେ ରଜାଙ୍କ ମୁହଁକୁ ନ ଚାହିଁ ମନରେ ଧର୍ମ ଚିନ୍ତା କରି ମେଳିଆଏ ଥିବା ଦିଗକୁ ଅନାଇ କହିଲା, 'ଦିଅନଇଁ ଯହିଁ କାଅ କରିବ ।' ଏହା ଶୁଣି ରଜା ଦିଅନ ପାଏ ପଡ଼ି ଶୁଅନ୍ତେ ସେ ମେଳିଅ ଦୁଇଜଣ ଭୟରେ ଥରଥର ହୋଇ ରଜାଙ୍କୁ କହିଲେ 'ହେ ମହାରାଜା, ଆମ୍ଭେ ଦୁଇଜଣ ଏକା ଏ ବସ୍ତୁରେ ନାହୁଁ । ଗୋସାଇଁ ତ ଅଗାଁ କଲେଣି ଅଉ ମାନେ ଯେଉଁଣେ ବସିଛନ୍ତି ତାଙ୍କୁ ଧରାଇ ଆଣ । ଗୋସାଇଁଙ୍କ ଧର୍ମ ଗୋସାଇଁଙ୍କି ବଞ୍ଚାଇଲା, ଆମ୍ଭେ ମେଳ କରି ମାରି ଗଲୁ ।' ରଜା ଏହା ଶୁଣି ଚକିତ ହୋଇ ତାଙ୍କ କଥା ବୁଝି ଅଉମାନଙ୍କୁ ଆଣି ଧରାଇ ରଖିଲେ । ଆର ଦିନ ପୁଣି ଉତ୍ତମରୂପେ ବୁଝି ସମସ୍ତ ମେଳିଅଙ୍କୁ ଦଣ୍ଡ ଦେଲେ । ଖଣ୍ଡରୂପ ଗୋସାଇଁଙ୍କଠାରେ ଈଶ୍ୱର ସମାନ ବୁଦ୍ଧି ରଖି ଆପଣେ ରାଜା ତାଙ୍କଠାରୁ ମନ୍ତ୍ର ଘେନି ରାଜଗୁରୁ କଲେ । ରାଜଗୁରୁ ହେଲା ଉତ୍ତାରୁ କେଉଁ ସମ୍ପତ୍ତି ନ୍ୟୁନ ହେଲା କି ? ଏ ରୂପେ ଖଣ୍ଡରୂପ ନିଶ୍ଚିନ୍ତ ହୋଇ ରହି ଭୋଗ କଲେ । ସଂସାର ଯାକରେ ମହାପୁରୁଷ ଗୋସାଇଁ ରାଜଗୁରୁ ହେଲେ ବୋଲି ନାମ ଖ୍ୟାତ ହେଲା । ଈଶ୍ୱର ଦୟା କଲେ ଏମନ୍ତ ହୁଏ । ଇତ୍ୟାଦି ଇତ୍ୟାଦି:—

( ୭ )

# ସ୍ୱର୍ଗଯାତ୍ରୀ

( ସ୍ୱର୍ଗଯାତ୍ରୀର ବୃତ୍ତାନ୍ତରୁ ଗୃହୀତ )

ଏ ଉତ୍ତାରେ ଅମ୍ଭେ ସ୍ୱପ୍ନରେ ଦେଖିଲୁଁ ଯେ ଖ୍ରୀଷ୍ଟୀୟ୍ୟାନ ରାତିରେ ରହିବା ନିମନ୍ତେ ସେ ଅଟ୍ଟାଳିକାର ମଧ୍ୟେ ଯିବାକୁ ମନସ୍ଥ କରି, ଅତି ବେଗଗାମୀ ହୋଇ କିଛି ଦୂର ଗମନ କରନ୍ତେ, ଦ୍ୱାରୀର ଗୃହରୁ ପ୍ରାୟ ଅଧ ପା ଅନ୍ତର ଏକ ସଙ୍କୀର୍ଣ୍ଣ ପଥରେ ପ୍ରବେଶ ହେଲା। ତହିଁରେ ସେ ସ୍ଥାନ ଦେଇ ଯିବାବେଳେ ସେ ଏକ ଦୃଷ୍ଟି କରି ଦୁଇ ସିଂହ ଦେଖିବାକୁ ପାଇ ମନେ ମନେ କହିଲା, ଯେ ଅବିଶ୍ୱାସ୍ ଓ ଭୟଶୀଳ ଯେଉଁ ଆପଦ ଦେଖି ଫେରି ଗଲେ ତାହା ଏବେ ଅମ୍ଭେ ଦେଖୁଅଛୁଁ। ଏହି ଦୁଇ ସିଂହ ଜଞ୍ଜିରରେ ବନ୍ଧା ଥିଲେ, ମାତ୍ର ଖ୍ରୀଷ୍ଟୀୟ୍ୟାନ୍ ସେ ଜଞ୍ଜିର ଦେଖିବାକୁ ନ ପାଇବାରୁ ଭୟ କରି ଫେରି ଯିବାକୁ ଉଦ୍ୟମ କଲା। କାରଣ ସେ ବିଚାର କଲା—ଯେ ଆଗେ ଗଲେ ମରଣ ବିନା ଅନ୍ୟ ଗତି ନାହିଁ। ଏମନ୍ତ ସମୟରେ ପ୍ରହରୀ ନାମେ ସେହି ଗୃହର ଦ୍ୱାରୀ ଖ୍ରୀଷ୍ଟୀୟ୍ୟାନକୁ ଅଗ ବଢ଼ି ଯିବାରେ ବିମୁଖ ଦେଖି ଡାକି କରି କହିଲା, କି ହେ, ତୁମ୍ଭେ ଏତେ ସାହସହୀନ କାହିଁ ପାଇଁ ? ଭୟ ନ କର ବିଶ୍ୱାସୀ ଯାତ୍ରୀମାନଙ୍କର ବିଶ୍ୱାସ ପରୀକ୍ଷା ଓ ଅବିଶ୍ୱାସୀ ଯାତ୍ରୀମାନଙ୍କର ଅବିଶ୍ୱାସ ପ୍ରକାଶ କରିବା ନିମନ୍ତେ ଏ ଦୁଇ ସିଂହ ଏଠାରେ ବନ୍ଧା ହୋଇଅଛନ୍ତି; ଏ ନିମନ୍ତେ ତୁମ୍ଭେ ପଥ ମଧ୍ୟ ଦେଇ ଗମନ କର, ତହିଁରେ ତୁମ୍ଭଙ୍କୁ କୌଣସି ଆପଦ ନ ଘଟିବ।

ଏଥିରେ ଅମ୍ଭେ ଦେଖିଲୁଁ ଯେ ସିଂହମାନଙ୍କର ଭୟରେ ଖ୍ରୀଷ୍ଟୀୟ୍ୟାନ୍ ଥରି ଥରି ଗମନ କଲା; ମାତ୍ର ଦ୍ୱାରୀର ପରାମର୍ଶ ଉତ୍ତମ ରୂପେ ମନେ ରଖିବାରୁ ସିଂହମାନେ ତାହାର କିଛି କ୍ଷତି କରିବାକୁ ନ ପାରିଲେ।

କେବଳ ସେ ସେମାନଙ୍କର ଭୟାନକ ଗର୍ଜ୍ଜନ ଶୁଣିଲ । ତହିଁରେ ଖ୍ରୀଷ୍ଟୀୟାନ୍ ଅହ୍ଲାଦ ମନରେ କରତାଳି ଦେଇ କମେ କମେ ସେ ଦ୍ୱାରୀର ନିକଟକୁ ଯାଇ ପଚାରିଲ, ହେ ଅବଧାନ, ଏ କି ଘର ? ଆମ୍ଭେ ଆଜି ରାତି ଏଠାରେ ରହି ପାରିବା କି ନାହିଁ ? ଏଥିରେ ଦ୍ୱାରୀ ଉତ୍ତର ଦେଇ କହିଲେ, ଏହି ପର୍ବତର କର୍ତ୍ତା ଯାତ୍ରୀମାନଙ୍କର ନିର୍ଭୟରେ ପ୍ରବାସ କରିବା ନିମନ୍ତେ ଏ ଗୃହ ନିର୍ମାଣ କରି ଅଛନ୍ତି । ଏ କଥା କହି ଦ୍ୱାରୀ ତାହାକୁ ପଚାରିଲେ, ତୁମ୍ଭେ କେଉଁଠାରୁ ଆସିଅଛ, ପୁଣି କେଉଁଠାକୁ ଯାଉଅଛ ?

ଖ୍ରୀଷ୍ଟୀୟାନ—ଆମ୍ଭେ ଧ୍ୱଂସିନଗରରୁ ଆସିଅଛୁଁ ପୁଣି ସିୟୋନ ପର୍ବତକୁ ଯାଉଅଛୁଁ ; ମାତ୍ର ଏତେବେଳେ ସୂର୍ଯ୍ୟ ଅସ୍ତ ହେବାରୁ ଆମ୍ଭେ ଆଜି ରାତି ଏଠାରେ ରହିବାକୁ ପାରିବା କି ନାହିଁ, ଏହା ଜାଣିବାକୁ ଇଚ୍ଛା କରୁ ।

ଦ୍ୱାରୀ—ତୁମ୍ଭର ନାମ କି ?

ଖ୍ରୀଷ୍ଟୀୟାନ—ବର୍ତ୍ତମାନ ଆମ୍ଭର ନାମ ଖ୍ରୀଷ୍ଟୀୟାନ, ମାତ୍ର ପୂର୍ବେ ଆମ୍ଭର ନାମ ହୀନାନୁଗ୍ରହ ଥିଲା; ପୁଣି ଯେଉଁ ଯାଫିତକୁ ଈଶ୍ୱର ଶେମର ତମ୍ବୁରେ ବାସ କରାଇବେ, ଆମ୍ଭେ ତାହାର ବଂଶଜାତ ।

ଦ୍ୱାରୀ—ଏବେ ତ ସୂର୍ଯ୍ୟ ଅସ୍ତ ହେଉଅଛି, ଏ ସ୍ଥାନକୁ ଆସିବାରେ ତୁମ୍ଭର ଏତେ ବିଳମ୍ବ କାହିଁ ପାଇଁ ?

ଖ୍ରୀଷ୍ଟୀୟାନ—ଆମ୍ଭେ ବେଗେ ଏଠାରେ ପହଞ୍ଚିଥାନ୍ତୁ, ମାତ୍ର ଆମ୍ଭେ ଏତେ ଅଯୋଗ୍ୟ ଲୋକ ଯେ ପର୍ବତ ପାଖରେ ଯେଉଁ ଲତାଗୃହ ଅଛି ସେଠାରେ ଶୋଇ ପଡ଼ିଲୁଁ । ତେବେହେଁ ଏଥି ପୂର୍ବରୁ ପହଞ୍ଚିଥାନ୍ତୁ, ମାତ୍ର ପର୍ବତର ଶିଖରକୁ ଉଠିଲା ଉତ୍ତାରେ ଆମ୍ଭକୁ ପୁନର୍ବାର ଫେରିବାକୁ ହେଲା; କାରଣ ଆମ୍ଭର ପ୍ରମାଣ ସ୍ୱରୂପ ଯେଉଁ ପୁସ୍ତକ, ତାହା ନିଦ୍ରା ସମୟରେ ସେ ସ୍ଥାନରେ ଭୁଲି ଛାଡ଼ି କରି ଆସିଅଛୁଁ, ଏହା ଜାଣି ପଡ଼ିବାରୁ ଆମ୍ଭେ ଅତ୍ୟନ୍ତ ଦୁଃଖାନ୍ୱିତ ହୋଇ ତାହା ଆଣିବା ନିମନ୍ତେ ପୁନର୍ବାର ସେ ଲତାଗୃହକୁ ଫେରି ଗଲୁଁ । ଏସକାଶୁଁ ଏତେ ବିଳମ୍ବ ହେଲା ।

ଦ୍ୱାରୀ:—ଅଚ୍ଛା, ଆମ୍ଭେ ଏହି ଗୃହର ଗୋଟିଏ କନ୍ୟାକୁ ତୁମ୍ଭ ନିକଟକୁ ଡାକି ଦେଉଅଛୁଁ, ଆଉ ତୁମ୍ଭର କଥୋପକଥନ ଯେବେ ତାହାର ପସନ୍ଦ ହୁଅଇ, ତେବେ ଏହି ଗୃହର ଧାରାନୁସାରେ ସେ ଏହି ପରିବାରସ୍ଥ ଅନ୍ୟ ଅନ୍ୟ ଲୋକମାନଙ୍କ ନିକଟକୁ ତୁମ୍ଭକୁ ଘେନି ଯିବ, ଏହା କହି ଦ୍ୱାରୀ ଘଣ୍ଟା ବଜାନ୍ତେ, ସାବଧାନା ନାମ୍ନୀ ଏକ ପରମା ସୁନ୍ଦରୀ କନ୍ୟା ଗୃହ ଭିତରୁ ବାହାର ହୋଇ ପଚାରିଲା, କି ନିମନ୍ତେ ଡାକିଲ ?

ତହିଁରେ ଦ୍ୱାରୀ କହିଲେ, ଏହି ଲୋକ ଧ୍ୱଂସନଗରରୁ ଆସି ସିୟୋନ ପର୍ବତକୁ ଯାଉଅଛନ୍ତି, ମାତ୍ର ପଥଶ୍ରାନ୍ତ ଓ ଅନ୍ଧକାରଗ୍ରସ୍ତ ହେବାରୁ, ଆଜି ରାତ୍ର ଏ ସ୍ଥାନରେ ରହିବାକୁ ପାଇବେ କି ନାହିଁ, ଏହା ଆମ୍ଭକୁ ପଚାରିଲେ; ଏଥିରେ ଆମ୍ଭେ ତୁମ୍ଭକୁ ଡାକି ପଠାଇବା ବୋଲି ତାହାକୁ କହିଲୁଁ, ଏବେ ଗୃହର ଧାରାନୁସାରେ ତାହା ସଙ୍ଗେ କଥାବାର୍ତ୍ତା କଲା ଉତ୍ତାରେ ଯାହା ତୁମ୍ଭକୁ ଭଲ ଦିଶଇ ତାହା କର ।

ତେବେ କନ୍ୟା ତାହାକୁ ପଚାରିଲେ, ତୁମ୍ଭେ କେଉଁଠାରୁ ଆସିଅଛ ଓ କେଉଁଠାକୁ ଯାଉଅଛ ? ତହିଁରେ ଖ୍ରୀଷ୍ଟୀୟାନ ତାହାର ଉତ୍ତର ଦେଲା । କନ୍ୟା ତାହାକୁ ଆହୁରି ପଚାରିଲେ, ତୁମ୍ଭେ କିରୂପେ ଏ ପଥ ମଧ୍ୟରେ ପ୍ରବେଶ ହେଲ ? ତହିଁରେ ଖ୍ରୀଷ୍ଟୀୟାନ ତାହାର ଉତ୍ତର ଦେଲା । କନ୍ୟା ଆଉ ଥରେ ପଚାରିଲେ, ପଥ ମଧ୍ୟରେ ତୁମ୍ଭେ କି କି ବିଷୟରେ ଦେଖିଅଛ ଓ କାହାର ସଙ୍ଗେ ତୁମ୍ଭର ସାକ୍ଷାତ ହୋଇଅଛି ? ତହିଁରେ ଖ୍ରୀଷ୍ଟୀୟାନ ତାହାହିଁ କହିଲା । ଶେଷରେ କନ୍ୟା ତାହାର ନାମ ପଚାରିଲେ । ତହିଁରେ ସେ କହିଲା, ଆମ୍ଭର ନାମ ଖ୍ରୀଷ୍ଟୀୟାନ ।

ଆମ୍ଭେ ଏହି ସ୍ଥାନରେ ଆଜି ରାତ୍ର ରହିବା ନିମନ୍ତେ ଅତ୍ୟନ୍ତ ବାଞ୍ଛା କରୁ, କାରଣ ଆମ୍ଭେ ଦେଖି ଯେ, ଯାତ୍ରୀମାନଙ୍କ ବିଶ୍ରାମ ଓ ନିରାପଦରେ ବାସ କରିବା ନିମନ୍ତେ ପର୍ବତର କର୍ତ୍ତା ଦ୍ୱାରା ଏହି ସ୍ଥାନ ନିର୍ମିତ ହୋଇଅଛି । ଏହା ଶୁଣି କନ୍ୟା ଉପହାସ କଲେ, ମାତ୍ର ତାଙ୍କ ଚକ୍ଷୁ

କେତକସ୍ମୁକ୍ତ ହୋଇଗଲା, ଅଉ ସେ କ୍ଷଣକାଳ ଭାବନା କରି କହିଲେ, ତେବେ ଅମ୍ଭେ ପରିବାର ମଧ୍ୟରୁ ଅଉ ଦୁଇ ଜଣ ଲୋକଙ୍କୁ ଡାକି ଆଣୁ, ଏହା କହି ସେ ଦୌଡ଼ି ଯାଇ ପରିଣାମଦର୍ଶିନୀ, ଧର୍ମିଷ୍ଠା ଓ ପ୍ରେମଧାରିଣୀ ଏହି ତିନି କନ୍ୟାଙ୍କୁ ଡାକି ଆଣିଲେ; ତହିଁରେ ଏମାନେ ଖ୍ରୀଷ୍ଟୀୟାନର ସଙ୍ଗେ କିଛି କଥାବାର୍ତ୍ତା ହେବା ଉତ୍ତାରେ ତାହାକୁ ପରିବାର ମଧ୍ୟକୁ ନେଇଗଲେ; ଏହିରୂପେ ଖ୍ରୀଷ୍ଟୀୟାନ ପରିବାର ମଧ୍ୟକୁ ଯିବା ସମୟରେ ସେମାନଙ୍କ ମଧ୍ୟରୁ କେତେ ଲୋକ ଦ୍ୱାର ପର୍ଯ୍ୟନ୍ତେ ଅଗ ବଢି ଆସି ତାହାକୁ ଭେଟି କରି କହିଲେ, ଆସ, ଈଶ୍ୱରଙ୍କ ଅନୁଗ୍ରହ ପାତ୍ର ଲୋକ, ଭିତରକୁ ଆସ, ଏହିପରି ଅତିଥିମାନଙ୍କ ନିମନ୍ତେ ପର୍ବତର କର୍ତ୍ତା ଏହି ଗୃହ ନିର୍ମାଣ କରିଛନ୍ତି । ଏଥିରେ ଖ୍ରୀଷ୍ଟୀୟାନ ସେମାନଙ୍କୁ ମୁଣ୍ଡ ନୁଆଁଇ ପ୍ରଣାମ କରି ସେମାନଙ୍କ ପଛେ ପଛେ ଗୃହ ଭିତରକୁ ଗଲା, ଆଉ ଭିତରେ ଯାଇ ବସନ୍ତେ, ସେମାନେ ତାହାକୁ କିଛି ଜଳପାନ କରିବାକୁ ଦେଇ ଅପଣା ମନରେ ଏରୂପ ସ୍ଥିର କଲେ, ଯେ ସମୟ ନିରର୍ଥକ ବ୍ୟର୍ଥରେ ନ ଯାଏ ଏଥି ପାଇଁ ଭୋଜନ ପ୍ରସ୍ତୁତ ହେବା ପର୍ଯ୍ୟନ୍ତେ ଅମ୍ଭମାନଙ୍କ ମଧ୍ୟରୁ କେହି କେହି ରହି ଖ୍ରୀଷ୍ଟିୟାନର ସଙ୍ଗେ କିଛି କଥା ବାର୍ତ୍ତା କରନ୍ତୁ ଅଉ ଏଥିନିମନ୍ତେ ଧର୍ମିଷ୍ଠା, ପରିଣାମଦର୍ଶିନୀ ଓ ପ୍ରେମଧାରିଣୀ, ଏହି ତିନି କନ୍ୟା ନିଯୁକ୍ତ ହୁଅନ୍ତେ, ସେମାନେ ଏରୂପ କଥାବାର୍ତ୍ତା କହିବାକୁ ଆରମ୍ଭ କଲେ । ଯଥା:—

ଧର୍ମିଷ୍ଠା—ହେ ପ୍ରିୟ ଖ୍ରୀଷ୍ଟୀୟାନ, ଅଜରାତ୍ର ଅମ୍ଭମାନଙ୍କ ଗୃହରେ ରହିବା ନିମନ୍ତେ ଅମ୍ଭେମାନେ ଅତି ପ୍ରେମରେ ତୁମ୍ଭଙ୍କୁ ଗ୍ରହଣ କରିଅଛୁଁ ; ଏ ହେତୁ ଆସ ଯାତ୍ରା ସମୟରେ ଯାହା ଯାହା ତୁମ୍ଭ ପ୍ରତି ଘଟିଅଛି, ସେହି ବିଷୟରେ ଅମ୍ଭେମାନେ କଥାବାର୍ତ୍ତା କରିବୁଁ ଯେହେତୁ ହେବାକୁ ପାରେ ତାହା ଶୁଣିବା ଦ୍ୱାରା ଅମ୍ଭେମାନେ ହିତୋପଦେଶ ପାଇବାକୁ ପାରି ।

ଖ୍ରୀଷ୍ଟୀୟାନ—ଆପଣମାନେ ଯେ ଏ ରୂପ ଇଚ୍ଛା କରନ୍ତି, ଏଥିରେ ଅମ୍ଭର ବଡ଼ ସନ୍ତୋଷ ।

ଧର୍ମିଷ୍ଠା—ତୁମ୍ଭେ କିରୂପେ ପ୍ରଥମେ ଯାତ୍ରୀମତ ଧାରଣ କଲ ?

ଖ୍ରୀଷ୍ଟୀୟାନ—ଏକ ଭୟାନକ ଶବ୍ଦ ଦ୍ୱାରା ଅମ୍ଭେ ଶୁଣିବାକୁ ପାଇଲୁଁ ଯେ, ଯେଉଁ ସ୍ଥାନରେ ଅମ୍ଭେ ଅଛୁଁ, ସେହି ସ୍ଥାନରେ ଯେବେ ରହୁ ତେବେ ନିଶ୍ଚୟ ସର୍ବନାଶ ହୋଇବା; ଏଥି ଏହା ଶୁଣି ଅମ୍ଭେ ସ୍ୱଦେଶ ତ୍ୟାଗ କରି ଯାତ୍ରୀ ହେବାକୁ ଆରମ୍ଭ କଲୁଁ ।

ଧର୍ମିଷ୍ଠା:—ମାତ୍ର ସେ ଦେଶରୁ ତୁମ୍ଭେ କି ପ୍ରକାରେ ଏହି ପଥ ଦେଇ ଆସିଲ ?

ଖ୍ରୀଷ୍ଟୀୟାନ:—ଏହା ଈଶ୍ୱରଙ୍କ ଇଚ୍ଛାନୁସାରେ ହୋଇଅଛି । କାରଣ ଯେତେବେଳେ ସର୍ବନାଶର ଭୟରେ ଅମ୍ଭେ ଭୀତ ଓ କମ୍ପିତ ହୋଇ କେଉଁଠାକୁ ଯିବା ଏହା କିଛି ନ ଜାଣି ରୋଦନ କରୁଥିଲୁଁ, ସେତେବେଳେ ମଙ୍ଗଳ ପ୍ରଚାରକ ନାମେ ଏକ ଜଣ ହଠାତ୍ ଆମ୍ଭ ନିକଟକୁ ଆସି କ୍ଷୁଦ୍ର ଦ୍ୱାର ଦେଇ ଯିବାକୁ ଅମ୍ଭଙ୍କୁ ପରାମର୍ଶ ଦେଲେ, ନୋହିଲେ ଅମ୍ଭେ କେବେ ଏ ସ୍ଥାନରେ ଉପସ୍ଥିତ ହେବାକୁ ନ ପାରନ୍ତୁ । ଏହି ରୂପେ ଏହି ଗୃହକୁ ଆସିବାର ସଳଖ ପଥରେ ସେ ଅମ୍ଭଙ୍କୁ ପ୍ରବେଶ କରାଇଲେ ।

ଧର୍ମିଷ୍ଠା:—ତୁମ୍ଭେ କି ଅର୍ଥକାରୀବର ଗୃହ ଦେଇ ଆସିଅଛ ?

ଖ୍ରୀଷ୍ଟୀୟାନ:—ହଁ, ଆସିଅଛୁଁ, ଆଉ ସେଠାରେ ଯେ ଆଶ୍ଚର୍ଯ୍ୟ ବିଷୟମାନ ଦେଖିଅଛୁଁ, ବିଶେଷ ରୂପେ ଖ୍ରୀଷ୍ଟ ସମ୍ପ୍ରଦାନର ଚେଷ୍ଟା ନିଷ୍ଫଳ କରି କିରୂପେ ମନ ମଧ୍ୟେ ଅନୁଗ୍ରହର କର୍ମ ସିଦ୍ଧ କରନ୍ତି । ଏକ ଜଣ ପାପ କରିବାରେ କେମନ୍ତ ଆପେ ଈଶ୍ୱରଙ୍କ ଅନୁଗ୍ରହରୁ ଭ୍ରଷ୍ଟ ହୋଇଅଛି ଓ ଅନ୍ୟ ଏକ ଜଣ ମହା ବିଚାର ଦିନ ଯେ ଉପସ୍ଥିତ ହେଲା, ଏହା ସ୍ୱପ୍ନରେ ଦେଖି କେମନ୍ତ କମ୍ପମାନ ହୋଇଥିଲା, ଏହି ସବୁ ବିଷୟ ଯାହା ଅମ୍ଭେ ସେଠାରେ ଦେଖିଅଛୁଁ ତାହା ଜୀବ ଥିବା ଯାଏ କେବେ ପାସୋରିବାକୁ ନ ପାରିବୁଁ ।

ଧର୍ମିଷ୍ଠ:—ସେହି ସ୍ୱପ୍ନ ବିଷୟ ତୁମ୍ଭେ କି ତାହାର ମୁଖରୁ କିଛି ଶୁଣିଅଛ ?

ଖ୍ରୀଷ୍ଟିୟାନ:—ହଁ, ଆଉ ଆମ୍ଭେ ବିଶ୍ୱାସ କରୁ ଯେ ସେ ଭାରି ଭୟାନକ ସ୍ୱପ୍ନ; ସେ ଲୋକ ଯେତେବେଳେ ସେ ସ୍ୱପ୍ନ ବିଷୟରେ କହିବାକୁ ଲାଗିଲେ, ସେତେବେଳେ ଆମ୍ଭ ଅନ୍ତଃକରଣ ବ୍ୟଥାଯୁକ୍ତ ହୋଇଲା ପ୍ରମାଣ ତଥାପି ତାହା ଶୁଣିବାକୁ ଆମ୍ଭର ବଡ଼ ଭଲ ।

ଧର୍ମିଷ୍ଠ:—ଅର୍ଥଦାୟକର ଗୃହରେ ତୁମ୍ଭେ କି କେବଳ ଏହା ଦେଖିଅଛ, ଆଉ କିଛି ଦେଖି ନାହଁ ?

ଖ୍ରୀଷ୍ଟିୟାନ:—ଏହା ଛଡ଼ା ସେ ଏକ ସୁଶୋଭିତ ଅଟ୍ଟାଳିକାର ନିକଟେ ଆମ୍ଭଙ୍କୁ ନେଇ ସେ ସ୍ଥାନର ଲୋକ ସମସ୍ତେ କି ପ୍ରକାର ସ୍ୱର୍ଣ୍ଣମୟ ବସ୍ତ୍ର ପରିହିତ ଥିଲେ; ଆଉ ଏକ ଜଣ ସାହସିକ ଲୋକ ଅସି ତାହାକୁ ଅଟକାଇବା ନିମନ୍ତେ ସେ ଅଟ୍ଟାଳିକାର ଦ୍ୱାର ନିକଟରେ ଠିଆ ହେବାର ସୁସଜ୍ଜ ଲୋକମାନଙ୍କର ମଧ୍ୟ ଦେଇ କେମନ୍ତ ଗମନ କଲେ ପୁଣି ଭିତରେ ପ୍ରବେଶ ହୁଅନ୍ତେ, ସେହି ଗୃହସ୍ଥ ଲୋକମାନେ ଅନନ୍ତ ଗୌରବ ଭୋଗ କରିବା ନିମନ୍ତେ କେମନ୍ତ ତାହାକୁ ନିମନ୍ତ୍ରଣ କଲେ, ଅର୍ଥଦାୟକ ଏ ସମସ୍ତ ହିଁ ଆମ୍ଭଙ୍କୁ ଦେଖାଇଲେ । ତହିଁରେ ଆମ୍ଭ ମନ ଆହ୍ଲାଦରେ ପରିପୂର୍ଣ୍ଣ ହୁଅନ୍ତେ ସେହି ସ୍ଥାନରେ ବାରମାସ ଯାପନ କରିବାର ଇଚ୍ଛା ଜନ୍ମିଲା । ମାତ୍ର ଅମ୍ଭେ ବୁଝିଲୁଁ ଯେ ଆମ୍ଭଙ୍କୁ ଆଉ ଅନେକ ଦୂର ଯିବାକୁ ହେବ ।

ଧର୍ମିଷ୍ଠ:—ଏହା ଛଡ଼ା ପଥ ମଧ୍ୟରେ ଅଉ କି କି ବିଷୟ ଦେଖିଲ ?

ଖ୍ରୀଷ୍ଟିୟାନ—ଯେବେ ପଚାର ତେବେ ବୋଲୁ ଯେ ଅମ୍ଭେ ପୂର୍ବେ ଏକ ଭାରି ବୋଝରେ ଭାରଗ୍ରସ୍ତ ଥିଲୁଁ, ସେହି ବୋଝ ନେଇ କ୍ରମେ କ୍ରମେ ସେଠାରୁ କିଛି ଦୂର ଗଲା ଉତ୍ତାରେ ଯାହାର ଶରୀରରୁ ରକ୍ତଧାର ବହୁଛି,

ବୃକ୍ଷରେ ଟଙ୍ଗା ଏମନ୍ତ ଏକ ମନୁଷ୍ୟକୁ ଦେଖିଲୁଁ; ଆଉ ତାହାକୁ ଦେଖିବାମାତ୍ର ଆମ୍ଭର ସେହି ଭାରି ବୋଝ ଖସି ପଡ଼ିଲା । ଏମନ୍ତ ଆଶ୍ଚର୍ଯ୍ୟ ବିଷୟ ଆମ୍ଭେ କେବେ ପୂର୍ବରେ ଦେଖି ନ ଥିଲୁଁ, ଏ ହେତୁ ସେହି ସ୍ଥାନରେ ଠିଆ ହୋଇ ଏକ ଦୃଷ୍ଟିରେ ଅନାଇବାକୁ ଲାଗିଲୁଁ, ଆଉ ନ ଅନାଇ ରହିବାକୁ ପାରିଲୁ ନାହିଁ । ଏହି ସମୟରେ ତିନ ତେଜସ୍ୱୀ ପୁରୁଷ ଆମ୍ଭ ନିକଟକୁ ଆସିଲେ, ସେମାନଙ୍କ ମଧ୍ୟରେ ଏକ ଜଣ ଆମ୍ଭ ପାପ ଯେ କ୍ଷମା ହୋଇଅଛି ଏହାର ସାକ୍ଷ୍ୟ ଦେଲେ; ଆଉ ଜଣେ ଆମ୍ଭର ଚିରା କନା କାଢ଼ି ନେଇ ଏହି ଯେ ଉତ୍ତମ ବସ୍ତ୍ର ତୁମ୍ଭେ ଦେଖୁଅଛ ତାହା ଦେଲେ; ପୁଣି ତୃତୀୟ ଜଣ ଆମ୍ଭ କପାଳରେ ଯେଉଁ ଚିହ୍ନ ତୁମ୍ଭେ ଦେଖୁଅଛ ଏହା ଦେଲେ, ତଦ୍ଭିନ୍ନ ଏହି ମୁଦ୍ରାଙ୍କିତ ପୁସ୍ତକ ଆମ୍ଭଙ୍କୁ ଦେଲେ । ଏହି କଥା କହି ଖ୍ରୀଷ୍ଟୀୟାନ ଆପଣା ବକ୍ଷସ୍ଥଳରୁ ସେହି ପୁସ୍ତକ ବାହାର କରି ଦେଖାଇଲେ ।

( ୭ )

# ଭାରତର ଶିଳ୍ପ ଉନ୍ନତି

( ଉତ୍କଳ ଦୀପିକାରୁ ଗୃହୀତ )

କଲିକତାର ଇଣ୍ଡିଆ ସଭାରେ ଗତ ନଭେମ୍ବର ମାସ ୪ ତାରିଖରେ ଯୁକ୍ତ ପ୍ରଦେଶର ସିଭିଲିୟାନ ଶ୍ରୀଯୁକ୍ତ ଅତୁଲଚନ୍ଦ୍ର ଚଟ୍ଟୋପାଧ୍ୟାୟ ମହାଶୟ "ଭାରତର ଶିଳ୍ପପ୍ରକାଶର ଆବଶ୍ୟକତା ଓ ଉପାୟ" ସମ୍ବନ୍ଧରେ ଗୋଟିଏ ପ୍ରବନ୍ଧ ପାଠ କରିଥିଲେ । ସେ ସଭାରେ ବୋମ୍ବାଇର ଭୂତପୂର୍ବ ଗବର୍ଣ୍ଣର ଲର୍ଡ ଲେମିଂଟନ ମହୋଦୟ ସଭାପତିର ଆସନ ଗ୍ରହଣ କରି ଥିଲେ । ଚଟ୍ଟୋପାଧ୍ୟାୟ ମହାଶୟ ଲେଖିଥିଲେ ଯେ ଭାରତରେ ଧନାଗମର ଏକମାତ୍ର ଉପାୟ କୃଷି, ମାତ୍ର ସଭ୍ୟଜାତୀୟଙ୍କ ମଧ୍ୟରେ ଗଣ୍ୟ ହେବା ସକାଶେ ନାନାବିଧ ଶିଳ୍ପକାର୍ଯ୍ୟର ବିକାଶ କରିବା ଏକାନ୍ତ ପ୍ରୟୋଜନୀୟ । ଦେଶରେ ଯେତେ ପ୍ରକାର ଉପକରଣ ଅଛି, ତତ୍ସମସ୍ତରୁ ଦେଶର ଆବଶ୍ୟକୀୟ ପଦାର୍ଥମାନ ପ୍ରସ୍ତୁତ କରିବା ପ୍ରତି ଅଗ୍ରେ ମନୋଯୋଗୀ ହେବା କର୍ତ୍ତବ୍ୟ ; ଲୁହାଖଣିମାନଙ୍କରୁ ଲୁହାର କାର୍ଯ୍ୟ, କପାମଞ୍ଜିରୁ ଗବାଦିର ଖାଦ୍ୟ ଏବଂ ଘିଅ, ହିମାଳୟର ତଳଦେଶର ଘାସରୁ କାଗଜ ଏବଂ ଚମଡ଼ାରୁ ଯୋତା ଓ ବୁଟ ପ୍ରସ୍ତୁତ କରାଯାଇ ପାରେ ଏବଂ ରଙ୍ଗ ମଧ୍ୟ ପ୍ରସ୍ତୁତ ହେବାର ନାନା ପ୍ରକାର ଉପକରଣ ଅଛି ।

ସେ କହିଲେ ପ୍ରତ୍ୟେକ ପ୍ରଦେଶରେ ଶିଳ୍ପଶାଳାମାନ ସ୍ଥାପିତ ହେବା ପ୍ରୟୋଜନୀୟ ଏବଂ ଯେମନ୍ତ ଅଧୁନାତନ ଉନ୍ନତ ପ୍ରଣାଳୀରେ ଅନ୍ୟ ଦେଶମାନଙ୍କରେ କାରଖାନାମାନ ଅଛି ତାହା ଏ ଦେଶରେ ପ୍ରତିଷ୍ଠିତ

ହେବା ଉଚିତ । ତାହା ନୋହିବାରୁ ଭାରତରେ ପୁରାକାଳରୁ ଗୃହ ଇତ୍ୟାଦି ପ୍ରସ୍ତୁତ ହେଉଥିବା ସ୍ଥଳେ କାଷ୍ଠର ଚଳ ଅଧ ଏ ଦେଶର ଶ୍ରମ ନଷ୍ଟ କରୁଅଛି । କାରଖାନାମାନ ସ୍ଥାପିତ ହେବା ସଙ୍ଗେ ସଙ୍ଗେ ଶିଳ୍ପାଦି ଶିକ୍ଷା ଦେବା କାରଣ ସ୍କୁଲ୍ ଓ କଲେଜ ସ୍ଥାପିତ ହେବା ପ୍ରୟୋଜନୀୟ । ସଭାପତି ପରେ ପ୍ରକାଶ କଲେ ଯେ ଗଭର୍ଣ୍ଣମେଣ୍ଟ ଦେଶର ଶିଳ୍ପୋନ୍ନତି ଉଦ୍ଦେଶ୍ୟରେ ଶିଳ୍ପାଦିର ଅନୁଷ୍ଠାନପୂର୍ବକ ଲୋକଙ୍କୁ ଦେଖାଇବା ବାଞ୍ଛନୀୟ । ଏହି ରୂପେ ପ୍ରବନ୍ଧ ପାଠ ଶେଷ ହେବାରୁ ସଭାପତି ମହାଶୟ ବ୍ୟକ୍ତ କଲେ ଯେ, ଭାରତର ରାଜସ୍ୱ ଅନିଶ୍ଚିତ ଭିତ୍ତି ଉପରେ ସ୍ଥାପିତ ନୁହଇ ଏବଂ କୃଷିକାର୍ଯ୍ୟ ଦୃଢ଼ଭାବେ ଦେଶରେ ଚଳୁଥିବାସ୍ଥଳେ ସେ ରାଜସ୍ୱ ବୃଦ୍ଧି ପାଇଅଛି । ତଥାପି ଦେଶୀୟ ଲୋକେ ଅଧିକତର ସୁଖରେ ବାସ କରିବା କାରଣ ଇଚ୍ଛୁକ ହୋଇଥିବାରୁ ଅନ୍ୟ ପ୍ରକାର ଶ୍ରମ-ଶିଳ୍ପଦ୍ୱାରା ଧନାଗମର ଉପାୟ ଉଦ୍ଭାବିତ ହେବା ଉଚିତ । ଏ ଉଦ୍ଦେଶ୍ୟ ସାଧନ କରିବାକୁ ହେଲେ ଶିଳ୍ପୋନ୍ନତିରେ ମନୋଯୋଗୀ ହେବା ଲୋକଙ୍କ ସଂଖ୍ୟା ବଢ଼ାଇବା ବାଞ୍ଛନୀୟ ।

ଏଭଳି ଅଧିକ ଲୋକ ନ ହେଲେ କାରଖାନା ସ୍ଥାପନ କରିବା ବିଡ଼ମ୍ବନା ମାତ୍ର । ୟୁରୋପୀୟ ଦେଶାପେକ୍ଷା ଭାରତର ଶିକ୍ଷା ଅନୁନ୍ନତ ମାତ୍ର, ତାହା ବୋଲି ଶିଳ୍ପାଦିର ଅସମ୍ପୂର୍ଣ୍ଣ ଶିକ୍ଷା ଦେବା ବାଞ୍ଛନୀୟ ନୁହଇ; କାରଣ ଅସମ୍ପୂର୍ଣ୍ଣ—ଶିକ୍ଷାପ୍ରାପ୍ତ ଛାତ୍ରମାନେ କାର୍ଯ୍ୟ ନ ପାଇବା ହେତୁ ସମୁଦାୟ ଚେଷ୍ଟା ବିଫଳ ହେବ । ସେ ବୋମ୍ବାଇର ଗବର୍ଣ୍ଣରସ୍ୱରୂପ ଯେ ବହୁଦର୍ଶିତା ଲାଭ କରିଅଛନ୍ତି, ତହିଁରୁ ଏ ଦେଶର ଶିକ୍ଷା ଅସମ୍ପୂର୍ଣ୍ଣ ବୋଲି ସେ ଜାଣନ୍ତି । ପରନ୍ତୁ ଗଭର୍ଣ୍ଣମେଣ୍ଟ ଶିଳ୍ପାଦି ହାତରେ ନେବା ସମୁଚିତ ନୁହେ । ମାନ୍ଦ୍ରାଜର ଗଭର୍ଣ୍ଣର ଶିଳ୍ପ ସମ୍ବନ୍ଧରେ ଜଣେ ଡାଇରେକ୍ଟର ନିଯୁକ୍ତ କରିଅଛନ୍ତି । ମାତ୍ର ସେ ଥିଲେ ତାହା କରି ନ ଥାନ୍ତେ । ସରକାରୀ କର୍ମଚାରୀମାନେ ଏତଦ୍‌ସମ୍ବନ୍ଧେ ଯେତେ ଅଳ୍ପ ହସ୍ତକ୍ଷେପ କରନ୍ତି ତେତେ ଭଲ । ସରକାର ଶିଳ୍ପ ହାତରେ ନେଲେ ଲୋକଙ୍କର ଶିଳ୍ପୋଦ୍ୟମ ନଷ୍ଟ ହେବ । ଶିଳ୍ପାଦିର ଅନୁଷ୍ଠାନ ସରକାରେ

ଯଥେଷ୍ଟ ଅର୍ଥ ମିଳି ପାରିବ । କାରଣ ଦେଶରେ ଅନେକ ଅର୍ଥ କୌଣସି କାର୍ଯ୍ୟରେ ନ ଲାଗି ପଡ଼ି ରହିଛି । ଲୋକେ ଲାଭଜନକ ଶିଳ୍ପକାର୍ଯ୍ୟରେ ଲାଗିଲେ ଧନ ସ୍ୱଚ୍ଛନ୍ଦରେ ପାଇ ପାରିବେ । ବୋମ୍ବାଇର ଭୂତପୂର୍ବ ଗଭର୍ଣ୍ଣରଙ୍କର ଉକ୍ତି ଆମ୍ଭମାନଙ୍କ ମନକୁ ଘେନିଅଛି । ସବୁ ବିଷୟରେ ସରକାରଙ୍କୁ ଅନାଇ ବସିବା ଉଚିତ ନୁହେଁ । ଏଣିକି ଆମ୍ଭେମାନେ ସ୍ୱୟଂ ଚେଷ୍ଟିତ ହୋଇ ନାନାଦି ଶିଳ୍ପକାର୍ଯ୍ୟରେ ବ୍ରତୀ ନ ହେଲେ ଦେଶର କଦାପି ଉନ୍ନତି ହେବ ନାହିଁ । ତେବେ ଏତିକି ବାଞ୍ଛନୀୟ ଯେ ଲୋକେ ଶିଳ୍ପକାର୍ଯ୍ୟରେ ଲାଗିଲେ ଗଭର୍ଣ୍ଣମେଣ୍ଟ ତାହାର ଉନ୍ନତିର ବାଟ ମୁକ୍ତ ରଖିବା ପ୍ରତି ଦୃଷ୍ଟି ରଖିଥିବେ ।

(୮)

# ନୀଳଗିରି ପ୍ରସଙ୍ଗ

## ପଦ୍ମମାଳୀ ଉପନ୍ୟାସରୁ ଗୃହୀତ

ଉମେଶଚନ୍ଦ୍ର ସରକାର

ଅସ୍ମମାନଙ୍କର ଆଖ୍ୟାୟିକାରେ ଅଉ ଅଧିକ ଅଗ୍ରସର ହେବା ପୂର୍ବରୁ ନୀଳଗିରିର ଇତିହାସର ଦୁଇ ପୃଷ୍ଠା ଲେଉଟାଇ ଦେଖିବାର ଅବଶ୍ୟକ ହେଉଅଛି। ସନ ୧୮୩୨ ଖ୍ରୀଷ୍ଟାବ୍ଦରେ ରାଜା ଗୋବିନ୍ଦଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ ତିନି ବିଧବା ରାଣୀ ଓ ଦୁଇ ନାବାଳକ ପୁତ୍ର ରଖି ସ୍ୱର୍ଗାରୋହଣ କରିଥିଲେ । କନିଷ୍ଠା ରାଣୀ ଚନ୍ଦ୍ରାଦେବୀ ମଧୁସୂଦନ ପଟ୍ଟନାୟକଙ୍କର କନ୍ୟା ଥିଲେ ଓ ତାହାଙ୍କ ଗର୍ଭରେ ରାଜାଙ୍କର ଦୁଇ ପୁତ୍ର ଜନ୍ମଗ୍ରହଣ କରିଥିଲେ । ଏହି ଦୁଇ ପୁତ୍ରଙ୍କ ମଧ୍ୟରୁ ଜ୍ୟେଷ୍ଠ ରାଜା କୃଷ୍ଣଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ ନୀଳଗିରିର ବର୍ତ୍ତମାନ ଶାସନକର୍ତ୍ତା । ଅସ୍ମମାନଙ୍କର ଆଖ୍ୟାୟିକାର ସମୟରେ ରାଜା କୃଷ୍ଣଚନ୍ଦ୍ରଙ୍କର ବୟସ ୧୦ ବର୍ଷରୁ ଅଧିକ ନ ଥିଲା ଓ ତାହାଙ୍କର ନାବାଳକ ସମୟରେ ଓଡ଼ିଶା ବିଭାଗର କମିଶନର ଓ ଗଡ଼ଜାତ ସମୂହର ସୁପରିଣ୍ଟେଣ୍ଡେଣ୍ଟ ସାହେବଙ୍କର ଅନୁମତିକ୍ରମେ ରାଜ୍ୟଶାସନର ପୂର୍ଣ୍ଣ ଭାର ରାଣୀ ଚନ୍ଦ୍ରାଦେବୀଙ୍କ ହସ୍ତରେ ନ୍ୟସ୍ତ ଥିଲା । ରାଣୀ ଅଳ୍ପବୟସ୍କା ଥିଲେ ଓ ରାଜକାର୍ଯ୍ୟରେ ସାହାଯ୍ୟ କରିବା ସକାଶେ ତାହାଙ୍କର ଭ୍ରାତା ଶିବଚରଣ ପଟ୍ଟନାୟକଙ୍କୁ ଦେଓ୍ୱାନ ପଦରେ ନିଯୁକ୍ତ କରିଥିଲେ ।

ଶିବ ପଟ୍ଟନାୟକଙ୍କର ଶାସନରେ ପ୍ରଜାମାନେ ଏତେଦୂର ଉତ୍ପୀଡ଼ିତ ହୋଇଥିଲେ ଯେ ଅଧିକାଂଶ ପ୍ରଜା ଓ ସମଗ୍ର ପାଇକମାନେ ହରିହର ଭ୍ରମରବରଙ୍କର (ସାଧାରଣତଃ ହରିବାବୁ ନାମରେ ପରିଚିତ) ପକ୍ଷ ଅବଲମ୍ବନ କରିଥିଲେ । ନୀଳଗିରିର ରାଜ୍ୟଶାସନ ନେଇ, ନୀଳଗିରିର ପ୍ରଜାମାନଙ୍କର ବିଶୃଙ୍ଖଳତା ଯେତେବେଳେ ଏକଶେଷ ଲାଭ କରିଥିଲା, କମିଶନର ସାହେବ ନୀଳଗିରି ଯିବାର ଅବଶ୍ୟକ ହେବାରୁ ସେ ଯାଇ ରାଣୀଙ୍କ ପକ୍ଷରେ ଦଶ ଜଣ ସୁଦ୍ଧା ପାଇକ ଥିବାର ଦେଖିଲେ ନାହିଁ ।

ହରିବାବୁ ନୀଳଗିରି ରାଜ୍ୟର ସିଂହାସନ ପ୍ରତ୍ୟାଶୀ ଥିଲେ । ନୀଳଗିରିର ରାଜବଂଶ ସହିତ ତାହାଙ୍କର ସମ୍ବନ୍ଧ କେତେଦୂର ଘନିଷ୍ଠ ଥିଲା ତାହା ଇତିହାସରୁ ମିଳୁ ନାହିଁ । କିନ୍ତୁ ସେ ଉପଯୁକ୍ତ ଅଦାଲତରେ ମୋକଦ୍ଦମା କରି ଓ ନିଜ ବାହୁବଳଦ୍ୱାରା ନୀଳଗିରି ରାଜ୍ୟ ଅଧିକାର କରିବାକୁ ଚେଷ୍ଟା କରିଥିଲେହେଁ ଉଭୟତଃ ବ୍ୟର୍ଥମନୋରଥ ହୋଇଥିଲେ । ତାହାଙ୍କ ପୂର୍ବରେ ତାହାଙ୍କ ପିତା ଦାଶରଥି ମଙ୍ଗରାଜ ନୀଳଗିରିର ଗାଦି ପାଇବା ସକାଶେ ସଦର ଦେଓ୍ୱାନୀ ଅଦାଲତରେ ନାଲିଶ କରିଥିଲେ; କିନ୍ତୁ ଗୋବିନ୍ଦଚନ୍ଦ୍ର ମର୍ଦ୍ଦରାଜଙ୍କଠାରୁ ଏକଖଣ୍ଡ ଜାଗିର ପ୍ରାପ୍ତ ହୋଇ ମୋକଦ୍ଦମାରୁ ଦସ୍ତବରଦାର ହୋଇଥିଲେ । ହରିବାବୁ ମଧ୍ୟ ମୋକଦ୍ଦମା କରିଥିଲେ, କିନ୍ତୁ କୃତକାର୍ଯ୍ୟ ହୋଇ ନ ଥିଲେ । ସେ କେବଳ ନୀଳଗିରିର ରାଜକୋଷରୁ ବାର୍ଷିକ ୫୧୨୦ଟଙ୍କା ପେନ୍‌ସନ ପାଉଥିଲେ । କିନ୍ତୁ ତାହା ପାଇ ସୁଦ୍ଧା ନୀଳଗିରି ଗାଦିରୁ ଚକ୍ଷୁ ଅପସୃତ କରି ନ ଥିଲେ । ହରିବାବୁ କବଟପଦା ( ସାଧାରଣରେ କାପ୍ତିପଦା ବୋଲି ଖ୍ୟାତ ) ରାଜାଙ୍କର ଭଗିନୀପତି ଥିଲେ । କାପ୍ତିପଦା ରାଜାଙ୍କର ଓ ମୟୂରଭଞ୍ଜର ରାଜଭ୍ରାତା ବାବୁ ପୃଥ୍ୱୀନାଥ ଭଞ୍ଜ ଦେବଙ୍କର ସାହାଯ୍ୟ ପ୍ରାପ୍ତ ହୋଇ, ହରିବାବୁ ସମୟେ ସମୟେ ଏକ ଏକ ଦଳ ପାଇକ ନେଇ, ନୀଳଗିରିର ପ୍ରଜାମାନଙ୍କର ଗୋରୁ, ମହିଷ, ଶସ୍ୟାଦି ଲୁଣ୍ଠନ କରି ନେଉଥିଲେ । ନୀଳଗିରିର ପ୍ରଜା-

ମାନେ ସନ୍ତକରେ ଶ୍ରୀବଚ୍ଛରଣ ପଟ୍ଟନାୟକଙ୍କର ଶାସନରେ ଉଦବେଜିତ ହୋଇଥିଲେ, ତଦ୍ଧିରେ ପୁଣି ସମୟ ସମୟରେ ହରିବ ଭୁଞ୍ଜର ଉପଦ୍ରବରେ ପ୍ରପୀଡ଼ିତ ହୋଇ ତାଙ୍କର ଆଶ୍ରୟ ନେବାକୁ ଅଗତ୍ୟା ବାଧ୍ୟ ହୋଇଥିଲେ । କେବଳ ପ୍ରଜାଙ୍କ ଉପରେ ଉତ୍ପୀଡ଼ନ କରି ହରିବଭୁ ଶାନ୍ତ ନ ଥିଲେ । ନୀଳଗିରିର ନାବାଳକ ରାଜାଙ୍କର ଜୀବନ ସୁଦ୍ଧା ତାହାଙ୍କର ଉପଦ୍ରବରେ ନିରାପଦ ନ ଥିଲା । ଏକଦିନ ନିଶୀଥ ସମୟରେ ଏକ ରାଜବନ୍ଧୁର ପୁତ୍ର ଭଗବାନ ବାବୁ ନାବାଳକ ରାଜାଙ୍କୁ ହତ୍ୟା କରିବା ସକାଶେ ନୀଳଗିରିର ରାଜବାଟୀ ମଧ୍ୟରେ ପ୍ରବେଶ କରିଥିଲେ । କିନ୍ତୁ ତାହାର ଦୁରଭିସନ୍ଧି ସାଧନ କରିବା ପୂର୍ବରୁ ଧରା ପଡ଼ିବାରୁ ନିଷ୍ଫଳ ହୋଇଥିଲା ।

ପୁନଃପୁନଃ ରାଜାଙ୍କ ଜୀବନ ପ୍ରତି ଏରୂପ ଉଦ୍ୟମ ହେବାର ଦେଖି ରାଣୀ ଚନ୍ଦ୍ରାଦେବୀ ତାହାଙ୍କର ଦୁଇ ଅପୋଗଣ୍ଡ ଶିଶୁସନ୍ତାନଙ୍କୁ ନେଇ ଶତ୍ରୁଘ୍ନ ପଟ୍ଟନାୟକଙ୍କର ଗୃହରେ ଆଶ୍ରୟ ନେବାକୁ ବାଧ୍ୟ ହୋଇଥିଲେ, ସେଠାରୁ ଯଭ ବାଲେଶ୍ୱର ମାଜିଷ୍ଟ୍ରେଟଙ୍କର ଆଶ୍ରୟ ଗ୍ରହଣ କରିବାରେ, ସାହେବ ପ୍ରଶଂସିତ ତାହାଙ୍କର ଶରୀରରକ୍ଷାର୍ଥ ଏକଜଣ ସରକାରୀ ହାବିଲଦାର ଓ ଦଶଜଣ ଚପରାସୀ ସଙ୍ଗରେ ଦେଇ ତାହାଙ୍କୁ ଗଡ଼କୁ ପଠାଇ ଦେଲେ ।

ନୀଳଗିରିର ଯେଉଁ ଅବସ୍ଥା ଉପରେ ସଂକ୍ଷେପରେ ବର୍ଣ୍ଣିତ ହେଲା, ତହିଁ ସକାଶେ ଦୁର୍ଯ୍ୟୋଧନ ଦାସ ଅନେକ ପରିମାଣରେ ଦାୟୀ ଥିଲା । ପାଠକଙ୍କର ଏହା ହୃଦୟଙ୍ଗମ କରାଇବା ପାଇଁ, ଏଠାରେ ଦୁର୍ଯ୍ୟୋଧନ ସମ୍ବନ୍ଧରେ ଦୁଇ ଚାରି ପଦ ବୋଲିବାର ଆବଶ୍ୟକ । ଦୁର୍ଯ୍ୟୋଧନ ସମ୍ବନ୍ଧରେ କାହାର ପୁତ୍ର ଓ ପୌତ୍ର ଏହା ସାଧାରଣଙ୍କୁ ଜଣା ନ ଥିଲା । ଏକ ରାତିରେ ମଧୁସୂଦନ ପଟ୍ଟନାୟକଙ୍କର ଏକ ବାଡ଼ା ଦ୍ୱିଗୀଣା ଅକସ୍ମାତ୍ ତାହାଙ୍କର ଆବାସରେ ଉପସ୍ଥିତ ହେଲା । ତାର ନାମ କେତକୀ ଓ ପଟ୍ଟନାୟକ ମହାଶୟ ବାଲ୍ୟାବସ୍ଥାରୁ ତାହାକୁ ଯଥେଷ୍ଟ ସ୍ନେହ କରୁଥିଲେ । କେତକୀ ପଟ୍ଟନାୟକଙ୍କର ଗୃହରେ ଉପସ୍ଥିତ ହୋଇ ସେହି ରାତିରେ ଏକ ପୁତ୍ର

ସନ୍ତାନ ପ୍ରସବ କରି କାଳଗ୍ରାସରେ ପତିତ ହେଲା । କେତକୀ ରୂପବତୀ ଥିଲେ ଓ ପଟ୍ଟନାୟକ ତାହାର ଷୋଡ଼ଶ ବର୍ଷ ବୟସରେ ତାହାଙ୍କୁ ଏକ ଯକ୍ଷ୍ମା ରୋଗଗ୍ରସ୍ତ ଓ ଜୀବନର ଅପରାହ୍ଣପ୍ରାପ୍ତ ବ୍ୟକ୍ତିର ସହିତ ବିବାହ ଦେଇଥିଲେ । ତହିଁର ପରିଣାମ ଏହି ହେଲା ଯେ କେତକୀ ଶ୍ୱଶୁରାଳୟକୁ ଯିବାର ଛ'ମାସ ଭିତରୁ ବିଧବା ହେଲା । ଅବଳା ବାଳିକା ସଂସାରସୁଖ ଅନୁଭବ କରିବା ପୂର୍ବରୁ ଅଚିରେ ଚିରଦୁଃଖିନୀ ହେଲା । କେତକୀ ସ୍ୱାମୀର ମାତୁଳ ପୁତ୍ର ଘନଶ୍ୟାମ କେତକୀର ଶ୍ୱଶୁରାଳୟକୁ ସର୍ବଦା ଯାତାୟାତ କରୁଥାଏ ଓ ସମୟ ସମୟରେ ସେଠାରେ ଦୁଇ ଚାରି ଦିନ ବାସ କରୁଥାଏ । ଘନଶ୍ୟାମ କେତକୀର ସମ୍ପର୍କରେ ଦେବର ଥିବାରୁ କାଳକ୍ରମେ କେତକୀ ଘନଶ୍ୟାମ ନିକଟରେ ପ୍ରକାଶ୍ୟଭାବେ କଥୋପକଥନ ଓ ସମୟ ସମୟରେ ହାସ୍ୟରହସ୍ୟ ପର୍ଯ୍ୟନ୍ତ କରିବାକୁ ସାହସୀ ହୋଇଥିଲା । କେତକୀ ନୂତନ ବୈଧବ୍ୟ ପ୍ରାପ୍ତ ହୋଇ, କିଛି ଦିନ ଅତିକଷ୍ଟରେ ଶୋକଭାର ବହନ କଲା । କାଳକ୍ରମେ ଶୋକାବେଗ ଶିଥିଳ ହେଲା ଓ ଘନଶ୍ୟାମର ପ୍ରଣୟୋକ୍ତିରେ କ୍ରମେ କ୍ରମେ ତାହାର ଚିତ୍ତ ଘନଶ୍ୟାମ ପ୍ରତି ଆକୃଷ୍ଟ ହେଲା ଓ ପରିଶେଷରେ ସେ ଘନଶ୍ୟାମର ପ୍ରଣୟ ଉପହାର ଗ୍ରହଣ କଲା । ଯଥା ସମୟରେ କେତକୀଗର୍ଭରେ ଦୁର୍ଯୋଧନର ଉଦୟ ହେଲା । ଗର୍ଭ କ୍ରମେ କ୍ରମେ ପ୍ରକାଶ ହେବାରୁ ଘନଶ୍ୟାମ ଓ କେତକୀ ଭ୍ରୂଣହତ୍ୟା କରିବାର ଅନେକ ଚେଷ୍ଟା କଲେ, କିନ୍ତୁ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । ପ୍ରଥମରେ କେତକୀର ନଣନ୍ଦ, ତପରେ ଶାଶୂ ଓ ତପରେ ପ୍ରତିବେଶିନୀମାନେ କେତକୀର ଗର୍ଭୋଦୟ ହେବାର ଜାଣିଲେ ଓ ଦିବାରାତ୍ର ତାହାକୁ ପର୍ଯ୍ୟବସାନ୍ତି ଭର୍ତ୍ସନା ଆରମ୍ଭ କଲେ । ଶାଶୂ ନଣନ୍ଦଙ୍କର ନିନ୍ଦା ଓ ଭର୍ତ୍ସନା କେତକୀ ସହ୍ୟ କରି ନ ପାରି ଏକରାତିରେ ଗୁପ୍ତ ଭାବେ ପିତାଳୟକୁ ପଳାୟନ କଲା । ପିତାଳୟରେ ଉପସ୍ଥିତ ହୋଇ ସେହି ରାତ୍ରରେ ଦୁର୍ଯୋଧନକୁ ପ୍ରସବ କରି ପ୍ରାଣତ୍ୟାଗ କଲା । ମଧୁସୂଦନ ପଟ୍ଟନାୟକ ଓ ତାହାଙ୍କର ମାତା ଏବଂ ସ୍ତ୍ରୀ ବ୍ୟତିରେକେ ଏ ବିଷୟ ଅନ୍ୟ କାହାରିକୁ ଜଣା ନ ଥିଲା । ଦୁର୍ଯୋଧନ ମାତୁଳାଳୟରେ ଥାଇ କ୍ରମେ

କ୍ରମେ ବୟଃପ୍ରାପ୍ତ ହେଲେ ଓ ମଧୁସୂଦନଙ୍କର ଜ୍ୟେଷ୍ଠପୁତ୍ର ଶିବଚରଣ ପଟ୍ଟନାୟକ ଦେଓ୍ୱାନ ଥିବା ସମୟରେ ଦୁର୍ଯ୍ୟୋଧନ ପ୍ରକୃତରେ ଦେଓ୍ୱାନ ହୋଇଥିଲେ । ଦୁର୍ଯ୍ୟୋଧନ ହସ୍ତରେ କ୍ଷମତାପ୍ରାପ୍ତ ହୋଇ ତହିଁର ଅସଦ୍‌ବ୍ୟବହାର କରିବାରେ ତ୍ରୁଟି କରି ନ ଥିଲେ । ତାହାର ଶାସନରେ ପ୍ରଜାଙ୍କର ଧନ, ମାନ ଓ ଗୌରବର ରକ୍ଷା ନ ଥିଲା । ଅଧିକାଂଶ ପ୍ରଜାମାନେ ଦୁର୍ଯ୍ୟୋଧନର ଅତ୍ୟାଚାରରେ ରାଣୀ ଓ ନାବାଳକ ରାଜାଙ୍କ ପକ୍ଷ ପରିତ୍ୟାଗ କରି ହରିବାବୁଙ୍କ ଉପଦ୍ରବରୁ ରକ୍ଷା ପାଇବା ନିମନ୍ତେ ତାହାଙ୍କ ପକ୍ଷ ଅବଲମ୍ବନ କରିବାକୁ ବାଧ୍ୟ ହୋଇଥିଲେ ।

# ( ୯ )

# ବିବେକୀ

## ଅପରିପକ୍ୱତା

### ୰ ରାୟବାହାଦୁର ରାଧାନାଥ ରାୟ

ଅପରିପକ୍ୱତା ନାନାପ୍ରକାର—ଶାରୀରିକ, ମାନସିକ, ନୈତିକ ଏବଂ ବୌଦ୍ଧିକ । ଶାରୀରିକ ଅପରିପକ୍ୱତା ଅସ୍ମମାନଙ୍କର ଅଭୀଷ୍ଟ ପ୍ରସଙ୍ଗ ନୁହଇ । ଶରୀର ମନୁଷ୍ୟର ସାର ନୁହଇ । ଶେଷୋକ୍ତ ତିନପ୍ରକାର ଅପରିପକ୍ୱତା ବିଷୟରେ କିଛି କହିବୁ । ଅଜାତଶ୍ମଶ୍ରୁ ଅବସ୍ଥାର ରଚନାରୁଚି, ଭାବ ଓ ମତ ପ୍ରଭୃତି ଅସ୍ମମାନଙ୍କର ଆଲୋଚ୍ୟ ପଦାର୍ଥ ।

ଅଜାତଶ୍ମଶ୍ରୁ ଅବସ୍ଥାରେ ଅମ୍ଭେ କେତେପ୍ରକାର ମତ ପ୍ରକାଶ କରୁଥିଲୁଁ । ଅମ୍ଭ ଜାଣିବାରେ ସେହି ମତଗୁଡ଼ିକ ଅକାଟ୍ୟ ଥିଲା । ପରିଣତ-ବୟସ୍କ ବ୍ୟକ୍ତିମାନେ ଅମ୍ଭର ମତ ପ୍ରତି ଆସ୍ଥା କରୁ ନ ଥିଲେ । ସେଥି-ନିମନ୍ତେ ସେମାନଙ୍କୁ ଈର୍ଷା ମଣୁଥିଲୁଁ । ଅଜାତଶ୍ମଶ୍ରୁ ଅବସ୍ଥାରେ କେତେ କେତେ କବିତା ଲେଖିଲୁ, କେତେ ପ୍ରବନ୍ଧ ଲେଖିଲୁ । ସେତେବେଳେ ସେମାନଙ୍କର ବିଶ୍ୱାସ ଥାଏ ଯେ, ସେହି କବିତା ଓ ପ୍ରବନ୍ଧମାନ ପ୍ରତିଷ୍ଠିତ କବି ଓ ପ୍ରତିଷ୍ଠିତ ଗ୍ରନ୍ଥକାରଙ୍କ ରଚନାରୁ କୌଣସି ଅଂଶରେ ନ୍ୟୂନ-

ନୁହେଁ । ଅଜାତଶ୍ମଶ୍ରୁ ଅବସ୍ଥାରେ ଲୋକେ ସାମାଜିକ ଓ ନୈତିକ ବିଷୟରେ କେତେ ପ୍ରକାର ମତ ପ୍ରକାଶ କରନ୍ତି, ସେହି ମତର ବିରୋଧୀ ମାନଙ୍କୁ ବିଷ ଦୃଷ୍ଟିରେ ଦେଖନ୍ତି । ବୟସ ବଢ଼ିଲେ ସେହି ସବୁ ଅକାଟ୍ୟ ମତ, ସରସ କବିତା ଓ ପ୍ରବନ୍ଧ ଅନ୍ୟ ପ୍ରକାର ଦିଶେ; ସେ ସବୁ ସ୍ମରଣ କରି ମନ ଲଜ୍ଜିତ ଓ ବିସ୍ମୟାବିଷ୍ଟ ହୁଏ । ଅଜାତଶ୍ମଶ୍ରୁ ଯୁବକ ସଭାରେ ବକ୍ତୃତା କରୁଅଛ; କାହିଁକି ତୁମ୍ଭେ ବର୍କ ସାହେବଙ୍କର ପ୍ରତିଯୋଗୀ ନ ହେବ ସେଥିର ହେତୁ ଲୋକେ ପାଇ ନାହିଁ । ଅଜାତଶ୍ମଶ୍ରୁ ଯୁବକ ! ତୁମେ ଖଣ୍ଡିଏ ଗ୍ରନ୍ଥ ମୁଦ୍ରିତ କରିଅଛ, ତାହାର ମାଧୁର୍ଯ୍ୟ ଅନୁଭବ କରି ଥରକୁ ଥର ମନରେ ଆପଣାକୁ ପ୍ରଶଂସା କରୁଅଛ; ପରିଣତବୟସ୍କ ଲୋକେ ତୁମ୍ଭର ଗ୍ରନ୍ଥ ପଢ଼ିଲେ ତୁମ୍ଭର ରଚନା ସମ୍ୟକ୍ ଉଜ୍ଜ୍ୱଳ ଅଟେ, ସମ୍ୟକ୍ ଓଜୋଗୁଣବିଶିଷ୍ଟ ଅଟେ, ମାତ୍ର ସେମାନଙ୍କୁ ତୁମ୍ଭର ଗ୍ରନ୍ଥ ଭଲ ଲାଗିଲା ନାହିଁ । ତୁମ୍ଭର ବୋଧର ଉତ୍ପତ୍ତି ନାହିଁ । ପ୍ରକୃତ ହେତୁ ନ ଲୋଡ଼ି ଯେତେ ପ୍ରକାର ଅସତ୍ ହେତୁ ମନରେ ଅଛି, ବାଛି ବାଛି ତୁମ୍ଭେ ସେହି ହେତୁ ଗୁଡ଼ିକ ଲୋଡ଼ୁଅଛ । ତୁମ୍ଭର ପୋଥିକି ବାନ୍ଧି ରଖ, ଦଶ ବର୍ଷ ଯାଉ । ଦଶ ବର୍ଷ ଗଲା, ଏବେ ପଢ଼ ।

ଏବେ ପଢ଼ିଲାରୁ ତୁମ୍ଭର ମତ କଣ ? ତୁମ୍ଭର ଭାଷା ଉତ୍ତମ ଅଟେ, ଅଳଙ୍କାର ଉତ୍ତମ ଅଟେ, ମାତ୍ର କାହିଁକି କେ ଜାଣି ସେ ଗ୍ରନ୍ଥ ତୁମ୍ଭଙ୍କୁ ଭଲ ଲାଗୁ ନାହିଁ । ପୂର୍ବରେ ଯାହାକୁ ଓଜସ୍ୱିତା ମଣିଥିଲ, ଏଣିକି ତାହା ଅପରିପକ୍ୱତା ରୂପେ ପ୍ରତିଭାତ ହେଉଅଛି, ଯାହାକୁ ଅଳଙ୍କାର ମଣିଥିଲ, ତାହା ଏବେ ନିରର୍ଥକ ଝଙ୍କାରରୂପେ ପ୍ରତିଭାତ ହେଉଅଛି । ସେଗୁଡ଼ିକ ସାରବାନ୍ ଦିଶୁ ନାହିଁ । ବୟସ ବଢ଼ିଲାରୁ ବହୁଦର୍ଶିତା ବଢ଼ିଲା । ଅଉ ସେ ଭାବଗୁଡ଼ିକ ପରିପକ୍ୱ ବୋଧ ହେଉନାହିଁ । ସେ ଅପରିପକ୍ୱତା କେଉଁଠାରେ ଅଛି, ତାହା ତୁମ୍ଭେ ସ୍ଥିର କରି ପାରୁନାହିଁ; ତଥାପି ଅପରିପକ୍ୱତା ସୁସ୍ପଷ୍ଟରୂପେ ଅନୁଭୂତ ହେଉଅଛି । ଆଜି ସେ ରଚନା ବନ୍ଧୁମାନଙ୍କ ଆଗରେ ପଢ଼ିବାକୁ ତୁମ୍ଭେ ସାହସ କରୁନାହିଁ; ଭାବ ଓ ଭାଷାକୁ ପରିବର୍ତ୍ତିତ ନ କଲେ ତୁମ୍ଭର

ଗ୍ରନ୍ଥ ପାଠ୍ୟ ହେବ ନାହିଁ, ଏହା ତୁମ୍ଭର ସ୍ଥିର ଉପଲବ୍ଧି ହୋଇଅଛି । ମାତ୍ର ପ୍ରଥମ ଲେଖିଲାବେଳେ ଏ ବିଶ୍ୱାସ ନ ଥିଲା । ତୁମ୍ଭେ ଭାବୁଥିଲ ଯେ ପରିଣତବୟସ୍କ ବ୍ୟକ୍ତିଙ୍କ ରଚନାଠାରୁ ତୁମ୍ଭର ରଚନା କୌଣସି ଅଂଶରେ ନ୍ୟୂନ ନୁହେଁ ।

ଅଳ୍ପବୟସ୍କ ବ୍ୟକ୍ତିଙ୍କୁ ଉପହାସ କରିବା ଏ ପ୍ରବନ୍ଧର ଉଦ୍ଦେଶ୍ୟ ନୁହେ । ଅଳ୍ପ ବୟସରେ ସମସ୍ତଙ୍କର ଏପରି ଘଟିଥାଏ । ସମସ୍ତେ ଏହି ନିୟମର ଅନ୍ତର୍ଭୁକ୍ତ । ବହୁଙ୍କ ଅଳ୍ପବୟସ୍କ ବ୍ୟକ୍ତିଙ୍କୁ ଅନେକ ବୃଦ୍ଧ ଲୋକେ ଈର୍ଷା କରନ୍ତି । ଏପରି ଈର୍ଷା ଲୋକ ପ୍ରତି ଘୃଣା ଜାତ ହୁଏ । ସେମାନଙ୍କର ଈର୍ଷା ସେମାନଙ୍କର ବାକ୍ୟ ଓ ଲେଖାଣୀରୁ ପ୍ରତିଫଳ ହୁଏ । ବୃଦ୍ଧ ଲୋକେ ସେମାନଙ୍କଠାରୁ ଯୋଗ୍ୟତର, ଅଥଚ ଅଳ୍ପବୟସ୍କ ବ୍ୟକ୍ତିଙ୍କ କଥା କହୁଁ କହୁଁ କହନ୍ତି, "ହଁ, ପଢ଼ିଛନ୍ତି, ଜାଣନ୍ତି, ଏଣୁ ପିଲାବୁଦ୍ଧି ଯାଇ ନାହିଁ ।" ଏପରି ପ୍ରଶଂସାଠାରୁ ନିନ୍ଦା ଶ୍ରେୟସ୍କର, ପ୍ରଶଂସା କୌଣସି ସଦଭିପ୍ରାୟରୁ ନ ବାହାରି କେବଳ ଈର୍ଷାକୁ ଘୋଡ଼ାଇ ରଖିବା ନିମନ୍ତେ ବାହାରୁ ଥିବାର ବୋଧ ହୁଏ । ଈର୍ଷା ପ୍ରବୀଣଙ୍କଠାରେ ଯେମନ୍ତ ଅଭକ୍ତି ଜନ୍ମେ, ଉଦାର ସ୍ଥବିରଙ୍କଠାରେ ସେହି ପରିମାଣରେ ଭକ୍ତି ହୁଏ । ଯେଉଁ ବୃଦ୍ଧଲୋକେ କୌଣସି ଯୁବାର ବୁଦ୍ଧି ଆପଣା ବୁଦ୍ଧିଠାରୁ ତୀକ୍ଷ୍ଣତର ଜାଣି ସୁଦ୍ଧା କେବଳ ସଦଭିପ୍ରାୟରେ ତରୁଣ ବ୍ୟକ୍ତିଙ୍କୁ ଉତ୍ସାହ ଓ ଉପଦେଶ ପ୍ରଦାନ କରନ୍ତି, ଏମନ୍ତ ଲୋକଙ୍କ ପ୍ରତି ଭକ୍ତି ପ୍ରବାହ ଆପେ ପ୍ରବାହିତ ହୁଏ ।

ଅପରିଣତ ବ୍ୟକ୍ତିର ଭାବଭଙ୍ଗୀ ପ୍ରତି ଆମ୍ଭେ କଟାକ୍ଷ କରୁ ନାହୁଁ । ତୁମ୍ଭେ ଅଳ୍ପବୟସ୍କ ବୋଲି ମୁଁ ତୁମ୍ଭଠାରୁ ଅଧିକ ଜ୍ଞାନୀ, ଏହା କହିବା ମୋର ଉଦ୍ଦେଶ୍ୟ ନୁହେ । ମୁଁ କେବଳ ଏହି ତ କହୁଅଛି ଯେ, ମୁଁ ତୁମ୍ଭଠାରୁ ବୟସରେ ବଡ଼ । ବର୍ତ୍ତମାନ ତୁମ୍ଭେ ଯେମନ୍ତ ଭାବରେ ଚାଲୁଅଛ, ମୁଁ ମଧ୍ୟ ତୁମ୍ଭ ବୟସରେ ସେହିପରି ଭାବେ ଚାଲୁଥିଲି ।

ତୁମ୍ଭକୁ ବର୍ତ୍ତମାନ କଣ ଭଲ ଲାଗୁଛି, କଣ ମନ୍ଦ ଲାଗୁଛି, ମୁଁ ତାହା ବିଶେଷରୂପେ ଜାଣେ; ତାହା ଜାଣେ, ଅନୁଭବ କରି ଜାଣେ । ସମୟ ସ୍ରୋତରେ ମୁଁ ଅଧିକ ଦୂର ଭାସି ଆସିଲଣି । ମୁଁ ବର୍ତ୍ତମାନ ଯାହା କହୁଅଛି, ତାହା ତୁମ୍ଭର ଅବସ୍ଥା ପ୍ରତି ଯେମନ୍ତ ପ୍ରବର୍ତ୍ତେ, କେତେକ ବର୍ଷ ପୂର୍ବରେ ମୋହର ଯେଉଁଠି ମନ ଗତି ଥିଲା, ତାହାକୁ ମଧ୍ୟ ସେହିପରି ପ୍ରବର୍ତ୍ତିବ । କେତେକ ଲୋକ ପୌଢ଼ାବସ୍ଥାରେ ଯେତେ ଜନକଚରିତ୍ରୀ ହୋଇଥାନ୍ତି, ଭୂତପୂର୍ବ ବାଲ୍ୟକାଳର ଓ ଯୌବନକାଳର ଭାବମାନ ସ୍ମରଣ କରି ସେହି ପରିମାଣରେ ଲଜ୍ଜିତ ହୁଅନ୍ତି । "ମୁଁ ନିର୍ବୋଧ ଅଟେ" ଏହା ସ୍ୱୀକାର କରିବାକୁ ଅତ୍ୟନ୍ତ କଷ୍ଟ ହୁଏ ।

ମାତ୍ର "ମୁଁ କେବେ ନିର୍ବୋଧ ଥିଲି" ଏହା ସ୍ୱୀକାର କରିବାକୁ କେହି କୁଣ୍ଠିତ ହୁଅନ୍ତି ନାହିଁ । ହେତୁ କି ପୂର୍ବରେ ନିର୍ବୋଧ ଥିବାର ସ୍ୱୀକାର କରିବାର ଯେ, ସେ ବର୍ତ୍ତମାନ ଉନ୍ନତିର ବିଶେଷ ପରିଚୟସୂଚକ ଅଟେ । ପୂର୍ବର ସାମାନ୍ୟ ଭ୍ରମ ଓ ଅଜ୍ଞତାକୁ ଲୋକେ ବାହୁଲ୍ୟ ରୂପରେ ବର୍ଣ୍ଣନା କରନ୍ତି । "ମୋତେ ଅକ୍ଷର ଲେଖି ଆସୁ ନ ଥିଲା" ଏ ଉକ୍ତିର ପ୍ରକୃତ ଅର୍ଥ—ଏଣିକି ମୁଁ ଅନେକ ବିଦ୍ୟା ପଢ଼ିଲଣି । "ଗଣିତ କେତେ କଥା, ଏହା ମୁଁ କହି ପାରୁ ନ ଥିଲି" ଏହାର ଅର୍ଥ—ଏବେ ମୁଁ ଅଙ୍କ ପାଠ ଭଲ ଜାଣେ । ଏଇଟି ସମସ୍ତଙ୍କର ପ୍ରକୃତି । ପୂର୍ବ ଭାବ, ପୂର୍ବ ଚାପଲ୍ୟ ସ୍ମରଣ କରି ସମସ୍ତେ ଲଜ୍ଜିତ ହୁଅନ୍ତି । ପାଠକେ, ତୁମ୍ଭେ ସ୍କୁଲରେ ପଢ଼ିଥିଲଟି କି ? ମେଟ୍ରିକ ପରୀକ୍ଷା ସମୟରେ ଯେଉଁ ପ୍ରବନ୍ଧ ଲେଖିଥିଲ, ଲେଖି ଦେଖ, ବାକ୍‌ସରେ ଥିବ । ଏବେ ପଢ଼ି; କଣ ପାଇଲ ? ଲାଜ ମାଡୁଛି ତ ? ମାଡ଼ିବ ତ ? ଇଚ୍ଛା ଲାଜ ନ ହେଉ, ତୁମ୍ଭର ହର୍ଷ ବିଷାଦ ଉପୁଜିବ । ପୂର୍ବରେ ଏତେ ନିର୍ବୋଧ ପରି ଲେଖିଥିଲ, ଏଥି ନିମନ୍ତେ ଟିକିଏ ଅମ୍ଳାନି ହେଉଥିବ ।

ଏଣିକି ହେତୁ ହୋଇଅଛି; ଏହା ଭାବି ଟିକିଏ ଅନୁଗ୍ଲାନି ପରି ହେଉଥିବ । ମଣିଷରେ ସବୁଠାରୁ ନିର୍ବୋଧ କିଏ, ଏଇଟି କଠିନ ପ୍ରଶ୍ନ

ଅଛି । ଏହାର ଉତ୍ତର ଦେବା କଠିନ । ମାତ୍ର ତୁମ୍ଭ କାଣିବାରେ ମଧ୍ୟରେ ସବୁଠାରୁ କଏ ନିର୍ବୋଧ ? ଏ ପ୍ରଶ୍ନର ଉତ୍ତର ତୁମ୍ଭେ ଅନାୟାସରେ ଦେଇପାରିବ । ତୁମ୍ଭର ପୂର୍ବ ରଚନା ପଢ଼ିଲେ ଜାଣି ପାରିବ, ପୂର୍ବକାଳର ରସିକତା ସ୍ମରଣ କଲେ ସେ ଉତ୍ତର ତୁମ୍ଭର ମନରେ ପଡ଼ିବ । ବିଶେଷତଃ ଦେହ ରଚନାରେ ଯେବେ ପଦ୍ୟମିଶ୍ରିତ ହୋଇଥିବ, ସେଥିରେ ଯେବେ ସ୍ଥାନେ ସ୍ଥାନେ ଆତ୍ମଗର୍ବ ମନ୍ତବ୍ୟ ଥିବ, ତାହାହେଲେ ତ ଉତ୍ତରର ତାତ୍ପର୍ଯ୍ୟ ବିଷୟରେ ଅଳ୍ପ ସନ୍ଦେହ ନାହିଁ । ନବଯୌବନ ପ୍ରାରମ୍ଭରେ ବନ୍ଧୁଜନଙ୍କୁ ଯେଉଁ ପତ୍ରମାନ ଲେଖିଥିଲ, ଆପଣାର ରସିକତା ଓ ବର୍ଣ୍ଣନାଶକ୍ତିର ପରିଚୟ ଦେବା ନିମନ୍ତେ ବନ୍ଧୁମାନଙ୍କୁ ଯେଉଁ ପତ୍ର ଲେଖିଥିଲ, ସେହି ପତ୍ରର ଯେବେ ପ୍ରତିଲିପି ଥିବ, ଥରେ ସେହି ଗୁଡ଼ିକୁ ପଢ଼ । ପଢ଼ିଲେ ଜାଣି କଣ ଭାବୁଅଛ ? ଆତ୍ମ ଧିକ୍କାର କରୁଅଛ, ବନ୍ଧୁଜନଙ୍କର ସ୍ନେହପ୍ରସୂତ ସହିଷ୍ଣୁତା ସ୍ମରଣ କରି ଅଧିକ ଥର ଲଜ୍ଜିତ ହେଉଅଛ । ଅକାଳ ରସିକତା, ସୁଭଗମନ୍ୟତାର ପରିଚୟ ପ୍ରତି-ବର୍ଣ୍ଣନାରୁ ଦିଶୁଅଛି । ତଥା ଚ ତୁମ୍ଭର ସେ ଦିନ ଗଲାଣି, ଏବେ ଅନ୍ୟ ସେପରି ଲେଖିବାକୁ ସାହସ କରିବ ନାହିଁ । ଏହା ଭଳି ମନ କିଏ ପ୍ରଫୁଲ୍ଲ ହେଉଥିବ ।

ମାନସିକ ଅପରିପକ୍ୱତା କଣ ? ସେଥିର ଲକ୍ଷଣ ନିର୍ଦ୍ଦେଶ କରିବାର ସହଜ ନୁହେଁ । ସେହିପରି ଅନେକ ବିଷୟ ଅଛି ଯେ, ବର୍ଣ୍ଣନା ଦ୍ୱାରା ତାହାକୁ ହୃଦୟଙ୍ଗମ କରାଇବାର ଅସାଧ୍ୟ ଅଟେ । ତୁମ୍ଭେ ପୀଡ଼ିତ ଅଛ, ପୀଡ଼ା ଯୋଗୁଁ ତୁମ୍ଭର ଦାରୁଣ କଷ୍ଟ ହେଉଅଛି, ତୁମ୍ଭେ କଷ୍ଟ ଅନୁଭବ କରୁଅଛ, ମାତ୍ର ଲୋକେ ପଚାରିଲେ ତୁମ୍ଭେ ତାହା ବର୍ଣ୍ଣନା ଦ୍ୱାରା ହୃଦୟଙ୍ଗମ କରାଇ ପାରୁ ନାହିଁ । ମାନସିକ ଅପରିପକ୍ୱତା ସେହିପରି ଅନୁଭବରୁ ବୁଝି ପାରିବ, ମାତ୍ର କହି ଅସିବ ନାହିଁ । ଶିକ୍ଷକମାନେ ଛାତ୍ରଙ୍କର ବିଶେଷତଃ ବୁଦ୍ଧିମାନ୍ ଛାତ୍ରଙ୍କର ରଚନା ପଢ଼ିବାବେଳେ ଶଂସିତ ଅପରି-ପକ୍ୱତା ସ୍ପଷ୍ଟ ଅନୁଭବ କରନ୍ତି । ସ୍ଥବିର ଲୋକେ ହୃଦରେ ବସି ଅଳ୍ପ

ବୟସ୍କ ସ୍ୱୀଲୋକର ବକ୍ତୃତା ଶୁଣିବା ବେଳେ ଶାସ୍ତ୍ରିତ ଅସଂଲଗ୍ନତା ଅନୁଭବ କରନ୍ତି । ବିଶେଷତଃ ଯେଉଁ ଯୁବକମାନେ ଅତ୍ୟନ୍ତ ତେଜ ଓ ଅନୁମୂଳ ସହିତ ବକ୍ତୃତା କରନ୍ତି, ସେମାନଙ୍କ ବକ୍ତୃତାରେ ଉକ୍ତ ଅସଙ୍ଗତିତା ସ୍ପଷ୍ଟ ଅନୁଭୂତ ହୁଏ । ଯେମାନେ ଜଡ଼ମତି ଅଟନ୍ତି, ସେମାନଙ୍କ ରଚନା କିମ୍ବା ବକ୍ତୃତାରେ ଅସଙ୍ଗତିତା ଦେଖିବ ନାହିଁ । ସେମାନଙ୍କର ସବୁ ଦିନ ସମାନ ରୂପରେ ଚଳେ । ଅଳ୍ପ ବୟସରେ ଯେମନ୍ତ ଲେଖିବେ, ବୟସ ବଢ଼ିଲରୁ ସୁଦ୍ଧା ସେହିପରି ଲେଖିବେ । ସେମାନଙ୍କ ରଚନା କିମ୍ବା କଥାରେ ଅତ୍ୟୁକ୍ତି ଅବା ଅସଙ୍ଗତ ଦେଖିବ ନାହିଁ । ଜଡ଼ମତିମାନେ ଜଡ଼ ଭାବରେ ଚାଲନ୍ତି, ବାଟ ଛାଡ଼ି ଏଣେ ତେଣେ ଯାନ୍ତି ନାହିଁ ।

ରଚନାଗତ ଅସଙ୍ଗତିତା ବର୍ଣ୍ଣନାଦ୍ୱାରା ବୁଝାଇବାର ସହଜ ନୁହେଁ । ତଥା ତ ସେ ବିଷୟର ବାହ୍ୟ ଚିହ୍ନ କଥଞ୍ଚିତ୍ ରୂପରେ ଦେଖାଇ ଯେ ବିଷୟ ସେନ ଦୂର ଗୃହ କଥା କହୁରୁ । ସେହି ବାହ୍ୟ ଚିହ୍ନ ଯେ ସବୁ ସ୍ଥଳରେ ଅଭ୍ରାନ୍ତ, ଆମ୍ଭେ ଏପରି ବ୍ୟାପ୍ତି କରୁ ନାହୁଁ । ସ୍ଥଳ ବିଶେଷରେ ସେହି ଚିହ୍ନଦ୍ୱାରା ସମ୍ପୂର୍ଣ୍ଣ ବିପରୀତ ସିଦ୍ଧାନ୍ତ ମଧ୍ୟ ହୋଇ-ପାରେ । ରଚନାଗତ, ବିଶେଷତଃ ଭାଷାଗତ ଅସଙ୍ଗତିତା ଏହିପରି । ପାଠକ ! ପ୍ରୟୋଜନ ନ ଥିଲେହେଁ ଅକାରଣ ତୁମ୍ଭେ ଅନେକ ଥର ସମ୍ବୋଧିତ ହୋଇ କେବେ କେବେ ହସି ଅଛଟି କି ? "ପାଠକେ ! ଅମୁକେଇ କଥା ଏପରି ହେଲା, ପାଠକେ ! ଅମୁକେଇ କଥା ସେପରି ହେଲା" ଏପରି ବାକ୍ୟମାନ ପଢ଼ୁ ପଢ଼ୁ ଲେଖକଙ୍କର ପାଗଳ ପଣ ଅନୁଭବ କରୁଥିବ । ସାଧାରଣ କଥା ବାର୍ତ୍ତାରେ ବିଶୁଦ୍ଧ ବିମଳ ପ୍ରକୃତି ହେମାନ ବ୍ୟବହାରରୁ ଅସଙ୍ଗତିତାର ଅଳ୍ପ ଅଳ୍ପ ପ୍ରମାଣ ମିଳଇ । 'ବଡ଼ ସରସ କଥା କହିଲେ', 'ଏ ବଡ଼ ଗମ୍ଭୀର କଥା', 'କି ମଧୁର ସ୍ୱର' ସାମାନ୍ୟ ବିଷୟରେ ଏପରି ମନ୍ତବ୍ୟ ବ୍ୟକ୍ତ କରିବାର କଥିତ ଅସଙ୍ଗତିତାର ପରିଚାୟକ ଅଟେ । 'ଉଦାତ୍ତ' ବିଶେଷତଃ 'ବୈଶେଷିକ' ହେଉ ନିରର୍ଥକ ପ୍ରଚୁର ବ୍ୟବହାର ଅସଙ୍ଗତିସୂଚକ ବୋଧ ହୁଏ ।

'ମୋହର' ପରିବର୍ତ୍ତିରେ 'ମଦୀୟ" ବ୍ୟବହାର ପ୍ରାୟ ସେହିପରି । ଅଳ୍ପ କଥାରେ "ସାଗର" ବ୍ୟବହାର ସେହିପରି । "ହୃଦୟ ଅଗାଧ ଶୋକ-ସାଗରରେ ନିମଗ୍ନ ହେଲା", "ବିସ୍ମୟାର୍ଣ୍ଣବରେ ପରିପ୍ଲୁତ ହେଲି ?"

ଯେ ବିଷୟରେ ସହସ୍ର କୋମଳମନା ବ୍ୟକ୍ତିଙ୍କ ଆଖିରୁ ସୁଦ୍ଧା ଅଶ୍ରୁ ବାହାରିବ ନାହିଁ, ଏପରି ବିଷୟରେ ଉଲ୍ଲେଖ କରି "ଅମ୍ଭକେଇ କଥା ସ୍ମରଣ କଲେ ନୟନ ଅଶ୍ରୁଜଳରେ ପ୍ଲାବିତ ହୁଏ" ଏହିପରି ସ୍ଫୀତ ଅତ୍ୟୁକ୍ତି କରିବାର ଅପରିପକ୍ୱତାର ଚିହ୍ନ ଅଟେ । ଅବଶ୍ୟ ଏହି ଦୁଃଖପୂର୍ଣ୍ଣ ସଂସାରରେ ଦୁଃଖ ଓ ବିସ୍ମୟର ଅନେକ ହେତୁ ଅଛି । ମାତ୍ର ଏହା ତୋଳି ଅର୍ଦ୍ଧଶିକ୍ଷିତ ପ୍ରକାରର ଲେଖକମାନେ ଯେ ପଦେ ପଦେ ଅଶ୍ରୁ ବିସର୍ଜନ କରୁଥିବାର ଲେଖନ୍ତି, ତାହା ସେମାନଙ୍କର ଅପରିପକ୍ୱତାର ଯେତେ ପରିଚୟ ଦିଏ, କୋମଳମନସ୍କତାର ସେତେ ପରିଚୟ ଦିଏ ନାହିଁ । ଅବଶ୍ୟ ଏହି ସବୁ ଚିହ୍ନ ବାହ୍ୟଚିହ୍ନ, ମାତ୍ର ଆଭ୍ୟନ୍ତରିକ ଚିହ୍ନ ଦେଖାଇବାର ସହଜ ନୁହେଁ । ଅତ୍ୟୁକ୍ତି କରିବାର, ସାଧାରଣ ବିଶ୍ୱାସର ସମ୍ପୂର୍ଣ୍ଣ ବିପରୀତ କଥାମାନ କହି ଲୋକଙ୍କୁ ଚକିତ କରିବାର, ଉଦ୍ଭଟ ଭାବ ଓ ଉଦ୍ଧତ ଦୃଷ୍ଟି ଏଗୁଡ଼ିକ ଅନ୍ତରର ଅପରିପକ୍ୱତାସୂଚକ ଅଟନ୍ତି । କହି ଅସୁ ନାହିଁ, ମାତ୍ର ତୁମ୍ଭେ ମୋହର ଅଭିପ୍ରାୟ ବୁଝି ପାରୁଥିବ । ଅଳ୍ପବୟସ୍କ ଯୁବକମାନଙ୍କୁ ସାଂସାରିକ କଷ୍ଟ ଓ ସାଂସାରିକ ଚିନ୍ତାର ବିଷୟ କହି ବିରକ୍ତ ହେବାର ଅନେକ ଥର ଶୁଣିଥିବ । ତୁମ୍ଭେ ବେଶ୍ ଜାଣ ଯେ, ସେହି ଯୁବକମାନେ ସଂସାରକ୍ଷେତ୍ରରେ ପ୍ରବିଷ୍ଟ ହୋଇ ନାହାନ୍ତି, ସଂସାରର ପ୍ରକୃତ ସୁଖ ଦୁଃଖ ଅନୁଭବ କରି ନାହାନ୍ତି । ସେମାନେ ଯେଉଁ ବିରକ୍ତି ପ୍ରକାଶ କରୁଅଛନ୍ତି, ସେହି ବିରକ୍ତି ମାଗି ଆଣିବା ବିରକ୍ତି, ନିଜର ନୁହେଁ । ବିରକ୍ତି ପ୍ରକାଶ କରିବାର ସାଧାରଣ ପ୍ରଥା ଅନୁମୋଦିତ ଜାଣି, ବହୁଦର୍ଶିତା ପରିଚାୟକ ଜାଣି ସେମାନେ ବିରକ୍ତି ପ୍ରକାଶ କରନ୍ତି । ଯେ ନାବିକ ବାସ୍ତବ ନା ଚଳାଇଅଛି, ତାହା କଥା ଭିନ୍ନେ । ତୁମ୍ଭର ପୁତ୍ରଶୋକ ଉପସ୍ଥିତ ହୋଇଅଛି । ଜଣେ ଯୁବକ ପୁତ୍ରର ମୁଖ ଦେଖି ନାହାନ୍ତି, ପୁତ୍ରର ମୃତ୍ୟୁ

ଜାଣି ନାହାନ୍ତି, ସେ ପୁତ୍ରଶୋକର କଷ୍ଟ କାହିଁ ଜାଣିବେ ? ଅଥଚ ସେ ଅପି ତୁମ୍ଭ ଦୁଃଖରେ ଦୁଃଖିତ ହୋଇ ସହାନୁଭୂତି ପ୍ରକାଶ କରୁଅଛନ୍ତି ।

ତାଙ୍କର ମୁଖଭଙ୍ଗୀରୁ କେହି ଅବା ପାଇବେ ଯେ, ସେ ଅନେକ ଥର ପୁତ୍ରଶୋକ ସହ୍ୟ କରିଥିବେ । ବାସ୍ତବରେ ସେହି ସହାନୁଭୂତିର ଅଧିକାଂଶ କାବ୍ୟାଧ୍ୟାୟନରୁ ଜାତ ଅନୁଭବ ନୁହେଁ । ଅନୁଭବୀର ସହାନୁଭୂତି ଅନୁଭବୀର ସାନ୍ତ୍ୱନା ଅନ୍ୟ ପ୍ରକାର । ଯେ ଉପଦେଶ ପ୍ରକୃତ ଅନୁଭବରୁ ଜାତ, ସେହି ଉପଦେଶକୁ ପ୍ରକୃତ ସାରବାନ୍ ଉପଦେଶ ବୋଲି ଜାଣିବ । ଅଳ୍ପ ବୟସ୍କର ରଚନାଠାରୁ ଅଧିକ ବୟସ୍କ ଲେଖକର ରଚନା ଯେ ନିଶ୍ଚୟ ମନୋହର ହେବ, ଏହା ଅମ୍ଭେ କହୁ ନାହୁଁ । 'ନୈଷଧ' ଜଣେ ଅଳ୍ପ ବୟସ୍କ ଯୁବାପୁରୁଷ ଲେଖିଥିଲେ । 'ଗୃଣକ୍ୟ' ଜଣେ ବର୍ଷୀୟାନର ରଚନା । ନୈଷଧର ରଚନାଠାରୁ ଗୃଣକ୍ୟର ରଚନା ଅଧିକ ମନୋହର, ଏହା କିଏ କହିବ ? ଅନେକ ଅଳ୍ପବୟସ୍କ ଲେଖକଙ୍କ ରଚନା ଯେମନ୍ତ ମନ ଆକର୍ଷଣ କରେ, ଅଧିକ ବୟସ୍କର ରଚନା ତାହା କରି ପାରଇ ନାହିଁ । ଜଣେ ନବ ଯୁବକ ରଚିତ ପ୍ରବନ୍ଧ ତୁମ୍ଭେ ଆଦ୍ୟପ୍ରାନ୍ତ ମନୋଯୋଗ ସହିତ ପଢ଼ିବ, ଶେଷ ନ କରିବା ପର୍ଯ୍ୟନ୍ତ ଛାଡ଼ି ପାରିବ ନାହିଁ । ପ୍ରୌଢ଼ର ରଚିତ ପ୍ରବନ୍ଧର ଆଠ ଦଶ ପଂକ୍ତି ପଢ଼ିଲା ଉତ୍ତାରୁ ତୁମ୍ଭଙ୍କୁ ନିତାନ୍ତ ନୀରସ ବୋଧ ହେବ, ଆଉ ପଢ଼ିବାକୁ ପ୍ରବୃତ୍ତି ହେବ ନାହିଁ । ଅପରିପକ୍ୱ ରଚନା ପଢ଼ିବାକୁ ଅପ୍ରବୃତ୍ତି ହେବ ନାହିଁ, ମାତ୍ର ପଦେ ପଦେ ତୁମ୍ଭଙ୍କୁ ବିରକ୍ତ ଅଥବା ଦୁଃଖିତ ହେବାକୁ ହେବ ।

କେଉଁଠି ନିତାନ୍ତ ଧୃଷ୍ଟତା, କେଉଁଠି ଅସଙ୍ଗତ ଅତ୍ୟୁକ୍ତି, କେଉଁଠାରେ ସାଧାରଣ କଥାର ଉପରେ ଘୋରତର ଚଢ଼ାଉ, କେଉଁଠାରେ ଅବା ଅସ୍ୱାଭାବିକ ଉଗ୍ରତା, କେଉଁଠାରେ ଅବା ଅମୂଳକ ପରାକାଷ୍ଠା, ଏହି ପରି ପ୍ରଥମରୁ ଶେଷ ପର୍ଯ୍ୟନ୍ତ । ମାତ୍ର ସେ ଯାହା ହେଉ, ଲେଖକର ଉତ୍ସାହ ଓ ଆନ୍ତରିକତା ଯୋଗୁଁ ଉକ୍ତ ଦୋଷ ଥିଲେ ସୁଦ୍ଧା ରଚନା ଅରୁଚିକର ହୁଏ ନାହିଁ । ଏଥିପାଇଁ ଅପରିପକ୍ୱ ରଚନାର ପାଠ କ

ଅଧିକ । ଅନେକ ପ୍ରୌଢ଼ ସୁଲେଖକଙ୍କ ରଚନାର ଯେତେ ଆଦର ନ ହୁଏ, ଅପରିପକ୍ୱ ଲେଖକର ରଚନା ତାହାଠାରୁ ଦଶଗୁଣ ଆଦର ଲଭେ । ଅନେକ ସୁଲେଖକ ଆପଣାର ପୂର୍ବ ରଚନାର ବହୁ ପ୍ରଚାର ସଙ୍ଗେ ବର୍ତ୍ତମାନ ରଚନାର ଅଳ୍ପ ପ୍ରଚାର ତୁଳନା କରି ଦୁଃଖିତ ହୁଅନ୍ତି । ଫଳ କଥା ଏତିକି, ଅପରିପକ୍ୱ ରଚନାର ପାଠକ ଅଧିକ । ପରିପକ୍ୱ ରଚନାର ଆସ୍ୱାଦ ପାଠକ ସ୍ୱୟଂ ପରିପକ୍ୱ ନ ହେଲେ ଗ୍ରହଣ କରି ପାରନ୍ତି ନାହିଁ । ପରିପକ୍ୱତା ଲଭିବା ଅଧିକାଂଶ ଲୋକର ଭାଗ୍ୟରେ ଘଟେ ନାହିଁ । ଯେଉଁମାନେ ପଣ୍ଡିତ ଓ କାର୍ଯ୍ୟକ୍ଷମ ବୋଲି ସମାଜରେ ପ୍ରତିଷ୍ଠା ଲଭି ଅଛନ୍ତି, ସେମାନେ ସୁଦ୍ଧା ଅଳ୍ପବୟସ୍କ ବେଳେ ଅପରିପକ୍ୱ ଥିଲେ । ଇତର ଲୋକଙ୍କର ତ କଥା ନାହିଁ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଚିରଜୀବନ ଅପରିପକ୍ୱ ଥାନ୍ତି । ଅନ୍ତତଃ ସେମାନଙ୍କର ରୁଚି ଅପରିପକ୍ୱ ଥାଏ । ଏଥିପାଇଁ ଅପରିପକ୍ୱ ରଚନାର ପ୍ରଚାର ଅଧିକ । ଅଧିକାଂଶ ଲୋକଙ୍କୁ ଗୋଟିଏ ସାମାନ୍ୟ ଚୌପଦୀ ଯେପରି ଭଲ ଲାଗିବ, କାଳିଦାସଙ୍କ ରଚନା ସେପରି ଭଲ ଲାଗିବ ନାହିଁ । ସେପରି ଭଲ ଲାଗିବାର ତେଣିକି ଥାଉ, ମୂଳୁଁ ଭଲ ଲାଗିବ ନାହିଁ । ପଲ୍ଲୀବାସୀ କୃଷକ ଆଖିକୁ ଫରାସିସ୍ ଛିଟର ମିରଜାଇ ଯେପରି ସୁନ୍ଦର ଦିଶିବ, ସାଟିନର ମିରଜାଇ ସେପରି ଦିଶିବ ନାହିଁ ।

କେତେ ବୟଃକ୍ରମ ହେଲେ ପ୍ରକୃତ ପରିପକ୍ୱତା ଜନ୍ମେ ? ଏ ଗୋଟିଏ କଠିନ ପ୍ରଶ୍ନ । ଏହାର ମୀମାଂସା କରିବା ସହଜ ନୁହେଁ, ପ୍ରାୟ ଅସାଧ୍ୟ । କଳିଯୁଗରେ ମନୁଷ୍ୟର ଊର୍ଦ୍ଧ୍ୱ ଆୟୁ ପ୍ରାୟ ୧୨୦ ବର୍ଷ । ଲୋକଙ୍କୁ ଏ ପ୍ରଶ୍ନ ପଚାରିଲେ ୧୨୦ ପ୍ରକାର ଉତ୍ତର ମିଳିବ । କୋଡ଼ିଏ ବର୍ଷୀୟ ଯୁବା କହିବେ, କୋଡ଼ିଏ ବର୍ଷରେ ପରିପକ୍ୱତା ଜନ୍ମେ, ତିରିଶ ବର୍ଷୀୟ ପ୍ରୌଢ଼ କହିବେ ତିରିଶ ବର୍ଷରେ ପରିପକ୍ୱତା ଜନ୍ମେ, ୮୦ ବର୍ଷୀୟ ବୃଦ୍ଧ ମଧ୍ୟ ଆପଣା ବୟସର ସେହିପରି ଗୌରବ କରିବେ ।

କେଉଁ କାଳର ରଚନାକୁ ପ୍ରକୃତ ଶ୍ରେଷ୍ଠ ରଚନା ବୋଲିବା ? ଯେ ଗ୍ରନ୍ଥକୁ ମୁଁ ଭଲ କହିଲି, ମାଧବ ବିବେଚନାରେ ସେ ନିତାନ୍ତ ମନ୍ଦ । ଯେଉଁ ସ୍ତବକୁ ମୁଁ ଅନୁପମ ଉଦାରତା ବୋଲି ପ୍ରଶଂସା କଲି ଆଉ ଜଣେ ପ୍ରକୃତ ଯୋଗ୍ୟତାସମ୍ପନ୍ନ ବ୍ୟକ୍ତି, ସେହି ସ୍ତବକୁ ଫନ୍ଦି ମାନ୍ୟ ମଣିଲେ । ଯେଉଁ ରଚନା ମୋତେ ନିତାନ୍ତ ଅସାର ଓ ଆଡ଼ମ୍ବର-ପୂର୍ଣ୍ଣ ବୋଧ ହେଲା, ମୋ ସମକକ୍ଷ ଆଉ ଜଣେ ସେହି ରଚନାକୁ ଅମୃତମୟ ବୋଇଲେ । ତୁମ୍ଭେ ଗୋଟିଏ ଦାମୁଡ଼ିଆ କିଣିଲ, ତାହାର ଦାନ୍ତ ଦେଖି ସମସ୍ତେ କହିଲେ, ଏ ଦାମୁଡ଼ିଆଟି ଭଲ । ମୁଁ ଭଲ କହିଲି, ତୁମ୍ଭେ ଭଲ କହିଲ । ଘୃତ ବିଷୟରେ ସେହିପରି କିଛି ଥାନ୍ତା କି ? ଗ୍ରୀହ ମୂଳ ଓଜନ ନିମନ୍ତେ ଯେମନ୍ତ ଦୋକାନରେ ତରାଜୁ ଅଛି, ମନୁଷ୍ୟର ମାନସିକ ଉତ୍କର୍ଷ ଓଜନ କରିବା ନିମନ୍ତେ ଥାନା ଅଗରେ ଅଥବା କୌଣସି ପ୍ରସିଦ୍ଧ ଛକ ଜାଗାରେ ସେହିପରି ଗୋଟିଏ ତରାଜୁ ଥାନ୍ତା କି ? ଘନକୃଷ୍ଣ ଦାସେ ରସକଲ୍ଲୋଳ ଶପୁଡ଼ିକରୁ ଅନେକ ରସ କାଢ଼ିଥିଲେ । ଅଜିକାଲି ପୋଥିମାନଙ୍କରୁ ଯେବେ ସେହିପରି ରସ ବାହାରୁ ଥାନ୍ତା ତେବେ ଏତେ ନିତାନ୍ତର ହୁଅନ୍ତା ନାହିଁ । ଅନେକ ବିଦ୍ୟାଶୂନ୍ୟ ପଣ୍ଡିତମ୍ମନ୍ୟ ମହାତ୍ମାଙ୍କର ଦର୍ପ ଚୂର୍ଣ୍ଣ ହୁଅନ୍ତା । ଯେ ବାସ୍ତବ ବାସ୍ତବ ଯେଉଁ ପରିମାଣରେ ଯୋଗ୍ୟ, ସେହି ପରିମାଣରେ ତାଙ୍କର ପ୍ରତିଷ୍ଠା ହୁଅନ୍ତା । ପ୍ରକୃତ ଯୋଗ୍ୟତା ବିଗ୍ଭର କରିବାକୁ ସକ୍ଷମ ଲୋକ ପୃଥିବୀରେ ଅତି କମ୍ । ଏଣୁ କରି ଉଲ୍ଲିଖିତ ପ୍ରକାର ତରାଜୁରେ ଯେ କେତେ ଉପକାର ହୁଅନ୍ତା, କେତେ ପ୍ରବଞ୍ଚନା ନିବାରିତ ହୁଅନ୍ତା, ତାହା କଳି ହେବ ନାହିଁ ।

କାହାର ରଚନାକୁ ଶ୍ରେଷ୍ଠ ରଚନା ବୋଲିବ ? ତୁମ୍ଭର ବର୍ତ୍ତମାନ ରୁଚିକି ଯାହା ଭଲ ଲାଗୁଅଛି, ସେହି କଣ ଶ୍ରେଷ୍ଠ ରଚନା ? ଏହା ଅବା କାହିଁକି କହିବ ? ତୁମ୍ଭର ବର୍ତ୍ତମାନ ରୁଚି କଣ, ସବୁଦିନ ଏହିପରି ଥିବ ? ଦଶବର୍ଷ ଆଗେ ତୁମ୍ଭର ରୁଚି ଯେପରି ଥିଲା, ବର୍ତ୍ତମାନ ତ ସେହିପରି

ନାହିଁ, ଏଣିକି ଦଶ ବର୍ଷ ଉତ୍ତାରୁ ସେ ରୁଚି ବଦଳିବ ନାହିଁ ଏହାର ଅବା ପ୍ରମାଣ କଣ ? ଦଶବର୍ଷର ପୂର୍ବେ ତୁମ୍ଭେ ଯାହା ଲେଖିଥିଲ, ବର୍ତ୍ତମାନ ଅପରିପକ୍ୱ ବୋଧ ହେଉଅଛି । ସେମାନଙ୍କର ରଚନା ସେହି ଭଳି । ଯେଉଁ ପୁସ୍ତକ ତୁମ୍ଭେ ପିଲାକାଳରେ ପଢ଼ି ମୋହିତ ହେଉଥିଲ, ସେହି ପୁସ୍ତକ ସମ୍ପ୍ରତି ଦେଖି ଆପଣା ପୂର୍ବ ରୁଚି ସ୍ମରଣ କରି ଅଶ୍ଚର୍ଯ୍ୟାନ୍ୱିତ ହେଉଥିବ । ବାସ୍ତବରେ ରୁଚି ବର୍ଷକୁବର୍ଷ ବଦଳୁଅଛି । ରୁଚି ପରିବର୍ତ୍ତନ ସଙ୍ଗେ ଲେଖକଙ୍କର ମତ ଦିନକୁଦିନ କ୍ଷଣକୁକ୍ଷଣ ପରିବର୍ତ୍ତିତ ହେଉଅଛି । ତାକୁ ତୁମ୍ଭେ କୌଣସି ବିଶେଷ ଅବସ୍ଥାରେ ପତିତ ହୋଇ ଗୋଟିଏ କାର୍ଯ୍ୟକଲ । କାର୍ଯ୍ୟ କରିବାବେଳେ ଅବସ୍ଥାବଶରୁ ତୁମ୍ଭେ ଜାଣିଥିଲ ଯେ, ତୁମ୍ଭେ ଯାହା କରୁଥିଲ ଭଲ କରୁଥିଲ । ମାତ୍ର ଆଜି ପୁଣି ସ୍ୱାଭାବିକ ଅବସ୍ଥାକୁ ଆସି ପ୍ରକୃତିସ୍ଥ ହୋଇ ସେହି କାର୍ଯ୍ୟକୁ ନିତାନ୍ତ ଗର୍ହିତ ମଣୁଅଛ । ଆମ୍ଭର ଜଣେ ବନ୍ଧୁ ତାହାଙ୍କର ବିବାହ ପରିଲା ଉତ୍ତାରୁ ନବୀନ ପତ୍ନୀସମାଗମ ସୁଖରେ ସେହି ଉନ୍ମତ୍ତ ହୋଇ ଉନ୍ମତ୍ତ ଅବସ୍ଥାରେ ଆପଣା ବନ୍ଧୁମାନଙ୍କୁ କେତେଖଣ୍ଡେ ପତ୍ର ଲେଖିଥିଲେ । ସେହି ପତ୍ରରେ ଲେଖା ହୋଇଥିବା କଥାଗୁଡ଼ିକ ବର୍ତ୍ତମାନ ସ୍ମରଣ କରି ସେ ନିତାନ୍ତ ଲଜ୍ଜିତ ହୁଅନ୍ତି । ସେ ଯେତେବେଳେ ଲେଖିଥିଲେ, ସେତେବେଳେ ଆପଣାକୁ ପ୍ରକୃତିସ୍ଥ ଜାଣିଥିଲେ, ଲିଖିତ ବିଷୟଗୁଡ଼ିକ ସୁସଙ୍ଗତ ମଣିଥିଲେ ।

( ୧୦ )

# ଅଶୋକ

ମଧୁସୂଦନ ରାଓ

ପୃଥିବୀର ଇତିହାସରେ ସଙ୍କୀର୍ତ୍ତିତ ଯେଉଁ ନରପତିମାନେ ସ୍ୱୀୟ ଦେବୋପମ ସୁନିର୍ମଳ ଚରିତ୍ର ଏବଂ ଲୋକୋତ୍ତର ଲୋକହିତକର ଜୀବନର ଶୁଭ୍ରାଲୋକଦ୍ୱାରା ନିଖିଳ ସଂସାରର ମୁଖ ଉଜ୍ଜ୍ୱଳ କରି ଯାଇଅଛନ୍ତି, ସେମାନଙ୍କ ମଧ୍ୟରେ ପ୍ରାଚୀନ ଭାରତର ବୌଦ୍ଧ ନୃପତି ପୁଣ୍ୟଶ୍ଳୋକ ମହାରାଜ ଅଶୋକ ଜଣେ ଅଗ୍ରଗଣ୍ୟ ରାଜା ଥିଲେ । ହିଂସା-ପ୍ରଣୋଦିତ ତରବାରିର ଜୟ—ଜୟ ନୁହେଁ, ଧର୍ମର ଅର୍ଥାତ୍ ଅହିଂସା, ଦୟା ଓ ସଜ୍ଜନତାର ଜୟ ଏକା—ଜୟ ଅଟେ । ଏହି ମହୋଦାର ସ୍ୱର୍ଗୀୟ ନୀତି ତାହାଙ୍କର ଭାରତସାମ୍ରାଜ୍ୟ ଶାସନର ମୂଳମନ୍ତ୍ର ଥିଲା । ଭାରତବର୍ଷରେ ତାହାଙ୍କର ପୂର୍ବବର୍ତ୍ତୀ ବା ପରବର୍ତ୍ତୀ କୌଣସି ରାଜା ତାଙ୍କ ଅପେକ୍ଷା ବିପୁଳତର ପ୍ରଭାବ ବିସ୍ତାର ବା ମହତ୍ତର କୀର୍ତ୍ତି ସ୍ଥାପନ କରି ପାରି ନାହାନ୍ତି । ଭୁବନବିଖ୍ୟାତ ବିକ୍ରମାଦିତ୍ୟ ଏବଂ ଆକବରଙ୍କର ଯଶୋମହିମା ସୁମହାନ୍ ହେଲେହେଁ ଅଶୋକଙ୍କର ଯଶଃପ୍ରଭା ଅପେକ୍ଷା ଉଜ୍ଜ୍ୱଳତର ନୁହେଁ । ନିଖିଳ ଅବନୀମଣ୍ଡଳ ମଧ୍ୟରେ ଉଦାର ହୃଦୟବତ୍ତା ଏବଂ ବିଶୁଦ୍ଧ ଜ୍ଞାନାଲୋକିତ ନୀତିମତ୍ତା ବିଷୟରେ ତାଙ୍କ ଅପେକ୍ଷା ଶ୍ରେଷ୍ଠତର ନୃପତି ଜନ୍ମଗ୍ରହଣ କରିନାହାନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ତାହାଙ୍କର ଶାସନପ୍ରଭାବ ସମଗ୍ର ଭାରତ ଅତିକ୍ରମ କରି ଉତ୍ତର ପଶ୍ଚିମରେ ବାହ୍ଳୀକ, ଗାନ୍ଧାର, ପରସ୍ୟ, ମିଶର, ଗ୍ରୀସ ପ୍ରଭୃତି ଦେଶ ପର୍ଯ୍ୟନ୍ତ, ଦକ୍ଷିଣରେ ସିଂହଳ ପର୍ଯ୍ୟନ୍ତ ବ୍ୟାପ୍ତ ହୋଇଥିଲା ।

ଗ୍ରୀସୀୟ ଦିଗ୍‌ବିଜୟୀ ମହାବୀର ଅଲେକ୍‌ଜାଣ୍ଡରଙ୍କର ପ୍ରସିଦ୍ଧ ସେନାନୀ ସେଲୁକସ୍ ଯେଉଁ ମୌର୍ଯ୍ୟକୁଳ ସ୍ଥାପୟିତା ମଗଧେଶ୍ୱର ଚନ୍ଦ୍ରଗୁପ୍ତଙ୍କ ସହିତ ସଂଗ୍ରାମ କରି ପରାଭବ ସ୍ୱୀକାରପୂର୍ବକ ତାଙ୍କ ସଙ୍ଗରେ ସନ୍ଧି ସୂତ୍ରରେ ଆବଦ୍ଧ ହୋଇ ତାହାଙ୍କୁ ସ୍ୱୀୟ କନ୍ୟା ସମ୍ପ୍ରଦାନ କରିଥିଲେ, ସେହି ମହାରାଜ ଚନ୍ଦ୍ରଗୁପ୍ତ ଅଶୋକଙ୍କର ପିତାମହ ଥିଲେ ଏବଂ ପିତୃଗୌରବ ବର୍ଦ୍ଧନ ମହାରାଜ ବିନ୍ଦୁସାର ଅଶୋକଙ୍କର ଜନକ ଥିଲେ ।

"ଅଶୋକ—ଅବଦାନ" ନାମକ ବୌଦ୍ଧଗ୍ରନ୍ଥର ବିବରଣ ଅନୁସାରେ ପାଟଳିପୁତ୍ରର ଜଣେ ବ୍ରାହ୍ମଣ କୌଣସି ଜ୍ୟୋତିଷାଗୃର୍ଯ୍ୟଙ୍କ ନିକଟରୁ ସୁଭଦ୍ରାଙ୍ଗୀନାମ୍ନୀ ନିଜ ଦୁହିତାର ଭାବୀ-ରାଜମହିଷୀତ୍ୱ ସମ୍ବନ୍ଧରେ ଭବିଷ୍ୟତ୍ ବାଣୀ ଶ୍ରବଣ କରି, ସେହି ବାଣୀକୁ ଫଳବତୀ କରିବା ଆଶାରେ ଉକ୍ତ କନ୍ୟାକୁ ମହାରାଜ ବିନ୍ଦୁସାରଙ୍କୁ ପ୍ରଦାନ କରିଥିଲେ । ବିନ୍ଦୁସାର କନ୍ୟାର ଅସାମାନ୍ୟ ରୂପଲାବଣ୍ୟ ଏବଂ ଧୀମତ୍ତ୍ୱ ଦର୍ଶନ କରି ଏକାନ୍ତ ପ୍ରୀତ ହୋଇ ତାହାଙ୍କର ପାଣିଗ୍ରହଣ କଲେ । ଅଶୋକ ଏହି ଦମ୍ପତିର ସନ୍ତାନ । କଥିତ ଅଛି ଯେ, ଅଶୋକ କଦାକାର ଥିଲେ ଏବଂ କୈଶୋର ଓ ଯୌବନରେ ତାହାଙ୍କର ପ୍ରକୃତି ନିତାନ୍ତ ଉଗ୍ର ଓ କୋପନ ଥିବାରୁ ସେ ଚଣ୍ଡାଶୋକ ନାମରେ ଅଭିହିତ ହୋଇଥିଲେ ଏବଂ ସେହି ହେତୁରୁ ନିଜ ପିତାଙ୍କର ମଧ୍ୟ ବିରାଗଭାଜନ ହୋଇଥିଲେ । ଅଶୋକଙ୍କର କନିଷ୍ଠ ଏବଂ ଏକମାତ୍ର ସହୋଦରଙ୍କର ନାମ ବୀତ-ଶୋକ ଏବଂ ତାହାଙ୍କର ବୈମାତ୍ରେୟ ଅଗ୍ରଜ ଭ୍ରାତାଙ୍କର ନାମ ସୁସୀମ ଥିଲା ।

ସୁସୀମଙ୍କ ସଙ୍ଗରେ ଅଶୋକଙ୍କର ବିରୋଧଭାବ ଥିବାରୁ ବିନ୍ଦୁସାର ଉଭୟଙ୍କୁ ପୃଥକ୍ ରଖିବା ଆଶୟରେ ଅଶୋକଙ୍କୁ ରାଜ୍ୟର ବାୟବ୍ୟ

ପ୍ରାନ୍ତସ୍ଥିତ ତକ୍ଷଶିଳା ନଗରୀରେ ଘଟିଥିବା ବିଦ୍ରୋହ ଦମନ ନିମିତ୍ତ ସେଠାକୁ ପ୍ରେରଣ କଲେ । ଅଶୋକ ଅଳ୍ପକାଳ ମଧ୍ୟରେ ସୁକୌଶଳରେ ବିଦ୍ରୋହ ଦମନ କରି ପିତାଙ୍କର ଏବଂ ପ୍ରଧାନ ମନ୍ତ୍ରୀଙ୍କର ଅନୁରାଗ ଆକର୍ଷଣ କଲେ । ଇତି ମଧ୍ୟରେ ସୁସୀମ ରାଜଧାନୀ ପାଟଳିପୁତ୍ର ନଗରରେ ନାନାପ୍ରକାର ଉପଦ୍ରବ କରନ୍ତେ, ବିନ୍ଦୁସାର ଅମାତ୍ୟଙ୍କ ପରାମର୍ଶ ଅନୁସାରେ ତାହାଙ୍କୁ ତକ୍ଷଶିଳାର ଶାସନ ନିମିତ୍ତ ସେଠାକୁ ପ୍ରେରଣ କଲେ ଏବଂ ଅଶୋକଙ୍କୁ ରାଜଧାନୀକୁ ଆଣାଇଲେ । କିଛିକାଳ ପରେ ସୁସୀମଙ୍କ ଅନୁପସ୍ଥିତ ସମୟରେ ବିନ୍ଦୁସାରଙ୍କର ଚରମକାଳ ଉପସ୍ଥିତ ହେଲା । ସେ ସୁସୀମଙ୍କ ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ଅଶୋକଙ୍କ ହସ୍ତରେ ରାଜ୍ୟଭାର ଅର୍ପଣ କରି ପରଲୋକ ଗମନ କଲେ । ସୁସୀମ ଅବିଳମ୍ବେ ତକ୍ଷଶିଳାରୁ ସସୈନ୍ୟେ ପ୍ରତ୍ୟାବର୍ତ୍ତନ କରି ରାଜ୍ୟାଧିକାର ନିମିତ୍ତ ରାଜଧାନୀ ଆକ୍ରମଣ କଲେ, କିନ୍ତୁ ଅଶୋକ ତାହାଙ୍କର ପ୍ରବୀଣ ମନ୍ତ୍ରୀ ରାଧାଗୁପ୍ତଙ୍କ ସାହାଯ୍ୟରେ ସୁସୀମଙ୍କୁ ପରାସ୍ତ ଏବଂ ନିହତ କଲେ । ଉକ୍ତ ଅବଦାନ ଗ୍ରନ୍ଥରେ ଲିଖିତ ଅଛି ଯେ, ଅଶୋକ ଆପଣାର ରାଜତ୍ୱକୁ ଅସପତ୍ନ ଏବଂ ନିଷ୍କଣ୍ଟକ କରିବା ଉଦ୍ଦେଶ୍ୟରେ ରାଜ୍ୟଲିପ୍ସୁ ସମସ୍ତ ରାଜବଂଶୀୟମାନଙ୍କୁ ବଧ କରିଥିଲେ । ତାହାଙ୍କର ତଦାନୀନ୍ତନ ନୃଶଂସ ପ୍ରକୃତିର ପ୍ରମାଣ ସ୍ୱରୂପ ଆହୁରି ଗୋଟିଏ କ୍ରୂର ଏବଂ ଭୀଷଣ ହତ୍ୟାକାର୍ଯ୍ୟ ବର୍ଣ୍ଣିତ ଅଛି । ଏକଦା କତିପୟ ଅଙ୍ଗନା ରାଜୋଦ୍ୟାନସ୍ଥ ଗୋଟିଏ ଅଶୋକବୃକ୍ଷର ଶାଖାଗୁଡ଼ିକ ଭାଙ୍ଗି ପକାଇଥିବା ଶୁଣି ସେ ସେହି କାମିନୀମାନଙ୍କୁ ପ୍ରଜ୍ୱଳିତ ଅଗ୍ନିରେ ଦଗ୍ଧ କରିବା ନିମିତ୍ତ ଚଣ୍ଡଗିରିକ ନାମକ ଜଣେ ଆତତାୟୀକୁ ଆଦେଶ ଦେଇଥିଲେ ଏବଂ ସେହି ନିଷ୍ଠୁର ଆଦେଶ କାର୍ଯ୍ୟରେ ପରିଣତ ହୋଇଥିଲା । ଏଥି ଉତ୍ତାରେ ସମୁଦ୍ରନାମା ଜଣେ ବୌଦ୍ଧଯତିର ଅସାମାନ୍ୟ ପ୍ରଭାବଦ୍ୱାରା ସେ ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ ହୋଇ ସେହି ଧର୍ମ ଗ୍ରହଣ କରି ନିଜ ଚରିତ୍ର ସଂଶୋଧନ ବ୍ରତରେ ନିରନ୍ତର ରତ ହେଲେ । ଅଶୋକ ବାସ୍ତବରେ ଏପରି ନୃଶଂସଚରିତ୍ର ଥିଲେ କିମ୍ବା ବୌଦ୍ଧଗ୍ରନ୍ଥକାର ବୌଦ୍ଧଧର୍ମର ମାହାତ୍ମ୍ୟ ବୃଦ୍ଧି ନିମିତ୍ତ ଅଶୋକଙ୍କର ପୂର୍ବ ଚରିତକୁ ଏପରି କୁତ୍ସିତ ବର୍ଣ୍ଣନାରେ

ରଚିତ କରିଅଛନ୍ତି ତାହା ନିର୍ଦ୍ଧାରଣ କରିବାର ଉପାୟ ନାହିଁ । ସମ୍ଭବତଃ ବୌଦ୍ଧ ଟୀକାକାରଙ୍କର ରଚନା ଅତିରଞ୍ଜିତ ଅଟେ । ଅନ୍ତତଃ ତାହାଙ୍କର ବୌଦ୍ଧଧର୍ମ ଗ୍ରହଣ ସମ୍ବନ୍ଧରେ ଅଶୋକ ନିଜେ ସ୍ୱପ୍ରବର୍ତ୍ତିତ ଶୈଳଖୋଦିତ ଅନୁଶାସନମାନଙ୍କରେ ଯେଉଁ ବିବରଣ ଦେଇଅଛନ୍ତି, ତାହା ଉଲ୍ଲିଖିତ ବିବରଣର ବିରୋଧୀ ଅଟେ । ପ୍ରୋକ୍ତ ଶୈଳଲିପିଦ୍ୱାରା ସେ ପ୍ରଚାର କରି ଯାଇଅଛନ୍ତି ଯେ ତାଙ୍କ ରାଜତ୍ୱର ପ୍ରଥମ ଭାଗରେ କଳିଙ୍ଗରାଜ୍ୟର ବିଜୟ ନିମିତ୍ତ ସେ ଯେଉଁ ଘୋର ଯୁଦ୍ଧରେ ପ୍ରବୃତ୍ତ ହୋଇଥିଲେ, ସେଥିରେ ଅସଂଖ୍ୟ ମନୁଷ୍ୟମାନଙ୍କର ହତ୍ୟାରୂପ ହିଂସାପ୍ରଣୋଦିତ କ୍ରୂର ବ୍ୟାପାର ଏବଂ ଲକ୍ଷ ଲକ୍ଷ ଲୋକଙ୍କର ଅଶେଷବିଧ ଯନ୍ତ୍ରଣା ଦର୍ଶନ କରି ତାଙ୍କର ହୃଦୟ ମଧ୍ୟରେ ଗଭୀର ଅନୁତାପ ଓ ନିର୍ବେଦ ଅନୁଭବ କରିଥିଲେ ଏବଂ ସେହି ସମୟରୁ ଅହିଂସା ପରମ ଧର୍ମ, ବୌଦ୍ଧଧର୍ମର ଏହି ସ୍ୱର୍ଗୀୟ ନୀତି ପ୍ରତି ଆକୃଷ୍ଟ ହୋଇ କାଳକ୍ରମେ ସେହି ଧର୍ମକୁ ପ୍ରକାଶ୍ୟରୂପେ ଗ୍ରହଣ କରିଥିଲେ ।

ଅଶୋକ ବୌଦ୍ଧଧର୍ମ ଗ୍ରହଣପୂର୍ବକ ଉପଗୁପ୍ତନାମା ଜଣେ ପ୍ରବୀଣ ବୌଦ୍ଧାଚାର୍ଯ୍ୟଙ୍କଠାରୁ ନାନାବିଧ ସଦୁପଦେଶ ଲାଭ କରି ଏକାନ୍ତ ଧର୍ମନିଷ୍ଠ ହେଲେ ଏବଂ ବୌଦ୍ଧଧର୍ମର ଗୌରବବର୍ଦ୍ଧନାର୍ଥ ଲକ୍ଷ ଲକ୍ଷ ସ୍ତୂପ-ନିର୍ମାଣ ଏବଂ ମଠାଦି ସ୍ଥାପନ କରାଇ ସ୍ୱୀୟ ଅସାଧାରଣ ଧର୍ମାନୁରାଗ ନିମିତ୍ତ ପୂର୍ବତନ ଚଣ୍ଡାଶୋକ ନାମର ପରିବର୍ତ୍ତେ ଧର୍ମାଶୋକ ନାମରେ ପ୍ରସିଦ୍ଧ ହେଲେ । ତାଙ୍କ ପ୍ରବର୍ତ୍ତିତ ଶୈଳଲିପିମାନଙ୍କରେ ସେ ଆପଣାକୁ ପିୟଦର୍ଶୀ ବା ପ୍ରିୟଦର୍ଶୀ ନାମରେ ଅଭିହିତ କରି ଯାଇଅଛନ୍ତି । କଥିତ ଅଛି ଯେ—ଅଶୋକଙ୍କର ଆଜ୍ଞାରେ ୮୦୦୦୦ ସ୍ତୂପ ନିର୍ମିତ ଏବଂ ୮୪୦୦୦ ଅନୁଶାସନ ବା ଧର୍ମାଦେଶ ଖୋଦିତ ହୋଇଥିଲା ।

ଅଶୋକଙ୍କର ପୁତ୍ରମାନଙ୍କ ମଧ୍ୟରେ କୁଣାଳ ଓ ମହେନ୍ଦ୍ର ଏବଂ କନ୍ୟାମାନଙ୍କ ମଧ୍ୟରେ ସଂଘମିତ୍ରା ବୌଦ୍ଧଗ୍ରନ୍ଥମାନଙ୍କରେ ଧର୍ମାନୁରାଗ ନିମିତ୍ତ ବିଶେଷରୂପେ ପ୍ରଶଂସିତ । ମହେନ୍ଦ୍ର ଏବଂ ସଂଘମିତ୍ରା ସର୍ବୈଶ୍ୱର୍ଯ୍ୟ

ଭୋଗକାମନା ପରିତ୍ୟାଗପୂର୍ବକ ସିଂହଳ ଦ୍ୱୀପକୁ ଗମନ କରି ତତ୍ରତ୍ୟ ରାଜା, ରାଣୀ ଏବଂ ଅନେକ ପ୍ରଜାମାନଙ୍କୁ ବୌଦ୍ଧଧର୍ମରେ ଦୀକ୍ଷିତ କରିଥିଲେ । ବହୁଗୁଣାଧାର ଏକାନ୍ତ ପିତୃଭକ୍ତ କୁନାଲ ପିତାଙ୍କର ଅତ୍ୟନ୍ତ ପ୍ରିୟ ଥିଲେ । ଅଶୋକ ଏକଦା ତକ୍ଷଶିଳାରେ ସଂଘଟିତ ବିଦ୍ରୋହ ଦମନାର୍ଥ କୁନାଲଙ୍କୁ ସେଠାକୁ ପ୍ରେରଣ କରିଥିଲେ । କୁନାଲ ଦକ୍ଷତା ସହିତ ବିଦ୍ରୋହ ଦମନ କରି ବିଦ୍ରୋହୀ ଦଳପତି କୁଞ୍ଜରକର୍ଣ୍ଣକୁ ସ୍ୱାୟତ୍ତ କଲେ । ଇତିମଧ୍ୟରେ ଅଶୋକ ସ୍ୱପ୍ନରେ କୁନାଲଙ୍କ ମୁଖ ବିଶୁଷ୍କ ଓ ବିବର୍ଣ୍ଣ ହୋଇ ଯାଇଥିବାର ଦେଖି ଏବଂ ଜ୍ୟୋତିଷିମାନଙ୍କଠାରୁ ସ୍ୱପ୍ନଦ୍ୱାରା କୁନାଲଙ୍କର ପ୍ରାଣହାନି ଅଥବା ଦର୍ଶନଶକ୍ତିର ବିନାଶ ସୂଚିତ ହେଉଅଛି ବୋଲି ଶୁଣି, ନିତାନ୍ତ ଦୁର୍ମନାୟମାନ ହୋଇ କିଛିକାଳ ରାଜକାର୍ଯ୍ୟରୁ ବିରତ ହେଲେ । ଏହି ଅବସରରେ କୁନାଲଙ୍କର ଶରୀରାନିଷ୍ଟ-କାରିଣୀ ତାହାଙ୍କର ବିମାତା ତିଷ୍ୟରକ୍ଷିତା କୁଟିଳ କୌଶଳଦ୍ୱାରା ମହାରାଜାଙ୍କର ମୋହର ହସ୍ତଗତ କରି ଉକ୍ତ ମୋହରଦ୍ୱାରା ଅଙ୍କିତ ଖଣ୍ଡିଏ ଆଦେଶପତ୍ର ଲେଖାଇ ପୂର୍ବୋକ୍ତ କୁଞ୍ଜରକର୍ଣ୍ଣ ନିକଟକୁ ଏହି ଆଜ୍ଞା ପ୍ରେରଣ କଲେ ଯେ ସେ ପତ୍ର ପ୍ରାପ୍ତି ମାତ୍ରକେ କୁନାଲଙ୍କର ନେତ୍ର-ଦ୍ୱୟ ଉତ୍ପାଟନ କରାଇବ । ଆଦେଶପତ୍ର ଯଥାସ୍ଥାନରେ ଉପସ୍ଥିତ ହେଲା ଏବଂ କୁନାଲ ଏପରି ଆଜ୍ଞା ଆସିଥିବାର ସମ୍ବାଦ ଅବଗତ ହେଲା କ୍ଷଣି କିଂକର୍ତ୍ତବ୍ୟବିମୂଢ଼ ହୋଇ କୁଞ୍ଜରକର୍ଣ୍ଣ ନିକଟକୁ ଯାଇ ଆଦେଶଲିପି ପାଠ କଲେ ଏବଂ ସେଥିରେ ଅଶୋକଙ୍କ ନାମର ମୋହର ଥିବାର ଦେଖି କହିଲେ, "କୁଞ୍ଜରକର୍ଣ୍ଣ ! ଏହିକ୍ଷଣି ରାଜାଦେଶ ପାଳନ କର । ନହୁବା ଅସିଦ୍ୱାରା ତୁମ୍ଭର ଶିରଶ୍ଛେଦନ କରିବି ।" କୁଞ୍ଜରକର୍ଣ୍ଣ ଅଗତ୍ୟା ଜଣେ ଚଣ୍ଡାଳଦ୍ୱାରା ସେହି ନିଷ୍ଠୁର ଆଦେଶକୁ କାର୍ଯ୍ୟରେ ପରିଣତ କରାଇଲେ । ଏଥି ଉତ୍ତାରେ ଅନ୍ଧୀଭୂତ କୁନାଲ ଯତିବେଶରେ ଅତି କ୍ଲେଶରେ ବହୁକାଳ ଭ୍ରମଣ କରି ପାଟଳିପୁତ୍ର ନଗରରେ ଉପସ୍ଥିତ ହୋଇ ଅର୍ଦ୍ଧରାତ୍ର ସମୟରେ ରାଜପ୍ରାସାଦର ଅନତିଦୂରରେ ବଂଶୀ ବାଦନ କରିବାକୁ ଲାଗିଲେ । ଅଶୋକ ସେହି ଅମୃତମୟ ଧ୍ୱନି ଶୁଣି,

ଦିବ୍ୟାନନ୍ଦ ରସରେ ଅଭିଷିକ୍ତ ହୋଇ ପ୍ରାତଃକାଳରେ ବାଦକଙ୍କୁ ଅଣାଇ ଦେଖିଲେ ଯେ ତାହାଙ୍କର ପ୍ରାଣାଧିକ ତନୟ କୁନାଳ । କୁନାଳକୁ ଅନ୍ଧ ଭିକ୍ଷୁବେଶଧାରୀ ଦେଖି ସେ ଏକାନ୍ତ କ୍ଷୁବ୍ଧ ଓ ବିସ୍ମିତ ହୋଇ କାରଣ ପଚାରିଲେ, କିନ୍ତୁ ସେ କୌଣସି ଉତ୍ତର କଲେ ନାହିଁ । ପରେ ଅନୁସନ୍ଧାନ-ଦ୍ୱାରା ତଥ୍ୟ ବୁଝିପାରି କ୍ରୂରା ମହିଷୀ ତିଷ୍ୟରକ୍ଷିତାର ଶିରଶ୍ଛେଦନ କରିବାକୁ ଉଦ୍ୟତ ହେଲେ; କିନ୍ତୁ କୁନାଳ ଦୟାବତାର ବୁଦ୍ଧଙ୍କର ପବିତ୍ର ନାମ ଉଚ୍ଚାରଣ କରି ପିତାଙ୍କର କୋପ ଶାନ୍ତ କଲେ ।

ଅଶୋକଙ୍କର ଏକମାତ୍ର ସହୋଦର ବୀତଶୋକ ଏକ ସମୟରେ କଥିତ ବୌଦ୍ଧଧର୍ମଦ୍ୱେଷୀ ବ୍ରାହ୍ମଣମାନଙ୍କର ପ୍ରରୋଚନାରେ ଭ୍ରାତୃ-ବିରୋଧୀ ହୋଇଥିଲେ, କିନ୍ତୁ ପରେ ଅଗ୍ରଜଙ୍କ ଧର୍ମଗୁରୁ ଉପଗୁପ୍ତଙ୍କ ନିକଟରେ ଶରଣାପନ୍ନ ହୋଇ ବୌଦ୍ଧଧର୍ମର ଦୀକ୍ଷା ଗ୍ରହଣପୂର୍ବକ ସନ୍ନ୍ୟାସ ଅବଲମ୍ବନ କଲେ ।

କଥିତ ଇଉରୋପୀୟ ପ୍ରାଚ୍ୟପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତମାନେ ଅସାମାନ୍ୟ ଅଧ୍ୟବସାୟ ସହକାରେ ଅଶୋକଙ୍କର ଅନୁଶାସନଗୁଡ଼ିକ ପାଠ କରି ପ୍ରକାଶ କରିଅଛନ୍ତି । ସେହି ଲିପିଗୁଡ଼ିକ ମଧ୍ୟରେ କେତେକ ଖଣ୍ଡଶିଳ କଳେବରରେ, କେତେକ ଗୁମ୍ଫାମାନଙ୍କରେ ଏବଂ କେତେକ ସମୁଚ୍ଚ ସ୍ତମ୍ଭମାନଙ୍କରେ ଖୋଦିତ ହୋଇଥିବାର ଦେଖାଯାଏ । ଶୈଳାଙ୍କିତ ଘୋଷଣାଗୁଡ଼ିକ ତାହାଙ୍କର ରାଜତ୍ୱର ତ୍ରୟୋଦଶ ଏବଂ ଚତୁର୍ଦ୍ଦଶ ବର୍ଷ ମଧ୍ୟରେ ଏବଂ ସ୍ତମ୍ଭଲିଖିତ ଘୋଷଣାଗୁଡ଼ିକ ସପ୍ତବିଂଶ ବର୍ଷ ମଧ୍ୟରେ ଖୋଦିତ ହୋଇଥିଲା । ଅଶୋକ ସପ୍ତତ୍ରିଂଶତ୍ ବର୍ଷ, ଅର୍ଥାତ୍ ଖ୍ରୀଷ୍ଟପୂର୍ବ ୨୬୯ ଅବ୍ଦରୁ ୨୨୨ ଅବ୍ଦ ପର୍ଯ୍ୟନ୍ତ ସାମ୍ରାଜ୍ୟଲକ୍ଷ୍ମୀ ସମ୍ଭୋଗ କରି ଅବଶେଷରେ ଧର୍ମ ପ୍ରବୃତ୍ତ୍ୟର୍ଥ ସସାଗରା ଧରା ବୌଦ୍ଧସଙ୍ଘକୁ ଦାନ କରି ଏବଂ ନିଜେ ଭିକ୍ଷୁବ୍ରତ ଗ୍ରହଣ କରି ନଶ୍ୱର ଦେହ ପରିତ୍ୟାଗ କରିଥିଲେ ।

ଭାରତର ବିଭିନ୍ନ ଅଂଶରେ ସାତଗୋଟି ଶୈଳଦେହରେ ଶୈଳ ଲିଖିତ ଅନୁଶାସନଗୁଡ଼ିକ ବର୍ତ୍ତମାନ ଅଛି । ପ୍ରଥମଟି ଭୁବନେଶ୍ୱରର ଅଦୂରବର୍ତ୍ତୀ ଦୟାନଦୀତୀରସ୍ଥ ଧଉଳିଗିରି, ଦ୍ୱିତୀୟଟି ଗଞ୍ଜାମ ଜିଲ୍ଲାସ୍ଥିତ ଯୌଗଡ଼ ପର୍ବତ, ତୃତୀୟଟି ଗୁଜରାଟସ୍ଥିତ ଗୀର୍ଣ୍ଣାର ପର୍ବତ, ଚତୁର୍ଥଟି ଯମୁନାତଟସ୍ଥ ହିମାଳୟମଧ୍ୟବର୍ତ୍ତୀ ଖାଲସିଗିରି, ପଞ୍ଚମଟି ସିନ୍ଧୁନଦୀତୀର-ବର୍ତ୍ତୀ ଅଟକ ନଗର ନିକଟ-ସ୍ଥ କପର୍ଦ୍ଦିଗିରି । ପ୍ରତ୍ୟେକ ଶୈଳରେ ଚତୁର୍ଦ୍ଦଶ ଗୋଟି ଅନୁଶାସନ ଲିପିବଦ୍ଧ ହୋଇଅଛି । ପ୍ରଥମ ଅନୁଶାସନରେ ଜୀବବଧ ନିଷେଧ; ଦ୍ୱିତୀୟରେ ରୁଗ୍ଣ ମନୁଷ୍ୟ ଓ ପଶୁମାନଙ୍କ ଚିକିତ୍ସା ଓ ସେବା ନିମିତ୍ତ ଆୟୋଜନ; ତୃତୀୟରେ ବୌଦ୍ଧଧର୍ମର ମାହାତ୍ମ୍ୟ କୀର୍ତ୍ତନ ନିମନ୍ତେ ପ୍ରତି ପଞ୍ଚମ ବର୍ଷରେ ମହୋତ୍ସବର ଅନୁଷ୍ଠାନବିଧି; ଚତୁର୍ଥରେ ନିଜର ପୁତ୍ର ଓ ପୌତ୍ର ଏବଂ ବଂଶଧରମାନଙ୍କ ପ୍ରତି ଧର୍ମରକ୍ଷା ଏବଂ ଧର୍ମ ପ୍ରଚାର ନିମିତ୍ତ ଉପଦେଶ; ପଞ୍ଚମରେ ଧନୀ ଦରିଦ୍ର-ନିର୍ବିଶେଷରେ ସକଳ ସମ୍ପ୍ରଦାୟ ମଧ୍ୟରେ ସ୍ୱଦେଶରେ ଏବଂ ବିଦେଶରେ ଧର୍ମ ପ୍ରଚାର ନିମିତ୍ତ ଧର୍ମ ମହାପାତ୍ର ବା ପରିବ୍ରାଜକ ଧର୍ମଗୁରୁମାନଙ୍କର ନିଯୁକ୍ତି; ଷଷ୍ଠରେ ପ୍ରଜାମାନଙ୍କଠାରେ ରାଜା ଋଣୀ ଏହି ଉଚ୍ଚଭାବ ଉପଲବ୍ଧି କରି ପ୍ରଜାଙ୍କର ଦୁଃଖହ୍ରାସ ଓ ସୁଖ ବୃଦ୍ଧି ନିମିତ୍ତ ଆପଣାର ସମଗ୍ର ଜୀବନକୁ ସର୍ବଦା ନିୟୋଗ କରିବାର ପବିତ୍ର ସଙ୍କଳ୍ପ; ସପ୍ତମରେ ସଙ୍କୀର୍ଣ୍ଣ ସାମ୍ପ୍ରଦାୟିକ ବିଦ୍ୱେଷ ପରିବର୍ଜ୍ଜନପୂର୍ବକ ସାର୍ବଜନୀନ ମୈତ୍ରୀବ୍ରତ ସାଧନର ଅଭିପ୍ରାୟ; ଅଷ୍ଟମରେ ମୃଗୟାଦି ରାଜବ୍ୟସନର ଅନୌଚିତ୍ୟ ପ୍ରଦର୍ଶନ ଏବଂ ଦାନ, ସେବା ସତ୍ସଙ୍ଗର ପ୍ରଶଂସା; ନବମରେ ସକଳ ପ୍ରକାର ଦାନ ମଧ୍ୟରେ ଧର୍ମଦାନର ଅର୍ଥାତ୍ ଧର୍ମନୀତି ବିସ୍ତାର ନିମିତ୍ତ ଆନ୍ତରିକ ଯତ୍ନର ଶ୍ରେଷ୍ଠତା ପ୍ରଖ୍ୟାପନ; ଦଶମରେ ପ୍ରଜାମାନଙ୍କର ସଦ୍ଧର୍ମାନୁରାଗ ଦର୍ଶନରେ ଆନନ୍ଦ ପ୍ରକାଶ; ଏକାଦଶରେ ଭକ୍ତି ପ୍ରୀତି ମୈତ୍ରୀଭାବର ସାଧନକୁ ପରମ ପୁରୁଷାର୍ଥ ବୋଲି ପ୍ରତିପାଦନ; ଦ୍ୱାଦଶରେ ସମ୍ପ୍ରଦାୟ ନିର୍ବିଶେଷରେ ଗୃହତ୍ୟାଗୀ ସନ୍ନ୍ୟାସୀ ଏବଂ ଗୃହସ୍ଥ ଉଭୟ ଶ୍ରେଣୀର ଲୋକମାନଙ୍କ ପ୍ରତି ଶ୍ରଦ୍ଧା ସମର୍ପଣ ଏବଂ ବିଭିନ୍ନ ସମ୍ପ୍ରଦାୟମାନଙ୍କର ପରସ୍ପର ନିନ୍ଦାର

ଅଯୋଗ୍ୟତା ପ୍ରଦର୍ଶନ, ଜୟୋପଦେଶରେ କଳିଙ୍ଗ ଯୁଦ୍ଧର ନୃଶଂସତା ବର୍ଣ୍ଣନ, ନିଜର ଅନୁତାପ ଏବଂ ନବଦୀକ୍ଷା ଗ୍ରହଣର ଉଲ୍ଲେଖ, ଭାରତର ଦକ୍ଷିଣାଞ୍ଚଳରେ ଗ୍ରୀକ ପାଣ୍ଡ୍ୟ ପ୍ରଭୃତି ପ୍ରଦେଶରେ ଏବଂ ଅଣ୍ଟିଓକସ ପ୍ରଭୃତି ଯବନ ଭୂପତିମାନଙ୍କ ରାଜ୍ୟରେ ବୌଦ୍ଧଧର୍ମ ପ୍ରଚାରର ସୁଫଳ ଦର୍ଶନରେ ମହୋଲ୍ଲାସ ପ୍ରକାଶ; ଚତୁର୍ଦ୍ଦଶରେ ନିଜ ସାମ୍ରାଜ୍ୟର ବିପୁଳ ବିସ୍ତୃତିର ଏବଂ ଭବିଷ୍ୟତରେ ଧର୍ମପ୍ରଚାରାର୍ଥ ଅଧିକତର ପରିପ୍ରୟୋଗାର୍ଥ ସଂକଳ୍ପର ଉଲ୍ଲେଖ ଲିପିବଦ୍ଧ ହୋଇଅଛି ।

୨ ଗୁମ୍ଫାମାନଙ୍କରେ ଖୋଦିତ ଲିପି ଗୟା ନିକଟସ୍ଥ ନାଗାର୍ଜ୍ଜୁନି ପର୍ବତରେ, ଭୁବନେଶ୍ୱର ନିକଟସ୍ଥ ଖଣ୍ଡଗିରିରେ, ମଧ୍ୟପ୍ରଦେଶସ୍ଥ ରାମଗଡ଼ରେ ଏବଂ ଅନ୍ୟାନ୍ୟ କେତେକ ସ୍ଥଳରେ ଦେଖାଯାଏ । କେଉଁ ଗୁମ୍ଫା କେଉଁ କେଉଁ ରାଜା ବୌଦ୍ଧ ତପସ୍ୱୀମାନଙ୍କ ଉପକାରାର୍ଥ ନିର୍ମାଣ କରାଇଥିଲେ, ସେଥିର ବିବରଣ ସେମାନଙ୍କରେ ଖୋଦିତ ହୋଇଅଛି ।

୨ ସ୍ତମ୍ଭଖୋଦିତ ଲିପି ଦିଲ୍ଲୀରେ, ଏଲାହାବାଦରେ, ବିହାର ଜିଲ୍ଲାର ଗ୍ରାମ ବିଶେଷରେ ଏବଂ ଭୂପାଳସ୍ଥିତ ସାଞ୍ଚୀ ନାମକ ସ୍ଥାନରେ ପରିଦୃଷ୍ଟ ହୁଏ । ପୂର୍ବ ଲିଖିତ ଚତୁର୍ଦ୍ଦଶ ଅନୁଶାସନବତ୍ ସ୍ତମ୍ଭାନୁଶାସନଗୁଡ଼ିକ ମଧ୍ୟ ନାନା ଧର୍ମୋପଦେଶରେ ଏବଂ ଅଶୋକଙ୍କର ଅନୁଷ୍ଠିତ ପ୍ରଜାହିତକର କାର୍ଯ୍ୟର ବିବରଣରେ ପରିପୂର୍ଣ୍ଣ ।

ଏହି ଅନୁଶାସନ-ଲିପି କଥା ଚିନ୍ତା କଲେ କାହାର ହୃଦୟ ବିସ୍ମୟାପନ୍ନ ନ ହେବ ? କି ଗଭୀର ଧର୍ମାନୁରାଗ ? ଧର୍ମ ପ୍ରଚାରାର୍ଥ କି ବ୍ୟାକୁଳତା ? କେବଳ ମନୁଷ୍ୟମାନଙ୍କ ପ୍ରତି ନୁହେଁ, ନିକୃଷ୍ଟ ଜୀବମାନଙ୍କ ପ୍ରତି ସୁଦ୍ଧା କି ଅନୁପମ ଦୟା ? କି ସ୍ୱର୍ଗୀୟ ଅସାମ୍ପ୍ରଦାୟିକ ଉଦାରତା ? କି ଅମୃତମୟ ପ୍ରଜାବାତ୍ସଲ୍ୟ ଓ ଅମାୟିକ ଲୋକହିତୈଷଣା ? ଧନ୍ୟ ଅଶୋକ ! ଧନ୍ୟ ଦେବାନାଂପ୍ରିୟ ! ପ୍ରିୟଦର୍ଶୀ । ଧନ୍ୟ ତୁମ୍ଭର ଦୟା ! ଧନ୍ୟ ତୁମ୍ଭର ବିଶ୍ୱାସ ।

( ୧୧ )

# ଜାତୀୟ ଜୀବନ

ଦେଶପ୍ରାଣ ମଧୁସୂଦନ ସି.ଆଇ.ଇ

ଆମ୍ଭମାନଙ୍କର ଜାତୀୟ ଜୀବନ ଅଛି କି ? ଜାତି ଜାତି ମଧ୍ୟରେ ସ୍ଥିର ହେବା ନିମନ୍ତେ ଜାତୀୟ ଜୀବନର ଆବଶ୍ୟକ । ଆମ୍ଭମାନଙ୍କ ମଧ୍ୟରେ ଯେଉଁ ଜୀବନ ପରିଲକ୍ଷିତ ହୁଏ, ତାହା ବ୍ୟକ୍ତିଗତ ଜୀବନ । ବ୍ୟକ୍ତିଗତ ଜୀବନ କ୍ଷଣସ୍ଥାୟୀ; ତାହା କାଲି ଶ୍ମଶାନରେ ଶେଷ ହେବ । ଶରୀରର ଅଭ୍ୟନ୍ତରରେ ଯେଉଁ ଆତ୍ମା ବିଦ୍ୟମାନ ତାହା ଈଶ୍ୱରଙ୍କ ନିକଟରେ ପହଞ୍ଚିବ । ଫଳେ ପାର୍ଥିବ ଜୀବନର ଆକର୍ଷଣୀ ଶକ୍ତି, ଅର୍ଥାତ୍ ମୋର ସ୍ତ୍ରୀ, ମୋର ଅପତ୍ୟ, ମୋର ସମ୍ପତ୍ତି ଏବମ୍ଭୂତ ପାର୍ଥିବ ଦ୍ରବ୍ୟଗୁଡ଼ିକ ମୋତେ ପ୍ରଚଣ୍ଡ ବଳରେ ଟାଣୁଅଛି । ଉପରେ ସ୍ୱର୍ଗୀୟ ଜୀବନର ଆକର୍ଷଣୀ ଶକ୍ତି, ଅର୍ଥାତ୍ ମୋର ପ୍ରାଣ ପରିତ୍ରାଣ, ମୋର ଅନନ୍ତ ବିଶ୍ରାମ ସ୍ଥାନ ମୋତେ ସର୍ବଦା ଉପରକୁ ଟାଣୁଅଛି । ଚତୁଃପାର୍ଶ୍ୱରେ ଅନ୍ୟାନ୍ୟ ଜାତି ଓ ସମାଜ ବିଦ୍ୟମାନ । ସେହି ଜାତି ଓ ସମାଜମାନଙ୍କ ସଙ୍ଗେ ଜୀବନ ମିଳାଇ ଆଳାପ କରିବା ଆମ୍ଭମାନଙ୍କର ଗୋଟିଏ ପ୍ରଧାନ କର୍ମ । ଜାତୀୟ ଜୀବନ ପ୍ରତିଷ୍ଠିତ ହେଲେ ଜାତି ଜାତି ମଧ୍ୟରେ ସଦ୍ଭାବ ହେବ । ଜାତି ଜାତି ମଧ୍ୟରେ ଯେଉଁ ସଦ୍ଭାବ ତହିଁର ବିଚ୍ଛେଦ ହେବ ନାହିଁ । କିନ୍ତୁ ବ୍ୟକ୍ତିଗତ ସଦ୍ଭାବ ଚିରସ୍ଥାୟୀ ନୁହେଁ, ତାହା କ୍ଷଣଭଙ୍ଗୁର ।

କେହି କେହି ଏପରି ବିଚାର କରନ୍ତି ଯେ ଜାତୀୟ ସଭ୍ୟ ହେଲେ ବ୍ୟକ୍ତିଗତ ଅସଦ୍ଭାବ ରହିବ ନାହିଁ । ଏପରି ବିଚାର ଭ୍ରାନ୍ତିମୂଳକ । ଜାତୀୟ ଜୀବନ ପ୍ରତିଷ୍ଠିତ ହେଲେ ସୁଦ୍ଧା ଜାତି ଭିତରେ ବ୍ୟକ୍ତିଗତ ବିବାଦ ସମୂଳେ ଲୋପ ପାଇବା ଅସମ୍ଭବ । ଏପରି କେହି ମନେ କରିବେ ନାହିଁ ଯେ ଉତ୍କଳରେ ଜାତୀୟ ଜୀବନ ପ୍ରତିଷ୍ଠିତ ହୋଇ ତହିଁର ମୂଳଦୁଆ ଦୃଢ଼ ହେଲେ ଆମ ଦେଶରେ ବ୍ୟକ୍ତିଗତ ବିବାଦ ଆଦୌ ରହିବ ନାହିଁ ଓ ଅଦାଲତ ଗୁଡ଼ିକ ଉଠି ଯିବ । ବ୍ୟକ୍ତିଗତ ଜୀବନରେ ଅସଦ୍ଭାବ ହେଲେ ସୁଦ୍ଧା ଜାତୀୟ ସଦ୍ଭାବରେ କିଛି ଅଭାବ ଘଟିବ ନାହିଁ, ମୁଁ କୌଣସି ଶିକ୍ଷିତ ଓ ପଦସ୍ଥ ଉତ୍କଳୀୟଙ୍କଠାରୁ ଡଳଲିଖିତ ମର୍ମରେ ଚିଠି ପାଇଅଛି—

"ମେ ସଙ୍ଗେ ଆପଣଙ୍କ ମନ ମିଳନ୍ତି ନାହିଁ, ଅତଏବ ମୁଁ ସମିତିମାନରେ କାର୍ଯ୍ୟ କରି ପାରିବି ନାହିଁ ।" ଏଥିର କାରଣ ଆମମାନଙ୍କର ଜାତୀୟ ଜୀବନର ଅଭାବ । ଜାତୀୟ ଜୀବନ ଗଠିତ ହେଲେ ବ୍ୟକ୍ତିଗତ ଭାବରେ ଅସଦ୍ଭାବ ଥିଲେ ସୁଦ୍ଧା ଜାତୀୟ ଅନୁଷ୍ଠାନରେ ସମସ୍ତେ ମିଳି ମିଶି କାର୍ଯ୍ୟ କରି ପାରିବା, ଏଥିରେ ସନ୍ଦେହ ନାହିଁ । ଏଠାରେ ଆପଣ-ମାନଙ୍କୁ ଗୋଟିଏ ଉଦାହରଣ ଦେବାକୁ ଇଚ୍ଛା କରୁଅଛି ।

ପ୍ରଥମେ ଆକାଶରୁ କ୍ଷୁଦ୍ର ଜଳବିନ୍ଦୁ ପୃଥିବୀ ଉପରେ ପଡ଼େ । ତତ୍ପରେ ଜଳବିନ୍ଦୁଗୁଡ଼ିକ ଏକତ୍ରିତ ହୋଇ ଗୋଟିଏ ଜଳଧାର ହୋଇ ତଳକୁ ବହିଯାଏ । ଏହାପରେ କେତେଗୁଡ଼ିଏ ଜଳଧାର ମିଶି ଗୋଟିଏ ନାଳରେ ପରିଣତ ହୁଏ । ଏହାପରେ କେତେଗୁଡ଼ିଏ ନାଳ ନଦୀରେ ପରିଣତ ହୋଇ ତଳକୁ ବହିଯାଏ ଓ ଶେଷରେ ସମୁଦ୍ରରେ ଯାଇ ପଡ଼େ । ଆପଣମାନେ ଦେଖନ୍ତୁ, ସବୁ ସ୍ଥଳରେ ସବୁ ଅବସ୍ଥାରେ ଜଳ ନିଜର ଜାତୀୟ ଗୁଣକୁ ଧାରଣ କରି ନିଜର ଜାତୀୟ ଜୀବନର ଐକ୍ୟ ରକ୍ଷା କରିଅଛି । ଜଳର ଜାତୀୟ ଗୁଣ ନିମ୍ନଗତି । ବିନ୍ଦୁଏ ଜଳରେ ସେହି ଗୁଣ

ବର୍ତ୍ତମାନ ଓ ମହାସମୁଦ୍ରରେ ମଧ୍ୟ ଜଳ ନିଜର ଜାତୀୟ ଗୁଣକୁ ହରାଇ ପାରୁନାହିଁ । ଅତ୍ର ସମସ୍ତଙ୍କର ମନେ ରଖିବା ଉଚିତ ଯେ, ଅମ୍ଭମାନଙ୍କର ଜାତୀୟ ଜୀବନ ଅଛି । ସବୁ ଅବସ୍ଥାରେ ସବୁ କାଳରେ ସବୁ ସ୍ଥାନରେ ଅମ୍ଭେମାନେ ପ୍ରତ୍ୟେକେ ଜାତୀୟ ଜୀବନର ଟେକ ରଖି କାର୍ଯ୍ୟ କରିବା ଏକାନ୍ତ ଅବଶ୍ୟକ । ଅମ୍ଭମାନଙ୍କ ମଧ୍ୟରୁ ଯେବେ କେହି ଭ୍ରମରେ ପଡ଼ିଥାନ୍ତି ସେ ଭ୍ରମ ଅଚିରାତ୍ ସଂଶୋଧନ କରିବା ଏକାନ୍ତ ଅବଶ୍ୟକ । ଯେବେ କେହି ଜଣେ ଓଡ଼ିଆ ଜାତିକୁ ଗାଳି ଦିଏ ତାହା-ହେଲେ ତୁମ୍ଭ ମନରେ ରାଗ ହୁଏ କାହିଁକି ? ଏଥିର କାରଣ ନିରୂପଣ କରିବାକୁ ଗଲେ ସ୍ପଷ୍ଟ ଜଣାଯିବ ଯେ ଏହା ଜାତୀୟ ଜୀବନର ଚିହ୍ନ । ଯେବେ ଜାତୀୟ ଜୀବନର ଚିହ୍ନ ଅମ୍ଭମାନଙ୍କ ମଧ୍ୟରେ ଅଛି, ତେବେ ଅମ୍ଭେମାନେ ପ୍ରତ୍ୟେକେ ଯେ କୌଣସି କାର୍ଯ୍ୟ କରୁଁ ସେତେବେଳେ ନିଜ ନିଜକୁ ସର୍ବପ୍ରଥମେ ଏହି ପ୍ରଶ୍ନଟି ପଚାରିବା ଅବଶ୍ୟକ "ମୋ କାର୍ଯ୍ୟ-ଦ୍ୱାରା ମୋ ଜାତିର ନିନ୍ଦା ହେବ କି ନାହିଁ ?" ମୁଁ ମିଥ୍ୟାବାଦୀ ହେଲେ କିମ୍ବା ଖୋସାମଦ କଲେ ଏହି ନିନ୍ଦାରେ ମୋ ଜାତି ଭାଗୀ ହେବ, ଏହା ପ୍ରତ୍ୟେକ ବ୍ୟକ୍ତିର ବୁଝିବା ଅବଶ୍ୟକ । ମୋତେ ଯେବେ ଜଣେ କୁବାକ୍ୟ କହେ ତେବେ ମୁଁ ତାହାର ପ୍ରତ୍ୟୁତ୍ତର କଲେ ତଦ୍ଦ୍ୱାରା ମୋ ଜାତିର ଗୌରବ ବୃଦ୍ଧି ହେବ କି ନାହିଁ ? ଜାତିର ମୂଲ୍ୟ ବଢ଼ିଲେ ଜାତୀୟ ଲୋକେ ତାହାର ସୁଫଳ ଭୋଗ କରିବେ ଏଥିରେ ସନ୍ଦେହ ନାହିଁ । ଜାପାନ ଜାତିଙ୍କ ବିଷୟ ଅମ୍ଭମାନଙ୍କର ସର୍ବଜ୍ଞ ମହାଶୟ ତାହାଙ୍କର ବକ୍ତୃତାରେ କହିଅଛନ୍ତି । ଜାପାନ ଜାତିର ଉନ୍ନତିର ମୂଳମନ୍ତ୍ର କଅଣ ? "ମୋର ପ୍ରାଣ ଯାଉ, ଲକ୍ଷେ ଜାପାନୀଙ୍କର ପ୍ରାଣ ଯାଉ, କିନ୍ତୁ ଜାପାନୀ ଜାତିର ମାନ ବୃଦ୍ଧି ହେଉ;" ଏହି ଭାବ ପ୍ରତ୍ୟେକ ଜାପାନୀଙ୍କ ହୃଦୟରେ ନୃତ୍ୟ କରୁଅଛି । ଏହି ଭାବ ଯୋଗୁଁ ଅଜି ଜାପାନୀ ଜାତି ପୃଥିବୀରେ ସର୍ବତ୍ର ପୂଜିତ ହେଉଅଛି । "ମୁଁ ହଠାତ୍ ମରିବି, ମୁଁ ଅଜି ମଲେ ମୋ ଜାତିର ମାନବୃଦ୍ଧି ହେବ, ମୋର ପୂର୍ବ ପୁରୁଷଙ୍କର ମାନ ବୃଦ୍ଧି ହେବ ଓ ମୋର ସନ୍ତାନ ସନ୍ତତିମାନଙ୍କର ମାନ ବଢ଼ିବ," ଏହି

ବ୍ୟବହାରେ ଲୋକଙ୍କୁ ନେଇ ଜାପାନ ଜାତି ଗଠିତ । ତାହାର ମାନବୃଦ୍ଧି ସଙ୍ଗେ ସଙ୍ଗେ ଜଗତର ଚକ୍ଷୁରେ ସେ ଜାତିର ମୂଲ୍ୟ ବଢ଼ୁଅଛି ଏଥିରେ ସନ୍ଦେହ ନାହିଁ । ଉଦାହରଣ ସ୍ୱରୂପ ଦେଖନ୍ତୁ ଯେ ଜାପାନ ଜାତି ଟଙ୍କା କରଜ ନେବାକୁ ବିଜ୍ଞାପନ ଦେଲା ମାତ୍ରେ ସମସ୍ତ ସଭ୍ୟଜାତି ତାକୁ ଟଙ୍କା ଋଣ ଦେବାପାଇଁ ପ୍ରସ୍ତୁତ । ଏଥିର କାରଣ, ଜଗତର ଚକ୍ଷୁରେ ଜାପାନ ଜାତିର ମୂଲ୍ୟ ବଢ଼ିଅଛି । ଯେତେବେଳେ ପର୍ଯ୍ୟନ୍ତ ବ୍ୟକ୍ତିଗତ ଜୀବନକୁ ଜାତି ନିମନ୍ତେ ବଳି ଦେବାକୁ ଶିଖି ନାହାନ୍ତି, ସେତେବେଳେ ପର୍ଯ୍ୟନ୍ତ ଜାତୀୟ ଜୀବନ ଗଠିତ ହୋଇନାହିଁ ବୋଲି ଜାଣିବାକୁ ହେବ ଓ ସେତେବେଳେ ଯାଏ ଜାତୀୟ ଜୀବନର ମୂଲ୍ୟ ଲୋକମାନେ ଜାଣି ନାହାନ୍ତି ବୋଲି କହିବାକୁ ହେବ । ଗୋଟିଏ କୁକୁରକୁ ଆଦର ସହିତ ହୃଷ୍ଟପୁଷ୍ଟ କରି ରଖନ୍ତୁ ଓ ତା'କୁ ନେଇ ଗୋଟାଏ ବାଘ ଦେଖାଇ ଦିଅନ୍ତୁ, ଦେଖିବେ ଯେ ବାଘଅଛି ଶିକାର ହେବା ମାତ୍ରକେ ଦେଶୀ କୁକୁରଟି ଲାଞ୍ଜ ଗୁଞ୍ଜି ଆପଣଙ୍କ ନିକଟକୁ ପଳାଇ ଆସିବ । କିନ୍ତୁ ଗୋଟିଏ ବିଲାତି ଡାହାଳ କୁକୁରକୁ ଆଣନ୍ତୁ ତାକୁ ଗୋଟାଏ ବାଘ ଦେଖାଇ ଦିଅନ୍ତୁ, ଦେଖିବେ ଯେ ଡାହାଳକୁକୁରଟି ନିର୍ଭୀକଭାବରେ ମହାବଳ ବାଘ ଉପରକୁ ଝପଟି ଯିବ । ଯେବେ ସେ ଡାହାଳକୁକୁର କୁଆଡ଼େ କଥା କହି ପାରୁ ଥାଆନ୍ତା, ତାହାର ଅସୀମ ସାହସିକ କାର୍ଯ୍ୟର କାରଣ ଆପଣ ତାକୁ ପଚାରିଲେ ସେ ଏହିପରି ଜବାବ ଦିଅନ୍ତା—

"ମୁଁ ଜାଣେ ଯେ ମହାବଳ ବାଘକୁ ଆକ୍ରମଣ କରିବାକୁ ଯାଇ ମୁଁ ସେହି ବାଘ ହାତରେ ମରିବି । କିନ୍ତୁ ମୋ ଜାତିର ଗୁଣ ସାହସିକତା, ମୁଁ ମୋର ଜୀବନ ପ୍ରତି ମାୟା ରଖି ବାଘ ନିକଟକୁ ନ ଗଲେ ମୋ ଜାତିର ମାନ ଓ ମୂଲ୍ୟ କମି ଯିବ । ମୁଁ ମରେ ପଛକେ କିନ୍ତୁ ଡାହାଳ କୁକୁରର ଦାମ୍ ମୋର ସାହସିକତା ଦ୍ୱାରା ବଢ଼ିବ, ଏଥିରେ ସନ୍ଦେହ ନାହିଁ । ଏହି ଉଦାହରଣର ଅର୍ଥ ଏହି କି ଆମ୍ଭେମାନେ ସମସ୍ତେ କାର୍ଯ୍ୟ କଲା ବେଳେ ଥରେ ଆମ୍ଭମାନଙ୍କର ଭାବିବା ଉଚିତ ଯେ ମୋ କାର୍ଯ୍ୟଦ୍ୱାରା

ମୋ ଜାତିର ମାନ ବଢ଼ୁଛି କି ନାହିଁ ? ଯେବେ ମୋତେ ଜଣେ କୁବାକ୍ୟ କହେ ଓ ମୁଁ ଯେବେ ଜାଣିପାରେଁ ଯେ ମୁଁ ସେହି କୁବାକ୍ୟର ପ୍ରତ୍ୟୁତ୍ତର ନ ଦେଇ ଚୁପ୍ ରହିଲେ ମୋ ଜାତିର ମାନ ବଢ଼ିବ ଓ ମୋ ଜାତିର ଗମ୍ଭୀରତା ବଢ଼ିବ ତାହାହେଲେ ଏପରି ସ୍ଥଳରେ ମୋର ମୌନ ରହିବା ଏକାନ୍ତ କର୍ତ୍ତବ୍ୟ ।

ଦୋଷ ଗୁଣ ଦେଖିବା ସମ୍ବନ୍ଧରେ ମୋର ବକ୍ତବ୍ୟ ଏହି ଯେ ଯୋଡ଼ାଏ ଆଖିରୁ ଗୋଟିଏ ଆଖି ବନ୍ଦ କର ଓ ଗୋଟିଏ ଆଖି ଖୋଲା ରଖ । ବନ୍ଦ ଆଖିରେ ଅନ୍ୟ ଜାତିଙ୍କର ଦୋଷଗୁଡ଼ିକ ଦେଖ ଓ ଖୋଲା ଆଖିରେ ସେମାନଙ୍କର ଗୁଣଗୁଡ଼ିକ ନିରୀକ୍ଷଣ କର ଓ ସେହି ଗୁଣ ଗୁଡ଼ିକୁ ଶିକ୍ଷା କର । ସବୁ ବାଦ୍ ଓ ସବୁ ଜାତିଙ୍କଠାରେ ଅନୁକରଣ କରିବା ଯୋଗ୍ୟ ଅନେକ ଗୁଡ଼ିଏ ଗୁଣ ଅଛି । ମୋର ପୂର୍ବବର୍ତ୍ତୀ ବକ୍ତା ଭ୍ରମର ସାହେବ ମହୁମାଛି ଓ ପିମ୍ପୁଡ଼ିଙ୍କ ଉଦାହରଣ ଦେଇ ଯାହା କହିଅଛନ୍ତି ସେଥିରୁ ଆପଣମାନେ ଦେଖି ପାରିବେ ଯେ କ୍ଷୁଦ୍ର ପିପୀଲିକା ଓ ମଧୁମକ୍ଷିକାଙ୍କଠାରୁ ଆମ୍ଭମାନଙ୍କର ଅନେକ ଶିକ୍ଷା କରିବାର ବିଷୟ ଅଛି ।

ସୂର୍ଯ୍ୟ ନିର୍ବିକାର ଭାବରେ ସମସ୍ତଙ୍କଠାରେ କିରଣ ବିତରଣ କରୁଅଛନ୍ତି । ସମୁଦ୍ରର ଲୁଣି ପାଣିରେ, ପବିତ୍ର ସରୋବରରେ, ନର୍ଦ୍ଦମାରେ ସବୁଠାରେ ତାଙ୍କ କିରଣ ପଡ଼ୁଛି । କିନ୍ତୁ ଆପଣମାନେ ଦେଖନ୍ତୁ ଯେ ସୂର୍ଯ୍ୟଙ୍କର କିରଣ ବିଶୁଦ୍ଧ ଜଳତକ ଟାଣିନିଏ ଓ ମଇଳା, ଦୁର୍ଗନ୍ଧ, ପଙ୍କ ଗୁଡ଼ିକ ଛାଡ଼ି ଯାଏ । ବିଶୁଦ୍ଧ ଜଳଗୁଡ଼ିକ ବାଷ୍ପ ରୂପରେ ଟାଣି ନିଏ ଓ ସେହି-ଗୁଡ଼ିକ ପୁନର୍ବାର ପୃଥିବୀରେ ସେଚନ କରେ । ଏଥିରୁ ଆମ୍ଭେମାନେ ଏହି ମହାଶିକ୍ଷା ପାଉଅଛୁଁ ଯେ ସବୁଠାରୁ ଦୋଷତକ ତ୍ୟାଗ କରି ଗୁଣଗୁଡ଼ିକ ଗ୍ରହଣ କର ।

ପରିଶେଷରେ ଏ ସମ୍ବନ୍ଧରେ ମୋର ବକ୍ତବ୍ୟ ଏହିକି—ଉତ୍କଳ ଜନନୀ ଭାରତ ଜନନୀଙ୍କଠାରୁ ବର୍ଜ୍ଜିତ ହୁଅନ୍ତୁ । ସେ ଭାରତ ଜନନୀଙ୍କର

ସପତ୍ନୀ କନ୍ୟା ଶତ୍ରୁ ନୁହନ୍ତି । ଭାରତ ଜନନୀଙ୍କର ପାଞ୍ଚ ଛଅଗୋଟି ପୁତ୍ର । ଭିନ୍ନ ଭିନ୍ନ ଶିଶୁଙ୍କୁ ବିଭିନ୍ନ ପ୍ରକାର ପରିଚର୍ଯ୍ୟା ଆବଶ୍ୟକ । ଜନନୀ କେଉଁ ଶିଶୁକୁ କୋଡ଼ରେ ଧରି ମଧୁମୟ ସ୍ନେହ ଚକ୍ଷୁରେ ସ୍ତନ୍ୟପାନ କରାଉ ଅଛନ୍ତି । କେଉଁ ଶିଶୁର ଦୁଷ୍ଟ ଚରିତ୍ରକୁ ଦମନ କରିବା ପାଇଁ ବେତ୍ରାଘାତ କରୁ-ଅଛନ୍ତି, କେଉଁ ଶିଶୁକୁ ନିକଟରେ ବସାଇ ତାଠାରୁ ପରାମର୍ଶ ଗ୍ରହଣ କରୁଅଛନ୍ତି । ଅର୍ଥାତ୍ ଶିଶୁର ବିଭିନ୍ନ ଅବସ୍ଥାରେ ଜନନୀ ବିଭିନ୍ନ ରୂପ ଧାରଣ କରି ଦଣ୍ଡାୟମାନ ହୋଇଅଛନ୍ତି । ଯେଉଁ ମଧୁମୟୀ ମୂର୍ତ୍ତିରେ ଜନନୀ ଶିଶୁକୁ ସ୍ତନ୍ୟପାନ କରାନ୍ତି, ଉତ୍କଳ ଜନନୀ ଆଜି ସେହି ସ୍ନେହମୟୀ ମୂର୍ତ୍ତିରେ ଆଜି ଆମ୍ଭମାନଙ୍କ ସମ୍ମୁଖରେ ଏହି ସମ୍ମିଳନୀ ମଣ୍ଡପରେ ଉପସ୍ଥିତ ହୋଇ ଅଛନ୍ତି । ଏହି ମୂର୍ତ୍ତି ଭାରତମାତାଙ୍କର ଗୋଟିଏ ମୂର୍ତ୍ତିବିଶେଷ । ଏହି ରୂପଟି ଭାରତମାତାଙ୍କର ଗୋଟିଏ ଅବତାର । ଏପରି ସ୍ଥଳରେ ଉତ୍କଳ ଭାରତମାତାଙ୍କର ସପତ୍ନୀ ନୁହନ୍ତି ।

( ୧୨ )

# ଟାଙ୍ଗି-ମାଉସୀ

ବ୍ୟାସକବି ଫକୀରମୋହନ ସେନାପତି

ଆଜି ସ୍ନାନ ପୂର୍ଣ୍ଣିମା । ଜ୍ୟେଷ୍ଠ ମାସିଆ ଦିନ, ଭାରି ଖରା । ମହାପ୍ରଭୁ ଅଣସରକୁ ଯାଉଛନ୍ତି, ଜ୍ୱର ଗୁରୁତର । ଆକାଶରୁ ଅଠେଇ ମାସ ହେଲା ଟୋପାଏ ପାଣି ଦେଖିବାକୁ ନାହିଁ । ପବନ ଗୁମସୁମ କରି ରହିଅଛି, ଝୁଣ୍ଟା ଗଛ ଗୁଡ଼ାକ ଜଗନ୍ନାଥ ମହାପ୍ରଭୁଙ୍କ ଆଗରେ ଗରୁଡ଼ ଖମ୍ବ ପରି ଛିଡ଼ା ହୋଇଅଛନ୍ତି । ଯେଉଁ ଗଛ ଥାଉ, ଅଶ୍ୱତ୍ଥପତ୍ର ଗୋଟାଏ ମଧ୍ୟ ଖସ କରିବାକୁ ନାହିଁ । ଦାଣ୍ଡ ବାଲି ଗୁଡ଼ାକରେ ମୁଠାଏ ଧାନ ପକାଇ ଦେଲେ ଚଡ଼ ଚଡ଼ ହୋଇ ଖଇ ଫୁଟିଯିବ । ଗାଆଁର ବୁଲା କୁଡ଼ୀ କାଳୀ ଧଳକା କୁତାଙ୍କ ପୋଖରୀ ପଙ୍କରେ ପଡ଼ି ଲଟପଟ ହେଉଅଛି; ଅଉ କେମନ୍ତେ ଜିଭଟା କାଢ଼ି ପକାଇ ଧକାଉ ଅଛି, ପାଣିକି ଯାଉ ନାହିଁ । ପାଣି ଗୁଡ଼ାକ ତାତି ଯାଇଛି ନା କଣ ? ପଡ଼ିଆରେ ଟୋକାଟାଏ ମଧ୍ୟ ଗୋରୁ ବାହୁଣୀ ନାହାନ୍ତି, ଗଛମୂଳରେ ଶୋଇ ପଡ଼ି ବୈଷ୍ଣବମାନେ ମାଳ ଝୁଲି ଧରି ହରିନାମ ଛଳରେ ପରି ଆଖି ବୁଜି ଘାଣ୍ଟୁଳ କରୁଅଛନ୍ତି । ଆକାଶରେ ଗୋଟିଏ କାଉ କୋଇଲି ଉଡ଼ିବାକୁ ନାହିଁ; ପତ୍ର ମଧ୍ୟରେ ଲୁଚି ଥଁ କରି ବସିଅଛନ୍ତି । ମୁଣ୍ଡଫଟା ଖରା, ଦିନ ଛଡ଼ି ପହର ଗଡ଼ି ଗଲାଣି, ତଥାପି ଆକାଶରୁ ନିଆଁ ଛିଡ଼ୁଛି ।

ହୁଁ ମେରା ଭାଇରେ ହୁଂ ହୁଁ,
ଖବର ଦାଣ୍ଡରେ ହୁଂ ହୁଁ,
ଜୋର କର ରେ ହୁଂ ହୁଁ
ଡାହାଣେ ଧର ରେ ହୁଂ ହୁଁ
ବାଁ କୁ ଛାଡ଼ରେ ହୁଂ ହୁଁ
ଖଡପା ଖଡପା ଖଡପା—

ରତନପୁର ମୌଜା ଗୋହିରୀରେ ଗଉଡ଼ଡାଚ ଶୁଭୁଛି । ଆଗରେ ଗୋଟାଏ ଡୋଲି, ପଛକୁଗି ପାଞ୍ଚଟା ଭାର ଚାଲିଅଛି । ଡୋଲିଟା ଦଶିଆ ଲୁଗାରେ ସମ୍ପୂର୍ଣ୍ଣ ଢଙ୍କା । ଗ୍ରାମରେ ମୁରୁବିଲୋକ ପ୍ରାୟ କେହି ନାହାନ୍ତି । କଲବାଡ଼ି କାମ ନ ଥିବାରୁ ବାଘ ସିଂହ ଭାଇମାନଙ୍କ ସହିତ ଜେନ୍ଦ୍ରାପଡ଼ା ବଳଦେବଙ୍କ ସ୍ନାନଯାତ୍ରା ଦେଖିବାକୁ ଯାଇଅଛନ୍ତି । ଗାଁ ଏ ମୁଣ୍ଡ ସେ ମୁଣ୍ଡ ଚହଳ ପଡ଼ିଗଲା, ସୁଆରି ଅଇଲା, ସୁଆରି ଅଇଲା । ବୁଢ଼ୀ, ମାଇକିନିଅମାନେ ଧଡ଼ କରି କବାଟ ମେଲେଇ ଦେଇ ଗୋହିରୀକୁ ବାହାରି ପଡ଼ିଲେ । ବୋହୁଗୁଡ଼ାକ କବାଟ ଦାର ଆଢ଼ୁଆ କରି ଫାଙ୍କ ବାଟେ ମୁହିଁ ଗଳାଇ ନାକ ବସଣି କାଢ଼ିଦେଲେ । ଗାଁ ମାଇକିନିଆଙ୍କ ମଧ୍ୟରେ ଡୋଲ୍ୟାରୋହୀ ସମ୍ବନ୍ଧରେ ନାନା ତର୍କ ଉପସ୍ଥିତ ହେଲା । ପ୍ରଥମେ ଲଙ୍ଗ ସଶୁର, ପରେ ବାଙ୍କ ବନର୍ଣ୍ଣୟ । କେହି କହିଲା, ନୂଆ ବୋହୂ, କେହି କହିଲା ଜମାଦାର, କେହି କହିଲା ସାହେବ । ଜେମା ମା ଅଙ୍ଗୁଳି ଯୁକ୍ତ ଦେଖାଇ କହିଲା, ଆଜି ସ୍ନାନପୂର୍ଣ୍ଣମୀ, ଜମାଦାର ସାହେବ ଘରକୁ ପରିବାଭାର ନେଇ ଯାଉଅଛନ୍ତି । ଡୋଲି ବାଘ ସିଂହ ଚଉପାରି ପାଖରେ ମୁହାଁ ବୁଲାଇ ନଥିଲେ ଜେମାମା ଅନୁମାନ ସିଦ୍ଧାନ୍ତରେ ପରିଣତ ହେବାର ଖୁବ୍ ସମ୍ଭାବନା ଥିଲା । ବେହେରାମାନେ ବାଘସିଂହ ଦୁଆରେ ଡୋଲିଟା ଗୁମ୍ କରି ଥୋଇ ଦେଇ ଗାମୁଛାରେ ମୁହାଁ ବଞ୍ଚି ହେଲେ । ଗମ ଗମ୍ କରି ଦେହରୁ ଝାଳ ବହି ଯାଉଅଛି, ବାଁ ହାତ ପାପୁଲିରେ ମୁହଁରୁ ପୋଛି ପୋଛି ପୋଛି ପକାଉଛନ୍ତି । ଭିତରକୁ ଖବର ଗଲା ନୂଆ ବୋହୂ

ମାଧୁରୀ ଅସିଛନ୍ତି । ଗଲ୍ଲ ମକର ମାସରେ ବାଘ ସିଂହଙ୍କ ପୁଅ ଚନ୍ଦ୍ରମଣି ଡାଳପୋଡ଼ା ଫଳେ ସିନ୍ଧୁଙ୍କ ଘୁଅରୁ ବଞ୍ଚ ହୋଇଛନ୍ତି । ଏହି ଜୋକ ଯେ ସଲଖେ ସଲଖେ ଡାଳପୋଡ଼ାରୁ ଅଇଲ, ଏହା ବ୍ୟାଖ୍ୟାରେ ବୁଝି ପିବାକୁ ଗ୍ରାମର ବୁଦ୍ଧିମତୀ ସ୍ତ୍ରୀମାନଙ୍କ ପକ୍ଷରେ ଅସୁବିଧା ହେଲ ନାହିଁ । ମାଣିକ ଭଣ୍ଡାରୁଣୀ ସାଅନ୍ତାଣୀମାନଙ୍କୁ ଖବର ଦେବା ସକାଶେ ଉଡ଼ରକୁ ଧାଇଁଲ ।

ଅମ୍ଭମାନଙ୍କ ମାଣିକର ନାମ ଶୁଣିଥିବେ—ନଚେତ୍ ଶୁଣିବା ଅବଶ୍ୟକ । ଏହାକୁ ତୁଚ୍ଛା ଭଣ୍ଡାରୁଣୀଟିଏ ବୋଲି ଜାଣିବେ ନାହିଁ । ଏ ବୁଦ୍ଧିରେ, ମାମଲତରେ, ଗୁଣରେ, ଅନେକ ପୁରୁଷର କାନ କାଟି ଲୁଣ ଦେଇ ପାରେ । ଗ୍ରାମର ସମସ୍ତ ଲୋକେ ଏହାକୁ ଡର ଥାଆନ୍ତି । ବୁଢ଼ୀ ବରବୁଢ଼ୀ ପର୍ଯ୍ୟନ୍ତ ଭଲ ମନ୍ଦ କଥାରେ ଏହାଠାରୁ ପରାମର୍ଶ ନେଇ କାର୍ଯ୍ୟ କରନ୍ତି । ଗୁଣି ବଇଦ୍ୟରେ ଏହା ଆଗରେ କେହି ଛିଡ଼ା ହୋଇ ପାରିବ ନାହିଁ । ଗାଆଁର କଅଁଳା ପିଲାଙ୍କୁ ଦୃଷ୍ଟି ଦେଲେ ଫୁଙ୍କି ଝଡ଼ାଇ ଦିଏ । ଦାଇମାଣରେ ଖୁବ୍ ଟାଣ—ବୋହୂ ଝିଅ ଦେହକୁ ଲାଗିଲେ ଉଠିଆସି ପର୍ଯ୍ୟନ୍ତ ମୁହାଁଣ ପାଖଛଡ଼ା ହୁଏ ନାହିଁ । ମୁଲଚୁଲକା ମଧ୍ୟ ତେର ଜଣା । ପର ଉପକାର କରିବାକୁ ଯେପରି ମନଜମ, ଉପରେ ମନ୍ଦ କରିଅ କରିବାକୁ ସେହିପରି ମଜବୁତ୍ । କଳିଆରେ ଲାଗିଛ ତ ସେଦିନ ଗାଧୁଆ ନ ହେଲା । କାହାରି ଦେହ ପାଆକୁ ଲାଗିଲେ ତାହାକୁ ପାଣି ଦାନ କଅଁଳର କହୁ ଦେଇଛି, ନଆଳି, ନ ଶୋଇ ରାତିସାରା ବସି ଦେହରେ ହାତ ବୁଲାଉଥିବ । ବାହା ମୂର୍ଛାରିରେ ଡାକ ନ ଡାକ, ମାଣିକ ଉପସ୍ଥିତ, ହସି ନାଚି ସବୁ କାମ କରି ପକାଇବ । ମାଣିକ ନ ଜାଣେ ଏମନ୍ତ କଥା ନାହିଁ । କଟକ କଥା, ସାହେବଘର କଥା, ପୁରୀ ଜଗନ୍ନାଥ ମନ୍ଦିର କଥା ଇତ୍ୟାଦି କଥାମାନ ଗ୍ରାମର ସ୍ତ୍ରୀଲୋକମାନେ କେବଳ ମାଣିକମୁହଁରୁ ଶୁଣିବାକୁ ପାଆନ୍ତି । ମାଛ ବିନା ପୋଖରୀ ଥାଇପାରେ, ମାଣିକ ଭଣ୍ଡାରୁଣୀ ଛଡ଼ା ଗାଁ ନାହିଁ । କେହି କେହି କହନ୍ତି ମାଣିକଟା ଡବଡବୀ,

ମିଚ୍ଛେଇ, ଅଗଡ଼ବନ୍ଧ, ଏହାର ଉନ ପୁରୁଷରେ କେହି ଗାଁ ଭିତରି ନାହାନ୍ତି—କଟକ କଥା, ସାହେବ ଘର, କଥା କାହୁଁ ଜାଣିବ ? ବାଘ ସିଂହ ଉଆସରେ ମାଣିକର ଖୁବ ଖାତିର । ସହସ୍ର ଥର କହିଛ, ଶହେଥର ଶୁଣିଛ ରଜାପୁଅ, ମନ୍ତ୍ରୀପୁଅ, ସାଧବପୁଅ, କୋଟୁଆଳପୁଅ ଚାରିଜଣ ମିଳି ବିଦେଶ ଯିବା କଥା, ବରଲେଇ ଦେଇ କଥା, ନଈ ସେପାରି ମଙ୍ଗଳା କଥା ଇତ୍ୟାଦି କାହାଣୀମାନ ଶୁଣିବା ସକାଶେ ପ୍ରତିଦିନ ସନ୍ଧ୍ୟାବେଳେ ସାଆନ୍ତାଣୀମାନଙ୍କର ଡାକରା ଆସେ । ରାମ ରାବଣ ଯୁଦ୍ଧ କଥା ମାଣିକ ମୁହେଁ ମୁହେଁ କହିପାରେ । ଯେ କଥା ପଚାର ସେଥିର ଜବାବ ନିଶ୍ଚୟ ପାଇବ । ମାତ୍ର ଗୋଟିଏ କଥା—ସେ ଯାହା କହିବ, ତୁମ୍ଭେ ସେଥିରେ ହୁଁ ଦେଇ ଯାଉଥିବ । ଯଦି ବୋଲି ତୁମ୍ଭେ ପଚାର—ଆଜି ଯାଅ କାହିଁ ? ସେ କଥା ଥାଉ, "ଦ୍ୱିନାମା ରମଣୀ ଧନ୍ୟା" ମାଣିକକୁ ଗ୍ରାମରେ ସମସ୍ତେ ଭଲ ଜାଣନ୍ତି, ଆମ୍ଭମାନଙ୍କର ଚିହ୍ନାଇ ଦେବା ଅନାବଶ୍ୟକ ।

ଭୋଇଁ ମଣି ଦାଣ୍ଡରେ ଯାଉଥିବା ବେଳେ ମାଣିକ ପଛରେ ଥିବା ଭଣ୍ଡାରି ସଙ୍ଗରେ କଥାବାର୍ତ୍ତା କରି ହାଲଠା ନୁହିଗଲା, ତାହାବାଦ ବାଘ ସିଂହଙ୍କ ଦାଣ୍ଡ ଦୁଆରୁ ପାଟିକରି ଉଆସ ଭିତରକୁ ଧାଇଁଲା । "ବଡ଼ ସାଆନ୍ତାଣୀଏ, ସାନ ସାଆନ୍ତାଣୀଏ, ମଝିଆଁ ସାଆନ୍ତାଣୀଏ, ଧାଇଁ ଆସନ୍ତୁ କେଉଁଠାରେ ଅଛନ୍ତି ? ଡାଳପୋଡ଼ାରୁ ସମୁଦୁଣୀଙ୍କ ପୁଅର ଅପ୍ପ ଓଳିଏ ହେଲା ଦାଣ୍ଡରେ ବସିଲେଣି । ସମୁଦୁଣୀଙ୍କ ଆସିବା କଥା ମୁଁ ଚାରି ଦିନ ହେଲା ଶୁଣିଲିଣି, ଆପଣମାନଙ୍କୁ କହିବାକୁ ଭୁଲି ଯାଇଅଛି । ସେ କାଲିଠାରୁ ଡାଳପୋଡ଼ାରୁ ବାହାରିଲେଣି, ମୁଁ କହୁଛି, କହ, ଏତେ ଡେରି କିଆଁ ହେଲା ? ଡାଳପୋଡ଼ାରୁ ଆସିବା ବାଟ ପାଖରେ ଯେ ବଡ଼ ପୋଖରୀଟାଏ ଅଛି, ସେହିଠାରେ ଗାଧୁଆ ପାଧୁଆ କରିବାରେ ବିଳମ୍ବ ହୋଇଗଲା ।" ବାଘ ସିଂହଘର ଚାରି ଝିଅ ଏକ ଜାଗା ହୋଇ ପରସ୍ପର ମୁହଁ ଚୁହାଁଚୁହିଁ ହେଲେ । ସେଥିର ଅର୍ଥ ଅଭ୍ୟାଗତା ଅନାହୂତା ସମୁଦୁଣୀ ସମ୍ବନ୍ଧରେ କର୍ତ୍ତବ୍ୟ ନିରୂପଣ । ମାଣିକ ଏକାବେଳକେ ମୀମାଂସା କରିଦେଲା, ଶୀଘ୍ର ଯାଇ ସମୁଦୁଣୀଙ୍କୁ ପାଛୋଟି ଆଣନ୍ତୁ ।

ବାଘସିଂହଙ୍କ ଦାଣ୍ଡଦୁଆର କବାଟ ପାଖରୁ ଫୁଲମୁଣା ବଦଣି ସହିତ ଦୁଇ ଛନଟୋକି ନାୟିକା ଦୃଶ୍ୟ ହେଲେ । ମାଉସୀ ଦେଖିଲକ୍ଷଣି ଓହ୍ଲାଇପଡ଼ି ଯୁପ ଯୁପ କରି ଭିତରକୁ ପଶିଗଲେ । 'ସମୁଦୁଣୀ, ସମୁଦୁଣୀ' କହି ମୁଟବୋହୀ ନାୟିକାଧାରିଣୀମାନଙ୍କ ପଛରେ କୁଣ୍ଢାଇ ଗଲେ । ଶୁଭାଧିଷ୍ଠାତ୍ରୀ ସାଆନ୍ତାଣୀମାନେ କଳରବରେ ହସି ହସି ସମୁଦୁଣୀ ହାତ ଧରି ଭିତରକୁ ନେଇଗଲେ । ସମୁଦୁଣୀଙ୍କ ଅଭ୍ୟର୍ଥନା ବନ୍ଦୋବସ୍ତରେ ମାଣିକର ଉଦ୍ୟୋଗ ଅନୁଷ୍ଠାନ ବେଶି । ସେ ଆଗ ଆଗେ ଚଞ୍ଚଳ ଧାଇଁ ଯାଇ ବାଘସିଂହ ପଣ୍ଡାଙ୍କ ଘର ଆଗ ମେଲରେ ଗୃହଦ୍ୱାର ଲମ୍ବା ଗୋଟାଏ ମୁରୁଣା ଖଟଣ୍ଡ ପକାଇ ଦେଲା । ମାଉସୀ ସେଥିରେ ବସି ପଡ଼ି ଗୃହ ସମୁଦୁଣୀଙ୍କ ହାତ ଧରି ପାଖରେ ବସାଇଲେ । ପାଞ୍ଚଟା ଭାର ମଣ୍ଡି ଅଗଣାରେ ଥୁଆଗଲା । ଭାରର ଭାବ—ପାଚିଲା ଆମ୍ବ ଏକଭାର, ବଡ଼ ବଡ଼ ଯୋଡ଼ାଏ ଖଣ୍ଡା ପଣସ ଏକ ଭାର, ପିଠଉଯାଣିରେ ଧଳା କଦଳୀ ପତରେ ମୁହଁବନ୍ଧା ବଡ଼ ବଡ଼ ଗୁଡ଼ହାଣ୍ଡିକୁ ଦୁଇଭାର—ଗାଏ । ଗାଁ ମାଇକିନିଆମାନେ ଦେଖିବାକୁ ଧାଇଁଲେ, ରେବତୀ, ଶୁକୁଟି, ଶଙ୍କ୍ରୀ, ମାଳିଆ, ଢେମାମା, ଝିମା ମାଉସୀ, ହଗୁବୁମା, ସୋଦଶ୍ରୀ, ମେଙ୍କୀ, କଜଳ, ନେଉଟକଳା, ସାବୀ, କମଳୀ, ପଦଅପା, ଗାମାବୋହୂ, ନଳତା, ଚମ୍ପା, ସୁମିତ୍ରା, ଗଉଡ଼ ଘର କନିଆବୋହୂ । କେହି ପିଲା କାଖେଇ, କେହି ପିଲା ହାତଧରି ଚଳାଇ, କେହି ଜଣକ ପଛରେ, କେହି ଏକାକିନୀ ଧାଇଁ ଅଛନ୍ତି । ଶଙ୍କ୍ରାମା ଘରେ ଲସୁଥିଲା—ଲୁଣପାଣିହାତ ଧୋଇବାକୁ ବେଳ ନାହିଁ, ସାପଟପଣ ପରି ହାତଟି ଟେକା ଅଛି । ବାଘସିଂହଙ୍କ ଅଗଣା ପୂରିଗଲା । ଦେବୀ ପ୍ରତିମା ଦେଖିଲା ପରି ମାଇକିନିଆମାନେ ଏକ ଧ୍ୟାନରେ ମାଉସୀଙ୍କର ରୂପମାଧୁରୀ ଅନୁଭବ କରୁଅଛନ୍ତି; କିନ୍ତୁ ବନିଆ, ବଙ୍କିଆ, କାଳିଆ, ବନମାଳିଆ, ଗୋପାଳିଆ, ସମିଆ, ଉଦେମଣିଆ, କାଶୀ, ଦୈତ୍ୟାରି ପ୍ରଭୃତି ଗ୍ରାମର ଦୁଷ୍ଟ ପିଲାଗୁଡ଼ାକ ମାଉସୀଙ୍କ ସୌନ୍ଦର୍ଯ୍ୟ ଦର୍ଶନ ବିଷୟରେ ମନୋଯୋଗ ନକରି ବିରାଡ଼ି ଶୁଖୁଆ ଖାଟଲାଇକୁ ଅନାଇଲା ପରି ବାହାରେ ଥୁଆ ହୋଇଥିବା ପାଚିଲା ଆମ୍ବକୁ ଅନାଇ ରହିଛନ୍ତି । ଏହା ଯେ ଅସଭ୍ୟତା ଏବଂ ଜାତିବିରୁଦ୍ଧ କାର୍ଯ୍ୟ

ସେଥିରେ ସନ୍ଦେହ ନାହିଁ । ଅନ୍ୟ ସେମାନଙ୍କର ବୃତ୍ତିରେଖ କର୍ମଗତିରେ ଯେପରି ସଙ୍କୋଚଶୀଳ ଧାରଣ କରି ଅଛନ୍ତି, ବୁଦ୍ଧିମାନ ମାଣିକ ସେଥିର ପ୍ରଚ୍ଛନ୍ନ ଅସଦଭିପ୍ରାୟ ହୃଦୟଙ୍ଗମ କରି ଈଷତ୍ ତର୍ଜନ ପୂର୍ବକ ଡାହାଣ ହାତ ହଲାଇ ସେମାନଙ୍କୁ ଅପସାରିତ କରି ଦେଇ ନଥିଲେ ଗୋଟାଏ ଲୁଠତରାଜ ମାମଲା ରୁଜୁ ହେବାର ଖୁବ ସମ୍ଭାବନା ଥିଲା ।

ବୋହୂ ମାଉସୀ ମୁଣ୍ଡରେ ମା ମଙ୍ଗଳା ପରି ମୁଣ୍ଡାଏ ସିନ୍ଦୂର, ଆଖିରେ କଜ୍ଜଳ, ନାକରେ ଗୁଣା, ତା ଉପରେ ନାଠ ମୟୂର, ବାଁ ପୂଡ଼ାରେ ବସଣୀ, ଦୁଇ କାନରେ ବଡ ବଡ ଦୁଇଟା କାପ, ବେକରେ ଗୁଞ୍ଜସରି, ତା ତଳେ ପାଟସୂତାରେ ଗୁନ୍ଥା ମାଳେ ହୁଳୁଳାତକ, ବାହୁରେ ବଦ, ହାତରେ ପଇଞ୍ଚି, ତାହା ଉପରେ କଟା, ତାହା ଉପରେ ଚୁଡ଼ି, ହାତ ପାଞ୍ଚ ଅଙ୍ଗୁଳରେ ରୁପା ଛାପ ମୁଦି ସାତଗୋଟା, ଗୋଡ଼ରେ ଚବିଶି ପଲ ଓଜନର ଦୁଇଟା କଂସା ବାଙ୍କ, ଗୋଡ଼ ଦଶ ଅଙ୍ଗୁଳରେ ଝୁଣ୍ଟିଆ, ମୁଣ୍ଡରେ ଦଶବାର କେଶ ପାଟ ଥେ ପରେ ଖଣ୍ଡାଳ ଜୁଡ଼ା, ତାହା ଉପରେ ଛନଟା ବେଙ୍ଗପାଡିଅରେ ଛନ କେଶ ଷିବୁକଲଗା ଗୋଳକାଠି ଖୋସା, କୃଷ୍ଣବର୍ଣ୍ଣୀ ଧଡ଼ି ଷୋଳହାତୀ ବରମ-ପୁରୀ ପାଟଶାଢ଼ୀ ପିନ୍ଧା, ଗାଲରେ ଗାଲେ ପାନ । ତାଳଯୋଡ଼ା ଫଟେ ଷିଂହ ଘର ବେଣ୍ଟ ଚଲ, ପୂର୍ବରୁ କାନରେ ଶୁଣା ଥିଲା, ବର୍ତ୍ତମାନ ଆଖିରେ ଅଳଙ୍କାରବଭବ ଦେଖି ଗାଁ ମାଇକିନିଆମାନେ ବୁଝିଗଲେ—ହଁ—ଘରପରି ଘରଟାଏ ।

ମାଉସୀ ବସିପଡ଼ି କହିଲେ, "ମୋ ଝିଅସ୍ତ କାହିଁ ? ମୋ ଝିଅସ୍ତ କାହିଁ ? ମୋ ଝିଅସ୍ତକୁ ଦେଖିବ । ଅହା ! ମା ଛେଉଣ୍ଡୀଟି ଶୁଖି ଯିବଣି ।" ସାନ ଖୁଡ଼ୀଶାଶୁ ନୂଆ ବୋହୂଟିକୁ ଧେନ ଆସିଲେ । ବୋହୂଟି ଦେଢ଼ ହାତ ଓଢଣା ପକାଇ ଅଳ୍ପ ନଇଁ ନଇଁ ଆସି ମାଉସୀ ଗୋଡ଼ତଳେ ଲଠ କରି ମୁଣ୍ଡିଆଟାଏ ମାରିଲା । ମାଉସୀ ଝିଅସ୍ତକୁ କୁଣ୍ଢାଇ ପକାଇ

ବାହୁନି ବସିଲେ । "ଅରେ ମୋ ଝିଅରେ—ତୋତେ ନଦେଖି ଅନ୍ଧ ହୋଇ ଯାଉଥିଲି । ଅରେ ମୋ ଚନ୍ଦ୍ର ଉଦଅରେ, ମୋ ଘର ଅନ୍ଧାର କରି ଅସିନ୍ତୁ, ଅରେ ମୋ କଳାମାଣିକ ରେ ।" ମାଉସୀ ବାହୁନି ବାହୁନି ଅଥୟ ହୋଇ ଗଲେଣି, ଦୁଇ ଆଖିରୁ ଝର ଝର କରି ପାଣି ବୋହି ପଡ଼ୁଛି । ବଡ଼ ସମୁଧୁଣୀ ଲୁଣ୍ଠାଇ ପକାଇ ଆପଣା ପଣତ କାନରେ ଆଖି ପୋଛି ଦେଲେ ଏବଂ ଅନେକ ପ୍ରକାରେ ବୁଝାଇ ସମଝାଇ ତୁନି କରାଇଲେ । ମାଉସୀ କହିଲେ "କଣ କହୁଛ ସମୁଧୁଣୀ, ଝିଅ ଅସ୍ଥିଲ ଦନ୍ତ ଅଲ ଜଳ ପିତା କରି ଦେଲଣି । ଖାଲି ଦାଣ୍ଡକୁ ଚାହିଁ ବସିଥାଏଁ—ଏଣୁ ଲୋକଟିଏ ଗଲେ ପଚାରେଁ, ବାଲଟିଏ ଗଲେ ପଚାରେଁ ।

ଝିଅଟି ତ ନୂଆ ପାଟି ଶୁଣି ଏବଂ ବାହୁନା ଦେଖି ତାଟକା ହୋଇ ଗଲାଣି, ମାଉସୀ ମୁହଁ ଦେଖିବା ପାଇଁ ଟିକିଏ ଓଢ଼ଣା ଟେକୁଥିଲା । ଚତୁରା ମାଉସୀ ଝିଅଟିର ଅଭିପ୍ରାୟ ସନ୍ଦେହରେ ବୁଝିପାରି ଓଢ଼ଣା ଟାଣିଦେଇ କହିଲେ "ଅରେ ମୋ ଲାଜକୁଳୀ ବଦନରେ, ଅରେ ମୋ ଲାଜକୁଳୀ ଲତାରେ, ତୋତେ କିଏ ଲାଜ ଶିଖାଇବ ରେ । ସମୁଧୁଣୀ କଣ କହିବ, ଏହା ମାଆର ଏହିପରି ଲାଜ ଥିଲା, ବୁଢ଼ୀ ହୋଇ ମଲା, ଶାଶୂମାନଙ୍କ ଆଗରେ ଆଖି ଫିଟାଇ ଚାହିଁ ନାହିଁ, ଓଢ଼ଣା ଟେକି ନାହିଁ । ଶାଶୁ ସାଙ୍ଗରେ ଭଟ ଭଟ ଲଗାଇବ ପଛକେ, ଖୁଡ଼ୀ ଶାଶୁମାନଙ୍କୁ ଗାଳି ଦେବ ପଛକେ, ସେହି ଓଢ଼ଣା ଭିତରୁ । ଧାନପେଟରୁ କଣ ବାଲୁଙ୍ଗା ବାହାରିବ ? ତୁଳସୀମଞ୍ଜିରୁ କଣ ବରୁଅଛ ହେବ ? ଧରିଲା ଝିଅ ହୋଇ ଯେବେ ଲାଜ ନ ହେଲା, ଧିକ ତା ଜୀବନ, ଛାଡ଼ ତା କଥା ।" ଝିଅଟି ତ ମାଉସୀ କଥା ଶୁଣି ଅଧିକ ଜାକି ଜୁକି ହୋଇ ବେଙ୍ଗୁଲି ପରି ବସିଲା । ଟାଙ୍ଗୀରେ ତାହାର ଗୋଟିଏ ମାଉସୀଘର ଥିବାର ସେ ଶୁଣିଥିଲା, ସେ ତା ମାଆର ଖୁଡ଼ୁତା ଝିଅ ଭଉଣୀ । ମନରେ ବୁଝିଲା, ଏ ସେହି ମାଉସୀ ।

ତାହା ବାଦ ବୋହୂ ମାଉସୀ ହସି ହସି ସମୁଧୁଣୀମାନଙ୍କ ସହିତ କଥାବାର୍ତ୍ତା କଲେ, ସମୁଧୁଣୀ ସମୁଧୁଣୀ କଥା ହସ କୌତୁକ କଥା, ଟାପସ

ଠାପୁର କଥା ଢେର ହେଲା; ଆପଣଙ୍କର ସେ ସମସ୍ତ କଥା ଶୁଣିବାକୁ ଇଚ୍ଛା ଥାଇପାରେ; ମାତ୍ର ଭଲ ଲୋକଙ୍କର ବୋହୂ ଭୂଅସୁଣୀ କଥା ପ୍ରକାଶ କରିବାକୁ ଆମ୍ଭେମାନେ ନିତାନ୍ତ ନାରାଜ ।

ତେବେ ଆପଣ ଯଦି ଶୁଣିବାକୁ ନିତାନ୍ତ ଇଚ୍ଛା କରନ୍ତି, ଅଉ ଯାହା କହିଲେ କୌଣସି ଦୋଷ ନାହିଁ ତେତିକି କଥା କହିପାରୁଁ । ବୋହୂ ମାଉସୀ କହିଲେ:—

ଏ ବରଷ ଭାରି ଯୋଗ ପଡ଼ିଛି, ସମସ୍ତେ ବଳଦେବ ଯାତ ଦେଖିବାକୁ ଯାଉଛନ୍ତି, ଆମ ଗାଁ ତ ଶୂନଶାନ । ମୁଁ କହିଲି, ଅଚ୍ଛା ବେଳ ପଡ଼ିଲା, ଦିଅଁ ଦେଖା ସମୁଦ୍ଧୁଣୀଭେଟ ଏକା ସାଙ୍ଗରେ ହୋଇଯିବ । ଝିଅଟାଟି କେମନ୍ତ ଅଛି ଦେଖିବ । ସମସ୍ତଙ୍କୁ ହେଉଣ୍ଟରେଇ ହେଉଣ୍ଟରେଇ ଘରୁ ଗୋଡ଼ କାଢ଼ିଲି । ଆମର ସେମାନେ—ଅଉ ଭଣୋଇ ସାଆନ୍ତ ଗୋଟାଏ ଗୋଟାଏ ଘୋଡ଼ାରେ ଚଢ଼ି ଦାଣ୍ଡେ ଦାଣ୍ଡେ ଆଗରେ ଯାଇ ତୋଟାରେ ବସିଛନ୍ତି । ଭଣ୍ଡାରୀ ଗଉଡ଼ ସମସ୍ତେ ସେମାନଙ୍କ ସାଙ୍ଗରେ, ମୁଁ କହିଲି ଝିଅଟିକୁ ନଦେଖି ଯିବିନାହିଁ—ଏକା ବାହାରି ଆସିଲି । କାଲି ଦର୍ଶନ ସାରି ସମସ୍ତେ ଏଇବାଟେ ବାହୁଡ଼ିବା । ବାଟରେ ଶୁଣିଲି ସମୁର୍ଦ୍ଧୀମାନେ ଯାତ ଦେଖି ଯାଇଛନ୍ତି । ଭଲ ହେଲା, ସମସ୍ତେ ସାଙ୍ଗ ହୋଇ ଆସିବା । ଦେଖ ସମୁଦ୍ଧୁଣି, ତୁମ୍ଭମାନଙ୍କ ସଙ୍ଗରେ ଦୁଃଖ ସୁଖ କଥା, ହସ ଖେଳିଲା କଥା କିଛି ହୋଇପାରିଲା ନାହିଁ । ଫେରିବା ବେଳେ ଏଇଠାରେ ଗୁଣ୍ଡିଦିନ ରହିଯିବା । ଭଣୋଇ ସାଆନ୍ତେ କହୁଥିଲେ, କେବଳ ଦିନେ ରହିବେ । ଦେଖିବଟି ଭଲା, କପଟ ଗୁରଦିନ ନ ରହିବେ, ଅଣ୍ଟାରେ ହାତ ପୁରେଇ ଦେବ ପର । ଝିଅଟା ମୁଣ୍ଡରେ ହାତ ବୁଲାଇ କହିଲେ, ମାରେ, ଝିଅରେ, ଅହା ! ଚିଲ୍ଲୋକ, କେଡ଼େଣି ଶୁଖି ପାରିବୁ ନାହିଁ, ଢେରଦିନ ହେଲା ଦେଖି ନାହୁଁ, ମୁଁ ଫେରିଅସେଁ, ଗାଧୋଇଲାବେଳେ ବସି ଢେର କଥା କହିବା, ତୋ ଲଗି ଯାହାକୁ ଢେର ଭରସ ଅଣିବ ।

ବୋହୂମାଉସୀ ବାଡ଼ିଆଡ଼କୁ ଯିବା ଇଚ୍ଛା କରି ଠିଆ ହୋଇ କହିଲେ, ଦେଖ ସମୁନ୍ଧୁଣି, ମୁଁ ସଦା ଅଡ଼େ ଗଲେ ସ୍ନାନ କରେଁ, ଗୃହଥର ଯିବ ପଡ଼ନ୍ତି ଗୃହଥର ସ୍ନାନ । ଘରପଛକୁ ଗଲେ ଲୋଟାଏ ପାଣି । "ଅଗ୍ରରେ ଲକ୍ଷ୍ମୀ, ବଗ୍ରରେ ପଣ୍ଡିତା" । ଏହା କହି ଦାଣ୍ଡଦୁଆର ଡୋଳି ପାଖକୁ ଗୁମ୍ ଗୁମ୍ କରି ବାହାରି ଗଲେ । ସାଙ୍ଗ ଭୂଣ୍ଡାଣ୍ଡ ଘରୁ ତାଳଟିଏ ଧରି ଛିଡ଼ା ହୋଇଥିଲା । ବୋହୂମାଉସୀ ପାଣି ପଡ଼ିଯିବା ଭୟରେ ଲୋଟା ମୁହଁରେ ହାତ ଚୋଡ଼ାଇ ବାଡ଼ି ଦୁଆରକୁ ବାହାରିଗଲେ । ବାଘସିଂହଘର ସେ ଭଲ ମୁରୁଷା ଓଲଟାଳ ଦେଖାଇ ଦେଇ ବାଡ଼ିଦୁଆରେ ଛିଡ଼ାହେଲା । ବୋହୂମାଉସୀ ତାକୁ ଅନାଇ କହିଲେ, ଦେଖ ସକାଳୁ ମୋତେ ପୀଡ଼ା ହେଲାଣି, କଣ କହିବ, ବୃଦ୍ଧ ଅଡ଼େ ଲୋକ—ପୁରୁଷ ହେଉ ସ୍ତ୍ରୀ ହେଉ, କେହି ଅନାଇଲେ ମୁଁ ବସିପାରେ ନାହିଁ । ମୁରୁଷାମା କହିଲା, ନାହିଁ ନାହିଁ; ଏଠାରେ କେହି ନାହାନ୍ତି, ଆପଣ ଯାଆନ୍ତୁ, ଆପଣ ଯାଆନ୍ତୁ । ଏହା କହି ଘର ମଧ୍ୟକୁ ଅସି ବାଡ଼ଦୁଆର ଅଉଜାଇ ଦେଲା ।

ଅନ୍ଧାର ହୋଇ ଆସିଲାଣି, ବୋହୂମାଉସୀ କହିଲେ, ମୁଁ ଆଉ ରହି ପାରିବ ନାହିଁ, ସେମାନେ ବାଟ ଚାହିଁ ବସିଥିବେ । ସମୁନ୍ଧୁଣୀମାନେ କିଛି ଖାଇବାକୁ କହିଲେ । ବୋହୂମାଉସୀ ଜିଭ କାମୁଡ଼ି ପକାଇ କହିଲେ, ରାମ—ରାମ—ରାମ । କଣ କହିଲ ସମୁନ୍ଧୁଣି, କଣ କହିଲ । ଏ ଘରେ ଝିଅ ଦେଇଛି, ପାଣି ଛୁଇଁବି । ବାହାରିବେଳେ ବୋହୂମାଉସୀ ସମୁନ୍ଧୁଣୀ-ମାନଙ୍କୁ କୁଣ୍ଢାଇ ପକାଇ କହିଲେ—

"ଦେଉଛନ୍ତୁ ମେଲାଣି ଯାଉଛୁ ସଙ୍ଗାତ,
ମନଟି ରଖିଲ ବାନ୍ଧି
ଦିନରାତି ସିନା ସରିବ ନାହିଁଟି
ସତେକି ସତେକି କାନ୍ଦ ।"

ଡୋଳି ଗାଁରୁ ବାହାରି ବଲବାଃ ଅନ୍ଧାରରେ ପଶିଗଲା । ଏଣେ ସାମନ୍ତମାନଙ୍କ ଦେଖିବା ପକାଣେ ଖବରସବୁ ରଖାଇ ଦିଆଗଲା । ବୋହୂ

ମାଉସୀ ବିଦାୟ ହୋଇ ଗଲାବାଦ ତାଙ୍କ ରୂପ ଗୁଣ ବିଷୟରେ ଢେର ସମାଲୋଚନା ହେଲା । ସମସ୍ତେ ପ୍ରଶଂସା କଲେ, କେହି ରୂପର, କେହି ଗୁଣର, କେହି ଅଳଙ୍କାରର, କେହି ପାଚିଲା କଦଳୀର । ମାତ୍ର ମାଣିକ କହିଲା, ହେଲା ହିଁ—ବଡ଼ ଲୋକଘର, ରୂପଟି ଏକା ଯେ ରୂପ ନୁହେଁ, ଛପୂ ଦାନ୍ତ ଦୁଇଟା ବାହାର, ଗାଲ ଦୁଇଟା ଓଅଣ୍ଡଣା ପରି । ହସୁରମା କହିଲା, କଥାଟାରେ ଏକା ମିଠା ନାହିଁ, ଠୋସ୍ ଠୋସ୍ । ମୁରୁସାମା କହିଲା, ଚାଲିଟା ଧପ୍ ଧପ୍ । ଶଙ୍କ୍ରୀ କହିଲା, ହଁ ହଁ ହସଟା ଫସ୍ ଫସ୍ । ଶୁକୀ କହିଲା, ଚହାଣିଟା କସ୍ ମସ୍ । ମୂହୂର୍ତ୍ତ ମଧ୍ୟରେ 'ଏକୋହି ଗୁଣରେ ଦୋଷ ସନ୍ନିପାତ" ହୋଇଗଲା । ନୂଆବୋହୂଙ୍କୁ ମାଉସୀ ସମ୍ବନ୍ଧରେ ଅନେକ ପ୍ରଶ୍ନ କରାଗଲା, ମାତ୍ର ସେ ଏତିକି କହିଲା—

"ଢାଙ୍ଗୀ ମାଉସୀ"

[illegible]
[illegible]
[illegible]
[illegible]
[illegible]
[illegible]

( ୧୩ )

# ଭୀମା ଭୂଇଁଆ

## ( ସପ୍ତମ ପରିଚ୍ଛେଦ )

୰ ଗୋପାଳଚନ୍ଦ୍ର ଦାସ, ଏମ୍: ଏ:

ରାତି କାଳ ବୋଲି ବୋଲାଯାଇଥାଏ । ଏଥିରୁ ଯାହା ପ୍ରକାଶ ପାଉ ଏ ସମୟରେ ସାନ ବଡ଼ ସମସ୍ତେ ଘରେ ବାହାରେ ଆଶ୍ରୟାବଲମ୍ବୀ, ନାନା ଦିଗରୁ ଆଗତ ପକ୍ଷିକୁଳ ଏକବୃକ୍ଷ ସମବେତ, ପରସ୍ପର ସାହାଯ୍ୟ-ପାଇଁ ଏକତ୍ରିତ; ଗୋରୁ ଅଶ୍ୱ ଛେଳି ମେଣ୍ଢା ଗୋଠଭୁକ୍ତ; ପର୍ଣ୍ଣକୁଟୀରଠାରୁ ସୌଧମାଳା ପର୍ଯ୍ୟନ୍ତ ରୁଦ୍ଧଦ୍ୱାର, ପୁଣି କୋକିଳର କୂଜନ ନାହିଁ କି ଭ୍ରମରର ଗୁଞ୍ଜନ ନାହିଁ; ଧରଣୀ ନୀରବ ନିସ୍ତବ୍ଧ । ନିଶାଚରଙ୍କ ବଶ୍ୱପିକାରେ ଚତୁର୍ଦ୍ଦିଗ ପରିପୂର୍ଣ୍ଣ । ଏହି କାଳରେ ଭୂତ ପ୍ରେତ ଡାକିନୀ ଯୋଗିନୀଙ୍କର ଲୀଳାଖେଳା ବୋଲି ଜଣାଶୁଣା । ବ୍ୟାଘ୍ର ଭଲ୍ଲୁକ ପ୍ରଭୃତିଙ୍କ ଭୟଙ୍କର ନାଦରେ ଗାତ୍ରକମ୍ପ ଉପସ୍ଥିତ, ସେମାନଙ୍କ ଆମୋଦ ପ୍ରମୋଦ ପାଇଁ କେତେ କେତେ ପ୍ରାଣୀଙ୍କର ପ୍ରାଣବାୟୁ ନିଃଶେଷ, ଚୋର ନାଗ ବାଟପାରି ପାଇଁ ଏ ପ୍ରଶସ୍ତ କାଳ, ଅସହାୟା ଲଳନାଙ୍କର ସତୀତ୍ୱରତ୍ନ ଅପହୃତ, ଧନୀ ସର୍ବସ୍ୱାନ୍ତ; ଏପରି ବିଭୀଷିକାପୂର୍ଣ୍ଣ ହେଲେହେଁ ରାତିରେ ସମସ୍ତେ ନିଦ୍ରିତ । ରଣଭୂମିରେ ଅସ୍ତ୍ରଶସ୍ତ୍ରର ଝଣ ଝଣ ନାହିଁ, ଅଶ୍ୱର ହ୍ରେଷାରବ ନାହିଁ, କମାଣର ବଜ୍ରନିନାଦ ନାହିଁ, ସଦାଶୋଣିତ-ପିପାସୁ ଅସି କୋଷାଶ୍ରିତ, ଅଦୂରରେ କର୍ଣ୍ଣ ଦ୍ରୋଣ ପ୍ରଭୃତିଙ୍କ ପରି ସୁବୀରେ ବିଦ୍ୟମାନ ଥିଲେହେଁ ସୀମାକୁ ନିଜ ପରି ମହାଧନୁର୍ଦ୍ଧରମାନେ ମାତୃଅଙ୍କରେ

ଦୁଗ୍ଧପୋଷ୍ୟ ଶିଶୁଠାରୁ ନିଦ୍ରାଭିଭୂତ । ନିଶାଦେବୀଙ୍କ ଚରଣପଙ୍କଜଙ୍କ ପ୍ରସାଦ ପାଇଁ ଯୋଗୀ, ଭୋଗୀ, ରୋଗୀ, ଚୋର, ବୈରାଗୀ ସମସ୍ତେ ଲାଳାୟିତ; ସେହି ପ୍ରସାଦରେ କାମ କ୍ରୋଧ ଲୋଭ ମୋହ ପ୍ରଭୃତିର ବିରାମ; ସେ ସମୟର ସେ ଘୋର ଅନ୍ଧକାର ରହୁଥିଲେ ଯେ ଜଗତ କି ହୋଇଥାନ୍ତା, ବୋଲିଯାଇ ନ ପାରେ । ନିଦ୍ରା ବିନା ପ୍ରକୃତିର ବିକୃତି, ନାନା ବିଡମ୍ବନା ବ୍ୟତିପାତ । ପୁଣି ଏହି କୈବଲ୍ୟ ଦାନ ପାଇଁ ନିଦ୍ରାଦେବୀ ନଦୀକୂଳେ, ବୃକ୍ଷମୂଳେ, ପ୍ରାସାଦେ, କୁଟୀରେ, ତୃଣଶଯ୍ୟାରେ, ଗଜଦନ୍ତ ପଲଙ୍କରେ, ଅଟପ ଅଟେ ଉପସ୍ଥିତ; ତାଙ୍କ କରକମଳ ସ୍ପର୍ଶରେ ଚିତାରୁ ବଳି ଗଣ୍ଡୂଷୀ ଚିନ୍ତାର ଅନଳ ନିର୍ବାପିତ; ଶ୍ରାନ୍ତ, କ୍ଳାନ୍ତ, ଭ୍ରାନ୍ତ ବିଦୂରିତ । ତଥାପି ତାଙ୍କ କ୍ରୋଡ଼ାଶ୍ରୟ କରିବାକୁ କେହି କେହି ବିମୁଖ; ସେମାନେ ପ୍ରକୃତିସ୍ଥ ହେଉନ୍ତୁ ବା ନ ହେଉନ୍ତୁ, ସେମାନେ ସାଧାରଣତଃ ବଡ଼ ବଡ଼ ଲୋକ; ଛତ୍ରପତି, ସେନାପତି ପ୍ରଭୃତି ନିଶୀଥରେ ଚିନ୍ତାମଗ୍ନ, କାର୍ଯ୍ୟରତ । ରଣକ୍ଷେତ୍ର ଶାନ୍ତି ଯାଇଥିଲେ କି ଆମ୍ଭର ସେପରି ଚିନ୍ତା ନାହିଁ, ବାପଭାଇଙ୍କ ସହିତ ନିଜ ମୁଣ୍ଡକୁ ପାଣିଛଡ଼ାଇ ଠାକୁରାଣୀଙ୍କ ଇଚ୍ଛା ଉପରେ ସବୁ ଛାଡ଼ି ଦେଇଛନ୍ତି । ଯାହା କରନ୍ତୁ ବା ପରଦିନ ପ୍ରତ୍ୟୁଷରେ ଯାହା ହେବ, ତହିଁ ପାଇଁ କୌଣସି ଶୋଚନା ନାହିଁ କି ଭାବନା ନାହିଁ । ଦଳମଧ୍ୟ ବାପଭାଇ ଯେ ସେହିପରି, ଏହା କହିବା ବାହୁଲ୍ୟ ମାତ୍ର । ଏମାନେ ଠାକୁରାଣୀ ସର୍ବେସର୍ବା ବୋଲି ବିଶ୍ୱାସ କରନ୍ତି, ସେ ମାରିବେ କି ରଖିବେ ତାଙ୍କ ମଧ୍ୟରୁ କେହି ଜାଣନ୍ତି ନାହିଁ; କିନ୍ତୁ ସେମାନେ ଜାଣନ୍ତି ଯେ "ଯାହାକୁ ରଖିବେ ଅନନ୍ତ, କିଏ ମାରିବେ ବଳବନ୍ତ" ଠାକୁରାଣୀଙ୍କର ଅନୁଗ୍ରହ ହେଲେ କେହି ନିଆଁରେ ପୋଡ଼ିବେ ନାହିଁ କି ପାଣିରେ ବୁଡ଼ିବେ ନାହିଁ, ସେ ବାମ ହେଲେ କେହି ମୃତ୍ୟୁରୁ ରକ୍ଷା ପାଇବେ ନାହିଁ, ତାଙ୍କ ଆଜ୍ଞା ବିନା ଆଉ କେହି ସାହା ନାହିଁ । ଏପରି ଧର୍ମଭାବ ଭଲ, କି ଅହଂଜ୍ଞାନରେ ଦିନ ଗଣି କାର୍ଯ୍ୟ-କ୍ଷେତ୍ରରେ ସଚଳ ଚଞ୍ଚଳ ହେବା ଭଲ । ତାହା ଆମ୍ଭ ପରି ଲୋକେ କିମ୍ବା ରାଜା, ମନ୍ତ୍ରୀ ପ୍ରଭୃତି ଜାଣନ୍ତି । କିନ୍ତୁ ଦେଖାଯାଏ ଶୁଣାଯାଏ ଯେ ଜଗଦ୍ବିଖ୍ୟାତ ନେପୋଲିୟନ ଦିନସାରା କାମ କରୁଥିଲେ, କେତେଥର

ସମୟରେ ନିଦ୍ରା ସଙ୍ଗେ ଭେଟ ହୋଇ ନାହିଁ, ସେ ଯାହା ଭାବ ଚିନ୍ତା ଠିକ କରୁଥିଲେ ତାହାର ଫଳ ହାତେ ହାତେ ମିଳୁଥିଲା; ବିଜୟଲକ୍ଷ୍ମୀ ତାଙ୍କର କରକବଳିତ ପରି ଜଣା ଯାଉଥିଲେ। ତାଙ୍କ ବିଦ୍ୟା ବୁଦ୍ଧି କଳକୌଶଳ ଅସୀମ ଅଧ୍ୟବସାୟ ପରିଶ୍ରମ ଦକ୍ଷପଦସ୍ଥତା ପ୍ରଭୃତିରେ ଜଗତ୍ ଚକିତ ସ୍ତମ୍ଭିତ ବିସ୍ମିତ ହେଉଥିଲା, ଶେଷରେ ପିଲାଙ୍କ ଧୂଳିଘର ପରି ସବୁ ଭାଙ୍ଗିଗଲା। ନିଜ ବିରଚିତ ବିଶାଳ ରାଜ୍ୟରୁ ବିତାଡ଼ିତ ହୋଇ ଦିଗନ୍ତ-ବ୍ୟାପୀ ମହାସାଗର ମଧ୍ୟସ୍ଥ ମୁଷ୍ଟିପରିମିତ ଦ୍ୱୀପଖଣ୍ଡରେ ବନ୍ଦୀରୂପେ ଜୀବନଯାତ୍ରା ଶେଷ କଲେ। ଏଥିରେ ସ୍ପଷ୍ଟ ତାଙ୍କର ବୁଦ୍ଧି ବଳର ଭ୍ରମପ୍ରମାଦ ହୋଇପାରେ, ସ୍ୱୀୟ ଓ ତାହାର ବାସନାର ମୂଳ ଅତି ଅବିମୃଶ୍ୟକାରୀ ବିବେଚିତ ହୋଇ ପାରନ୍ତି। ଏହା ମନୁଷ୍ୟର ବିଚାର; କିନ୍ତୁ ଯେ ସର୍ବଭୂତରେ ମାତା, ଶାନ୍ତି, ଦୟା, ମାୟା, କ୍ଷମା ପ୍ରଭୃତି ରୂପେ ସଦା ସଂସ୍ଥିତା, ତାଙ୍କ ବିଚାର ଧାରା ମାନ ପଣ୍ଡିତ ମୂର୍ଖ ସବୁରି ଅଗୋଚର। ସେହି ବିଚାରପାଇଁ କର୍ମ ଦୁଇଭାଗରେ ବିଭକ୍ତ; ପୁଣି ଯାହାକୁ ଜଣେ ପାପକାର୍ଯ୍ୟ କହୁଛି ଅନ୍ୟ ତାକୁ ଧର୍ମକର୍ମ କହୁଛି; କେହି ଗୃହସ୍ଥାଶ୍ରମକୁ ମୋକ୍ଷପଥ ମଣୁଛି, କେହି ବିଜନ ଅରଣ୍ୟବାସୀ ହେଉଅଛି, କେହି ଯଜ୍ଞ ବା ଜପ କରୁଛି, କେହି ସାକାର ବା ନିରାକାର ଭଜୁଛି; ଏହିପରି ଯେ ଯାହା କରୁ ବା କହୁ—ବିଚାରକର୍ତ୍ତାଙ୍କ ତୁଳାଦଣ୍ଡ କାହାରିକୁ ଜଣା ନାହିଁ। କିମ୍ବା ତାଙ୍କ ନିକିତିକଣ୍ଟା ସୂତାଏ ଏ ପାଖ ସେ ପାଖ କରିବାକୁ କେହି ସକ୍ଷମ ନୁହନ୍ତି। ଏସବୁ କଥା ଅଜ୍ଞେୟ ଅଦୃଶ୍ୟ; କିନ୍ତୁ ଯାହା ମନୁଷ୍ୟ କରଗତ, ଅସ୍ୱାଧୀନ ବେଳେ ବେଳେ ତହିଁକୁ ତାର ବଳ ନାହିଁ — କି କଳ ନାହିଁ; ବିଶାଳ ବାରିଧିବକ୍ଷ ଶତ ଶତ ଅର୍ଣ୍ଣବଯାନରେ ବିଦାରିତ, ବିଲୋଡ଼ିତ, ପୁଣି କେତେ କେତେ ମହାପ୍ରାଣୀ ତାହାର ଗର୍ଭରେ ଅନ୍ତର୍ହିତ, କେତେ କେତେ ସ୍ରୋତସ୍ୱତୀ ରୂଢଗତି ହୋଇ ସଢ଼ଗୃହକା ଧରି ବାରିଧ୍ୟନୁରକ୍ତ, ପୁଣି ପଲକେ ପ୍ରଳୟ ଉପସ୍ଥିତ କରି ସେହିମାନେ କେତେ କେତେ ସୁରମ୍ୟ ହର୍ମ୍ୟ ଭୂତଳଶାୟୀ କରୁଛନ୍ତି, କେତେ କେତେ କ୍ଷେତ୍ର ବାଲୁକାପୂର୍ଣ୍ଣ କରୁଅଛନ୍ତି, କେତେ ପଶୁ ପକ୍ଷୀ

ନର ନାଶ ଉପାୟ କେଉଁ ସମୁଦ୍ରଗର୍ଭରେ ନିକ୍ଷେପ କରୁଛନ୍ତି, ଆଜି ଯେ ପରମ ମିତ୍ର ଅଛି କାଲି ସେ ପରମଶତ୍ରୁ ହୋଇଅଛି, ଦଶରଥ ଶ୍ରୀରାମଚନ୍ଦ୍ରଙ୍କୁ ଅରଣ୍ୟ ପ୍ରେରଣ କରୁଛନ୍ତି, ଶ୍ରୀକୃଷ୍ଣ ଅର୍ଜୁନଙ୍କ ଅସ୍ଥାୟୀ ସ୍ୱଜନଙ୍କ ନିଧନ ପାଇଁ ଭଗବଦ୍‌ଗୀତା କହୁଛନ୍ତି । ଏପରି କ୍ଷେତ୍ରରେ ଶ୍ୟାମା ଓ ତାହାର ବାପ ଭାଇ ହୁଏତ ନିଜକୁ ନିଜ ଯାଇ ଭଲ କଲେ କି ମନ୍ଦ କଲେ ତାହା ଈଶ୍ୱରହିଁ ଜାଣନ୍ତି । ଈଶ୍ୱରରେ ଯାହାର ଯାହା ହେଉ, ଜୁଆରଭଟ୍ଟା ପରି ଦିନରାତି କାହାରି ଭଲ ମନ୍ଦ ପାଇଁ ଅପେକ୍ଷା କରନ୍ତି ନାହିଁ, ଆପଣା ବେଳକୁ ଚଳେ ଆଗ ପଛ ହୁଅନ୍ତି ନାହିଁ । ସୁତରାଂ ଶ୍ୟାମା ବା ତା'ହା ବାପ ଭାଇଙ୍କର କି ହେବ ତହିଁ ପ୍ରତି ଭ୍ରୂକ୍ଷେପ ନ କରି ସନ୍ଧ୍ୟାଦେବୀ ଯଥା ସମୟରେ ଗିରିଦୁର୍ଗରୁ ପ୍ରସ୍ଥାନ କଲେ; ତାଙ୍କ ସହଚରୀ ନିଦ୍ରା ମଧ୍ୟ ଅଧିକକ୍ଷଣ ପଛରେ ରହିଲେ ନାହିଁ; ତାଙ୍କ ସୁଖକର ଅଙ୍କରୁ ଅନ୍ତର ହୋଇ ଶ୍ୟାମା ଘୋର ଅନ୍ଧକାର ପରିବର୍ତ୍ତେ ଚତୁର୍ଦ୍ଦିଗ ଦିନକରଙ୍କ ସମୁଜ୍ଜ୍ୱଳ କିରଣମାଳାବିଭୂଷିତ ଦେଖି ଚମକି ପଡ଼ିଲା ପରି ହୋଇ, ଏଥିରେ ତାହା ମନରେ କି ହେଲା ତାହା ସେ ଜାଣେ । ତାହା କିଛି ପ୍ରକାଶ ନ କରି ବାପ ଭାଇଙ୍କି ଉଠାଇ ଦେଲା ଏବଂ ଅତି ସାବଧାନରେ ଲୁଚି ରହିବାକୁ କହି ତରତର ହୋଇ ପଦାକୁ ବାହାରିଗଲା, ସେତେବେଳକୁ ତାହାର ବପା ନିକଟବର୍ତ୍ତୀ ହୋଇଗଲାଣି । ଶ୍ୟାମା ଆଗେଇ ଯାଇ ଭୂମିଷ୍ଠ ପ୍ରଣିପାତ ହେଲା, ପୁଣି ପାଖଲୋକଙ୍କ ଉଠ ଉଠ ଡାକରେ ଅବଲମ୍ବେ ଉଠି କରଯୋଡ଼ ଠିଆ ହେଲା । ନିଶାରେ ମଦ୍ୟପାନ ଅତି ବିଳମ୍ବେ ନିଦ୍ରାଭଙ୍ଗର ଲକ୍ଷଣମାନ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ, ତାହା ପାଇଁ ଶ୍ୟାମାର କିଛି ଶୋଚନା ନାହିଁ, ସେ ନିର୍ଭୟମନରେ ବାପ ଆଗରେ ପୁଅ ପରି ଛିଡ଼ା ହୋଇ ରହିଲା । ରୁଚି ଅନୁସାରେ ଏହା କେହି କ୍ଷମଣୀୟ ମନେ କରୁ ବା ନ କରୁ, ପ୍ରଫୁଲ୍ଲ ବଦନରେ ରାଜା ଆଜ୍ଞା ହେଲେ, "କାଲିରାତିରେ ବେଶି ବେଳ ଯାଏ ମାମୁଁଘରେ ଥିଲି ପରା ।" ଏଥିରେ ଶ୍ୟାମା କହିଲା "ତୁମ୍ଭଙ୍କୁ କେଉଁ କଥା ଅଗୋଚର ଯେ" ସେ ବିଷୟରେ ରାଜା ବା ଗହଣଲୋକେ ଅଧିକ କିଛି କହିଲେ ନାହିଁ, ଏ କଥା ସେ କଥା ହେଉ ସମସ୍ତେ ଅଗ୍ରସର ହେଲେ,

ଶ୍ୟାମା ଟିକଏ ପଛେଇ ସଙ୍ଗୀଙ୍କ ତଳେ ତଳେ ରହୁଲା; ତାହାର ସ୍ୱଭାବ-ଭଙ୍ଗୀରେ କୌଣସି ପରିବର୍ତ୍ତନ ନାହିଁ; ଯେଉଁଠାରେ ଶ୍ୟାମାଙ୍କର ମୁଣ୍ଡ ଖୁଣ୍ଟା ଉପରେ ଥୁଆ ହୋଇଥିଲା, ସେ ସ୍ଥାନରେ ଉପସ୍ଥିତ ହେଲା; କିନ୍ତୁ ଶ୍ୟାମା ଯେପରି ସେପରି, ତାହା ମନରେ କି ଅଛି ସେ ଜାଣେ, ତହିଁ ପାଇଁ ତାହାର ମୁଖ ବନ୍ଦ ନୁହେଁ, ଅଭ ଅଭିମାନଙ୍କ ପରି ସେ ମଧ୍ୟ ଏ କଥା ସେ କଥା କହୁଅଛି; ଏପରି ଭାବରେ ସମସ୍ତେ ଚାଲିଛନ୍ତି, ପାଞ୍ଚଗୋଟା ମୁଣ୍ଡ ପ୍ରତି ସଙ୍ଗୀ ଦୃଷ୍ଟି ଦେଲେ ନାହିଁ କିମ୍ବା ସେ ସମ୍ବନ୍ଧରେ କିଛି କହିଲେ ନାହିଁ । ସେଥିଯୋଗୁଁ ବା ଅନ୍ୟ କୌଣସି କାରଣରୁ ଅଭ କେହି କିଛି କହିଲେ ନାହିଁ କି କଲେ ନାହିଁ; ଏ କଥା ନହୁସରେ ସମସ୍ତେ ସେ ସ୍ଥାନ ଛାଡ଼ି ଚାଲିଗଲେ, ତଥା ଶ୍ୟାମା ପୂର୍ବ ପରି । ଏହିପରି କିଛି ଦୂର ଯାଇ ଶ୍ୟାମା ଘମୁରୁ ମେଲାଣି ମାଗିଲା, ଅମ୍ଳାନବଦନରେ ଘମୁ ତାହାର ମାଗୁଣି ପ୍ରଦାନ କଲା । ଯଥାବିଧି ଜୁହାର ହୋଇ ଫେରିଲାବେଳକୁ ତାହାର ଭଲେ ଢଙ୍ଗ ଦେଖାଦେଲା; ତାହାର ଛାତି କୁଣ୍ଡେ ମୋଟ ହୋଇଗଲା ପରି ଜଣାଗଲା, ଗୋଟାଏ ଘାଟି ପାର ହେଲା ବୋଲି ଠାକୁରାଣୀଙ୍କି ମନେ ମନେ ଜୁହାର କଲା କି ନା ତାହା ସେ ଜାଣେ, କିନ୍ତୁ ବେଗ ବେଗ ହୋଇ ଚାଲିବାକୁ ଲାଗିଲା । ସେପରି ଅପି ବାପ ଭାଇଙ୍କ କଟକ ନ ଯାଇ ଅଲଗ ମୁଣ୍ଡ ପାଞ୍ଚଟା ଧେନି ନିକଟବର୍ତ୍ତୀ ନଅରକୁ ଚାଲିଗଲେ ।

କିଛିକ୍ଷଣ ଉତ୍ତାରୁ ଶ୍ୟାମା ଅପି ବାପ ଭାଇଙ୍କ ସଙ୍ଗେ ମିଳିଲା ଆଉ ଯାହା ଘଟିଲା ସବୁ କହିଲା । ଏଥିରେ ସମସ୍ତେ ଯେ ଆହ୍ଲାଦିତ ହୋଇଲେ ଏହା କହିବା ବାହୁଲ୍ୟ ମାତ୍ର; ଠାକୁରାଣୀ ରକ୍ଷିଲେ ବୋଲି ସମସ୍ତଙ୍କ ମୁହଁରୁ ବାହାରିଲା । ଏଥି ସଙ୍ଗେ ସଙ୍ଗେ ଭବିଷ୍ୟତ ଚିନ୍ତା ଅପି ଉପସ୍ଥିତ ହେଲା । ଅଦୃଷ୍ଟ ଅଦୃଶ୍ୟ ଶକ୍ତି ଉପରେ ଯେତେ ନିର୍ଭର କଲେ ବି ନିଜ ଶକ୍ତି ସମ୍ବନ୍ଧରେ ଭୁଲିଯାଏ ନାହିଁ, ସେ ଜୀବ ଓ ବସ୍ତୁ ଉପରେ ପୂରା ଅଧିକାର ନୋହିବାଯାଏ ମାୟାଜାଲରେ ମନୁଷ୍ୟ ଏତେଣେ ତେଣେ ହେଉଥାଏ, ନାନା ଉଦ୍ୟମ ଚେଷ୍ଟା ପ୍ରବୃତ୍ତି ଛାଡ଼େ ନାହିଁ, ମନେ କରେ

ଯେ ଦେବ ଏତେ ଅନୁଗ୍ରହ କଲେଣି, ତାଙ୍କ ନିକଟରେ ଗୋଟାଏ କିଛି ଭରି ଦେବାର ଖୁବ କିଛି ଇଚ୍ଛା କରେ । ମାତ୍ର ଏହା ମନେ ପଡ଼େ ନାହିଁ ଯେ ମୁଁ ନିଜକାମ ଦେଖୁ ଲୋଡ଼ାଏ, ତାହା ତାଙ୍କ ଭାବରୁ ଅନ୍ୟ ଜଣେ କରୁଛି । ଯେ ଏତେ ବଡ଼ ବିଶ୍ୱର ବନ୍ଧନ କରୁଛନ୍ତି ତାଙ୍କ ଭାର ଯେ ପତଙ୍ଗରୁ ବଳ କୋଟିଗୁଣେ କ୍ଷୁଦ୍ରପ୍ରାଣୀ ଟିଲେ ଉଣା କରି ନ ପାରେ । ଏପରି ନିଜ ଅହଙ୍କାର ଭାବ ଯେ କାହିଁକି ହୁଏ ତାହା ସର୍ବବ୍ୟାପୀ ଅନ୍ତର୍ଯ୍ୟାମୀ ଜାଣନ୍ତି । ସେ ଯାହାହେଉ ସେ ଭାବ ଚିରସ୍ଥାୟୀ ନୁହେ; ପ୍ରକୃତ ଦେଖ ତାହା କ୍ଷଣ ବା ଦୀର୍ଘକାଳସ୍ଥାୟୀ ହୋଇଥାଏ; କିଛି ଦିନ ଲମ୍ବା ଝମ ଉପରୁ ସେହି ଅପରିସୀମ ଅଜ୍ଞେୟ ଶକ୍ତିର ଆଭା ଦେଖା ଯାଇଥାଏ । ଖୁମା ଆଉ ତାହାର ବାପ ଭାଇ ମଧ୍ୟ ଗତ ରବିବାର ଅଟରେ ଜୀବନରକ୍ଷା ବିଷୟରେ ଏହା ଗାଁର କଥାବାର୍ତ୍ତା ହେଲେ; କିନ୍ତୁ କାହିଁରେ ଥଳ କୂଳର କିଛି ଆଶା ଭରସା ଦେଖିଲେ ନାହିଁ; ଅବଶେଷରେ ଠାକୁରାଣୀଙ୍କି ସବୁ ସମର୍ପି ଦେଲେ; ହୃଦୟରେ 'ମାତ ଭୈରବୀ ଯାହା କରାଇବ ତାହା କରିବ, ମନ୍ଦ ଧରି ନାସ୍ତି ହୋଇ ରହିଲେ, ଆଉ ଚକ୍ରା ଦବ କାହାର ପାଖେ ପଶି ପାରିଲା ନାହିଁ । ବାପ ପୁଅ ସୁଖରେ ପାନ ଭୋଜନ କରି ଦିନ କାଟିବାକୁ ଲାଗିଲେ, ସେ ଓଳି ଖୁମା ଆଉ ଝମ୍ପୁ ଦର୍ଶନକୁ ଗଲା ନାହିଁ ।

[illegible]

( ୧୪ )

# ସ୍ତ୍ରୀ-ଶିକ୍ଷା

ସ୍ୱର୍ଗୀୟ ବିଶ୍ୱନାଥ କର

ସ୍ତ୍ରୀ ପୁରୁଷ ଉଭୟଙ୍କୁ ନେଇ ମାନବ ସମାଜ ଗଠିତ । ଉଭୟଙ୍କ ଉନ୍ନତି ଅବନତି ଉପରେ ସମାଜର ଉନ୍ନତି ଓ ଅବନତି ନିର୍ଭର କରୁଅଛି । ବିଧାତା ଉଭୟ ଜାତିକୁ ବିଭିନ୍ନ ଭାବପ୍ରଧାନ କରି ସୃଷ୍ଟି କରିଅଛନ୍ତି । କିନ୍ତୁ କୌଣସିଟି ସମାଜୋନ୍ନତି ପକ୍ଷରେ ଅପର ଅପେକ୍ଷା ଅଳ୍ପ ପ୍ରୟୋଜନୀୟ ନୁହେଁ । ଗୋଟିକର ଅଭାବରେ ଅପରଟି ଅଙ୍ଗହୀନ ଓ ଅସମ୍ପୂର୍ଣ୍ଣ । ସମାଜର ସର୍ବାଙ୍ଗୀନ ଉନ୍ନତିସାଧନ କରିବାକୁ ହେଲେ ଯଦ୍ୱାରା ଏହି ଉଭୟ ଅଙ୍ଗ ସମାନରୂପେ ପରିପୁଷ୍ଟ ଓ ଶକ୍ତିସମ୍ପନ୍ନ ହେବ, ସେଥିପ୍ରତି ସମସ୍ତଙ୍କର ତୀକ୍ଷ୍ଣ ଦୃଷ୍ଟି ରଖିବା କର୍ତ୍ତବ୍ୟ । ଦୁର୍ଭାଗ୍ୟର ବିଷୟ ଏହି ଯେ, ଅନେକ ସ୍ଥଳରେ ଭ୍ରାନ୍ତବୁଦ୍ଧି ମନୁଷ୍ୟ ଏହି ଅତ୍ୟାବଶ୍ୟକ ବିଷୟ ପ୍ରତି ଅମନୋଯୋଗୀ ହୋଇ ନିଜେ ନିଜର ଉନ୍ନତିପଥର କଣ୍ଟକ ହୁଏ । ପୁରୁଷ ପ୍ରକୃତିରେ ସାହସ, ବୀର୍ଯ୍ୟ, ଆତ୍ମନିର୍ଭର ପ୍ରଭୃତି ଗୁଣଗୁଡ଼ିକ ପ୍ରଧାନ । ରମଣୀଗଣ ସାଧାରଣତଃ ଦୁର୍ବଳା, ଶାନ୍ତ, ଲଜ୍ଜାଶୀଳା ଓ ପୁରୁଷ ପଦାନୁସାରିଣୀ—ତେଣୁ ସେମାନେ ପଦେ ପଦେ ଉପେକ୍ଷିତା ହୋଇ ମୋହାନ୍ଧ ସ୍ୱାର୍ଥପର ବ୍ୟକ୍ତିମାନଙ୍କ ଦ୍ୱାରା ପଦଦଳିତ ଓ ପରିପିଷ୍ଟ ହୁଅନ୍ତି । ଯେଉଁ ସମାଜରେ ନାରୀ ପୁରୁଷର ଦଶୋଟି ଭୋଗ୍ୟବସ୍ତୁ ମଧ୍ୟରେ ଗୋଟିଏ—ତାହାର ବିଳାସ ବାସନା ପରିତୃପ୍ତିର

ଗୋଟିଏ ଉପକରଣ ମାତ୍ର, ସେ ସମାଜ କଦାପି ପ୍ରକୃତ ଉନ୍ନତିମାର୍ଗରେ ଅଗ୍ରସର ହୋଇ ନ ପାରେ। ପ୍ରାଚୀନକାଳର ଉନ୍ନତ ଜାତିମାନଙ୍କର ଓ ଇଦାନୀନ୍ତନ ସଭ୍ୟ ଜାତିମାନଙ୍କର ଗତି ପର୍ଯ୍ୟାଲୋଚନା କଲେ ସୁସ୍ପଷ୍ଟରୂପେ ଜଣାଯିବ ଯେ, ଯେଉଁ ଜାତିମଧ୍ୟରେ ନାରୀଜାତିର ସମ୍ମାନ ଓ ଅଧିକାର ଯେତିକି ବଢ଼ିଅଛି, ସେହି ଜାତି ସେତିକି ଉନ୍ନତିର ଉଚ୍ଚତର ସୋପାନରେ ଅଧିରୂଢ଼ ହୋଇଅଛି। ସମାଜତତ୍ତ୍ୱଜ୍ଞ ମହର୍ଷି ମନୁ କହିଅଛନ୍ତି "ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ।"

ପ୍ରାଚୀନ ଓ ଅଧୁନିକ ଭାରତର ନାରୀଗଣଙ୍କ ଅବସ୍ଥା ମଧ୍ୟରେ ଆକାଶ ପାତାଳ ପ୍ରଭେଦ। କେଉଁ ରମଣୀ ସ୍ୱାମୀ-ସନ୍ନିଧାନରେ ଉପ-ବେଶନ କରି ଗଭୀର ବ୍ରହ୍ମତତ୍ତ୍ୱ ଆଲୋଚନାରେ ଜୀବନ ସାର୍ଥକ କରି-ଅଛନ୍ତି; କେହି ବେଦର ସୂକ୍ତ ରଚନା କରି ଅକ୍ଷୟ କୀର୍ତ୍ତି ଲାଭ କରି ଅଛନ୍ତି; କୌଣସି କୌଣସି ରମଣୀକୁଳ—ମଣ୍ଡନା ଗଣିତ ଓ ଜ୍ୟୋତିଷ ଶାସ୍ତ୍ରର ଆଲୋଚନାରେ ଜୀବନ ଉତ୍ସର୍ଗ କରି ନାରୀପ୍ରତିଭାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ପ୍ରଦର୍ଶନ କରିଅଛନ୍ତି; ଅନ୍ତଃପୁରସ୍ଥା ରାଜମହିଷୀଗଣ ପ୍ରକାଶ୍ୟ ସଭାସ୍ଥଳରେ ଉପସ୍ଥିତ ହୋଇ ଅମାତ୍ୟବର୍ଗଙ୍କ ସହିତ ରାଜକାର୍ଯ୍ୟ ପରିଚାଳନ ବିଷୟରେ ମନ୍ତ୍ରଣା କରିଅଛନ୍ତି, କେତେ ରମଣୀ ଯୋଦ୍ଧୃବେଶରେ ଭୀଷଣ ରଣକ୍ଷେତ୍ରରେ ପ୍ରବେଶ କରି ଅସାଧାରଣ ଶକ୍ତି ସାମର୍ଥ୍ୟ ଦେଖାଇଅଛନ୍ତି, ଅନ୍ୟ କେହି ଭୀତିଶୂନ୍ୟ ହୃଦୟରେ ତୀର୍ଥାନ୍ୱେଷଣରେ ନାନା ପ୍ରଦେଶ ପରିଭ୍ରମଣ କରି ନିଜର ଜ୍ଞାନଲାଳସା ଓ ସୌନ୍ଦର୍ଯ୍ୟପିପାସା ଚରିତାର୍ଥ କରିଅଛନ୍ତି; ଏହିପରି ପ୍ରାଚୀନ ଭାରତରେ ନାରୀଜାତିର ଅଧିକାର ସକଳ ବିଷୟରେ ଅପ୍ରତିହତ ଥିଲା। ମାତ୍ର ବର୍ତ୍ତମାନକାଳର ରମଣୀମାନଙ୍କ ହୀନାବସ୍ଥା ଚକ୍ଷୁଷ୍ମାନ୍ ବ୍ୟକ୍ତିମାତ୍ରକେ ପ୍ରତ୍ୟକ୍ଷ କରୁଅଛନ୍ତି। କରଷ୍ଟମ୍ଭ ପିଞ୍ଜରାବଦ୍ଧ କୁଳକାମିନୀଗଣ କପରି ବିଷାଦରେ ଏବଂ ଯନ୍ତ୍ରଣାରେ ଦିନ କଟାଉଅଛନ୍ତି, ତାହା କାହାରି ଅଗୋଚର ନାହିଁ। ନାରୀଜାତିର ଧର୍ମ ବ୍ରତ ଉପବାସ ପର୍ଯ୍ୟନ୍ତ; ଚିନ୍ତା ରନ୍ଧନଶାଳା ଓ ଶୟନଗୃହ ଅଥବା ବସନ ଭୂଷଣରେ ପର୍ଯ୍ୟବସିତ;

ଗଣ୍ଡିବଦ୍ଧ ଅନ୍ତଃପୁରର ପ୍ରାଚୀର ମଧ୍ୟରେ ନିବଦ୍ଧ । ଏପରି ଅବସ୍ଥାରେ ସମାଜର ରସାତଳଗତି ଅନିବାର୍ଯ୍ୟ ।

ମନୁଷ୍ୟ ମାତ୍ରକେ ସମସ୍ତଙ୍କର ଲକ୍ଷ୍ୟ ଉନ୍ନତି । ଜ୍ଞାନ-ଧର୍ମରେ ନିରନ୍ତର ଅଗ୍ରସର ହେବା ଜୀବନର ଶ୍ରେଷ୍ଠ ଉଦ୍ଦେଶ୍ୟ । ସମାଜ ଯେତିକି ଏହି ଉଦ୍ଦେଶ୍ୟ ସାଧନରେ ଅନୁକୂଳ ହୁଏ, ସେତିକି ଏହା ଆମ୍ଭମାନଙ୍କର ଉପଯୋଗୀ । ଏହା ଗୋଟିଏ ବୃହତ୍ ପରିବାରସ୍ଥ ବ୍ୟକ୍ତିଗଣଙ୍କର ସୁଖ ସ୍ୱଚ୍ଛନ୍ଦତା ଓ ଜ୍ଞାନ ଧର୍ମର ଉନ୍ନତି ନିମିତ୍ତ ପ୍ରତ୍ୟେକେ ପ୍ରତ୍ୟେକଙ୍କ ନିକଟରେ ଦାୟୀ ଓ ପ୍ରତ୍ୟେକଙ୍କ ହୃଦୟରେ ଏହି ଦାୟିତ୍ୱବୋଧ ନ ଜନ୍ମିଲେ ଗୃହ କଦାଚ ସୁଖର ସ୍ଥାନ ହୋଇ ନ ପାରେ । ସେହିପରି ସମାଜର ମଙ୍ଗଳସାଧନ ନିମିତ୍ତ ଆମ୍ଭେମାନେ ପ୍ରତ୍ୟେକେ ଦାୟୀ । ନିଜେ ଉନ୍ନତ ଓ ସତ୍ ହୋଇ ଅନ୍ୟକୁ ଉନ୍ନତ ଓ ସତ୍ କରିବାକୁ ଆପଣାର ଶକ୍ତି ସାମର୍ଥ୍ୟ ନିୟୋଜିତ କରିବା ସମସ୍ତଙ୍କର କର୍ତ୍ତବ୍ୟ ।

ଉନ୍ନତିର ଏକମାତ୍ର ଉପାୟ ଶିକ୍ଷା । ଶିକ୍ଷା ଅଭାବରେ ମନୁଷ୍ୟ ଅନ୍ଧ—ମନୁଷ୍ୟ ପଶୁ । କି ପୁରୁଷ, କି ରମଣୀ, କି ଧନୀ, କି ଦରିଦ୍ର, ସମସ୍ତଙ୍କ ପକ୍ଷରେ ଶିକ୍ଷା ଅବଶ୍ୟ ଲଭ୍ୟ । ଅବସ୍ଥାଭେଦ ହେତୁରୁ ସମସ୍ତଙ୍କ ପକ୍ଷରେ ସମାନ ଶିକ୍ଷା ସମ୍ଭବପର ହୋଇ ନ ପାରେ । ଯେଉଁମାନଙ୍କର ସଙ୍ଗତି ଓ ସୁଯୋଗ ଅଛି, ସେମାନେ ଉଚ୍ଚଶ୍ରେଣୀର କାବ୍ୟ, ଦର୍ଶନ, ବିଜ୍ଞାନ, ଜ୍ୟୋତିଷର ଆଲୋଚନାରେ ଜୀବନ ଉତ୍ସର୍ଗ କରି କୃତାର୍ଥ ହେଉନ୍ତୁ ଓ ସମାଜକୁ କୃତାର୍ଥ କରନ୍ତୁ କିନ୍ତୁ ସଂସାରରେ ସମସ୍ତଙ୍କ ଭାଗ୍ୟରେ କି ତାହା ଘଟିପାରେ ? ପୃଥିବୀର ବାର ଅଣା ଲୋକ ଉଦରଜ୍ୱାଳାରେ ଓ ପରିବାର ପ୍ରତିପାଳନ ଚିନ୍ତାରେ ଅସ୍ଥିର; ଜ୍ଞାନ ବିଜ୍ଞାନ ଚର୍ଚ୍ଚାରେ ଜୀବନ ଦେବେ କିପରି ? ତାହା ବୋଲି ଶିକ୍ଷାଦ୍ୱାର ସେମାନଙ୍କ ପକ୍ଷରେ ଏକାବେଳକେ ରୁଦ୍ଧ, ଏ କଥା ବୋଲିବା ଅସଙ୍ଗତ । ମନୁଷ୍ୟର ଅବଶ୍ୟ ଜ୍ଞାତବ୍ୟ କେତେଗୁଡ଼ିଏ ସାଧାରଣ ବିଷୟ ଅଛି—ତାହା ଯେପରି ସମସ୍ତେ ଲାଭ କରିପାରନ୍ତି, ସେଥିପ୍ରତି ଦୃଷ୍ଟି ରଖିବା ସର୍ବତୋଭାବେ ବିଧେୟ ।

ଇତିହାସ, ଭୂଗୋଳ, ଗଣିତ, ବିଜ୍ଞାନ ପ୍ରଭୃତିରେ ସାଧାରଣ ଜ୍ଞାନ ପ୍ରତ୍ୟେକ ବ୍ୟକ୍ତି ପକ୍ଷରେ ପ୍ରୟୋଜନୀୟ । ପରନ୍ତୁ ଧର୍ମସମ୍ବନ୍ଧୀୟ ଓ ନୀତି-ବିଷୟକ ପୁସ୍ତକ ଓ ସୁରୁଚିସମ୍ପନ୍ନ କାବ୍ୟ ଉପନ୍ୟାସାଦି ପାଠ ନ କଲେ ହୃଦୟ ଉନ୍ନତ ହୁଏ ନାହିଁ, ରୁଚି ମାର୍ଜିତ ହୁଏ ନାହିଁ ଓ ଭାବ ବିକଶିତ ହୁଏ ନାହିଁ । ସୁତରାଂ ଏଗୁଡ଼ିକ ମଧ୍ୟ ଅତ୍ୟାବଶ୍ୟକ । ଜନସାଧାରଣଙ୍କ ପକ୍ଷରେ ଏହା ଯେ ଅସମ୍ଭବ, ଆମ୍ଭେମାନେ ଏହା ବିଶ୍ୱାସ କରି ନ ପାରୁ ଅଛୁ, ଯତ୍ନ ଓ ସମୟର ନିୟମିତ ବିଭାଗଦ୍ୱାରା ସମସ୍ତେ ଏ ଶିକ୍ଷା ଲାଭ କରିପାରନ୍ତି ଓ ଆମରଣ ଉନ୍ନତିପଥରେ ଅଗ୍ରସର ହୋଇପାରନ୍ତି ।

ଆମ୍ଭମାନଙ୍କ ଦେଶରେ ପୂର୍ବକାଳରେ ନାରୀଶିକ୍ଷା ପ୍ରଚଳିତ ଥିଲା, ଏ ବିଷୟରେ ଭୂରି ଭୂରି ପ୍ରମାଣ ରହିଅଛି, କିନ୍ତୁ ଆଜିକାଲି ଅନେକ ଏକଦେଶଦର୍ଶୀ ସ୍ୱାର୍ଥାନ୍ଧ ବ୍ୟକ୍ତି ସ୍ତ୍ରୀଶିକ୍ଷାର ଉନ୍ନତିର ପ୍ରତିକୂଳାଚରଣ କରି ଦେଶର ଘୋର ଅନିଷ୍ଟ ସାଧନ କରୁଅଛନ୍ତି—ଶିକ୍ଷିତା ରମଣୀଙ୍କୁ ନାନା ପ୍ରକାର ଉପହାସ ବିଦ୍ରୂପ କରୁଅଛନ୍ତି—ଅକାରଣରେ କେତେ ଅପବାଦ ଦେଉଅଛନ୍ତି । ଅବିବେକିତା ହେତୁରୁ କୌଣସିଠାରେ ଯଦି ଶିକ୍ଷା ବିଭ୍ରାଟ ଘଟିନାହିଁ ବା ଘଟିବ ନାହିଁ, ଆମ୍ଭେମାନେ ଏହା କହୁନାହୁଁ । ଏ ସଂସାରରେ ଏପରି କି ବିଷୟ ଅଛି, ମନୁଷ୍ୟ ଯାହାର ଅପବ୍ୟବହାର କରେ ନାହିଁ ? ସେଥିପାଇଁ କି ସଂସାରର ତାବତୀୟ ବସ୍ତୁ ନିନ୍ଦନୀୟ ଓ ପରିତ୍ୟାଜ୍ୟ ହୋଇପାରେ ? ଧର୍ମର ନାମରେ ମନୁଷ୍ୟ କେତେ ଭୀଷଣ କାଣ୍ଡ ଅଭିନୟ କରୁଅଛି, ସେଥିପାଇଁ କି ପ୍ରକୃତ ଧର୍ମ ଅବଜ୍ଞେୟ ? ଶିକ୍ଷା ଲାଭ କରି ଲୋକେ ଧର୍ମ ଓ ନୀତିର ମସ୍ତକରେ ପଦାଘାତ କରି ଶିକ୍ଷାର ନାମରେ କଳଙ୍କ ଆନୟନ କରୁଅଛନ୍ତି, ତାହା ବୋଲି ଶିକ୍ଷା ଏ ସମସ୍ତର ମୂଳ, ଏ କଥା କହିବା କି ଯୁକ୍ତିସଙ୍ଗତ ? ବର୍ତ୍ତମାନ ପ୍ରଚଳିତ ବିଦ୍ୟାଳୟର ଶିକ୍ଷା ସ୍ୱଭାବତଃ ଅସମ୍ପୂର୍ଣ୍ଣ, ତହିଁରେ ପୁଣି ସ୍ତ୍ରୀଶିକ୍ଷା ଆହୁରି ଅସମ୍ପୂର୍ଣ୍ଣ । ଏପରି ଅବସ୍ଥାରେ ଦୋଷ ପ୍ରବେଶ କରିବା ଅତ୍ୟନ୍ତ ସମ୍ଭବପର, କିନ୍ତୁ ଆମ୍ଭେମାନେ ପଚାରୁ, ଅଧିକାଂଶ ସ୍ଥଳରେ ପୁରୁଷମାନଙ୍କ ଅବିବେଚକତା ଓ ଔଦାସୀନ୍ୟ କି ଏଥିର କାରଣ ନୁହେଁ ?

ସେ ଯାହାହେଉ ଶିକ୍ଷିତା ରମଣୀ ମାତ୍ରେ ଯେ ଜଘନ୍ୟା, ଏ କଥା କଦାଚ ବୋଲିଯାଇ ନ ପାରେ । ପକ୍ଷାନ୍ତରେ ଶିକ୍ଷାବିହୀନ ନାରୀଗଣ କି ସମସ୍ତେ ଗଙ୍ଗାଜଳ ପରି ସ୍ୱଚ୍ଛ ଓ ପବିତ୍ର ?

ଅବସ୍ଥା ଚକ୍ରରେ ସଂଗ୍ରାମ କରି ମନୁଷ୍ୟ ଜୟଲାଭ କରିପାରେ, କିନ୍ତୁ କାଳର ପ୍ରତିକୂଳାଚରଣ କଲେ ତାହାକୁ ନିଶ୍ଚୟ ବିଡ଼ମ୍ବିତ ହେବାକୁ ହେବ । ଏହାର ନିର୍ଦ୍ଦିଷ୍ଟ ପଥ ପରିତ୍ୟାଗ କଲେ ବା ସୀମା ଲଙ୍ଘନ କଲେ ଅମ୍ଭମାନଙ୍କର ନିସ୍ତାର ନାହିଁ । ଏ ଦର୍ପଣ ନିରୂପଣ କରିବା ବଡ଼ ଦୁରୂହ ବ୍ୟାପାର, ତାହା ନ ହେବାରୁ ମନୁଷ୍ୟସମାଜ ବାରମ୍ବାର ଅଧଃପତିତ ଓ ଲାଞ୍ଛିତ ହେଉଅଛି । ବହୁକାଳବ୍ୟାପୀ ଅନ୍ଧକାରବାସ ପରେ ଭାରତବାସୀ ପୁନର୍ବାର ନୂତନ ଆଲୋକକୁ ଆଗତ ହୋଇଅଛନ୍ତି—କାଳ ଏହି ପରିବର୍ତ୍ତନର ସଂଘଟନକାରୀ । ଯେ ଏହାର ଆଦେଶ ନ ଶୁଣି ସେହି ଅନ୍ଧକାର ମଧ୍ୟରେ ଲୁକ୍କାୟିତ ରହିବାକୁ ଇଚ୍ଛା କରିବ, ସେ ନିଶ୍ଚୟ ଗମ୍ଭୀରତର କୂପରେ ନିମଜ୍ଜିତ ହେବ । ପୁଣି ବହୁକାଳ ପରେ ଆଲୋକକୁ ଆଗତ ହୋଇଅଛି ବୋଲି ଯେଉଁ ବ୍ୟକ୍ତି ବିହ୍ୱଳ ହୋଇ ଉଚ୍ଛୃଙ୍ଖଳ ଭାବରେ ଇତସ୍ତତଃ ପ୍ରଧାବିତ ହେବ, ତାହାର ଚରଣରେ ଅବଶ୍ୟ କଣ୍ଟକ ବିଦ୍ଧ ହେବ—ସେ ଅଚିରେ ଶକ୍ତି ସାମର୍ଥ୍ୟ ହରାଇ ଜୀବନର ଆଶା ବିସର୍ଜନ ଦେଇ ଘୋର ଅରଣ୍ୟ ମଧ୍ୟରେ କେଉଁଠାରେ ପଡ଼ିରହିବ । ପରିବର୍ତ୍ତନ ପ୍ରକୃତପକ୍ଷେ ମାନବୋନ୍ନତିର ସୋପାନ, କିନ୍ତୁ ପ୍ରତ୍ୟେକ ପରିବର୍ତ୍ତନ କାଳରେ ଅତି ସତର୍କତା ସହିତ ପଦବିକ୍ଷେପ ନ କଲେ ପଦେ ପଦେ ବିପଦ । ଭାରତବାସୀ ବର୍ତ୍ତମାନ ସେହି ବିଷମ ସଙ୍କଟ ସ୍ଥଳରେ ଉପସ୍ଥିତ। ଧର୍ମ, ନୀତି, ସମାଜ, ଆହାର, ପରିଚ୍ଛଦ ସକଳ ବିଷୟରେ ଭାରତବାସୀ ଅଜ୍ଞାନରେ ହେଉ ବା ସଜ୍ଞାନରେ ହେଉ ପ୍ରବଳ ପରିବର୍ତ୍ତନ ସ୍ରୋତରେ ଚାଳିତ ହେଉଅଛନ୍ତି, ଏଥିରେ ଭଲେ ମାତ୍ର ସନ୍ଦେହ ନାହିଁ । ପାଶ୍ଚାତ୍ୟ ସଭ୍ୟତାର ଆଲୋକ ଗୃହେ ଗୃହେ ପ୍ରବେଶ କରି ସମସ୍ତଙ୍କର ନିଦ୍ରା ଭାଙ୍ଗୁଅଛି—ଏଥିରେ ଭଲ ମନ୍ଦ ଉଭୟ ଅଛିଅଛି । କେଉଁଟି ଗ୍ରହଣୀୟ

ଓ କେଉଁକି ବର୍ଜନୀୟ, ତାହା ଭବିଷ୍ୟତବାସୀଙ୍କର ବିବେଚନାଧୀନ। ସମାଲୋଚିତ ପକ୍ଷରେ ସ୍ତ୍ରୀ-ଶିକ୍ଷା ଏକାନ୍ତ ପ୍ରୟୋଜନୀୟ। ପାରିବାରିକ ସୁଖ ସ୍ୱଚ୍ଛନ୍ଦତା ମଧ୍ୟ ଏହା ଉପରେ ବହୁ ପରିମାଣରେ ନିର୍ଭର କରୁଅଛି। ପ୍ରଥମତଃ ସ୍ତ୍ରୀଶିକ୍ଷାର ଅଭାବରେ ସମାଜର ଅର୍ଦ୍ଧାଙ୍ଗ ଅକର୍ମଣ୍ୟ ହୋଇ ରହେ। ପରନ୍ତୁ ଶିକ୍ଷା ଅଭାବରେ ରମଣୀଗଣ ମାତୃଧର୍ମ ଉପଯୁକ୍ତ ରୂପେ ପାଳନ କରିବାକୁ ଅକ୍ଷମ; ଏବଂ ତାହା ନ ହେଲେ କୌଣସି ଜାତି ପ୍ରକୃତ ମହତ୍ତ୍ୱ ଲାଭ କରି ପାରେ ନାହିଁ। ଜଣେ ବିଖ୍ୟାତ ପଣ୍ଡିତ କହିଅଛନ୍ତି, "ଯେଉଁ ଜାତି ମଧ୍ୟରେ ଉପଯୁକ୍ତ ରୂପେ ମାତୃଧର୍ମ ପାଳିତ ହୁଏ, ସେ ଜାତି ଧୀର, ବୀର, ଜ୍ଞାନୀ ଓ ସଚ୍ଚରିତ୍ର।" ଭୁବନବିଖ୍ୟାତ ମହାବୀର ନେପୋଲିଅନ କହିଅଛନ୍ତି, "ଫ୍ରାନ୍ସର ପ୍ରଧାନ ଅଭାବ "ମାତା"; ଏହି ଅଭାବ ପୂର୍ଣ୍ଣ ନ ହେଲେ ଫରାସୀ ଜାତିର ପ୍ରକୃତ ଉନ୍ନତି ଅସମ୍ଭବ।" ବାସ୍ତବିକ ଜନନୀ ତୁଲ୍ୟ ଶିକ୍ଷକ ଜଗତରେ କିଏ ଅଛି? ପରିବାର ତୁଲ୍ୟ ପ୍ରେମ ପବିତ୍ରତା ଶିକ୍ଷାର ଦ୍ୱିତୀୟ ସ୍ଥାନ କେଉଁଠାରେ? ବିଦ୍ୟାଳୟରେ ସହସ୍ର ଶିକ୍ଷା ପ୍ରାପ୍ତ ହେଲେହେଁ ଗୃହ ଆମ୍ଭମାନଙ୍କର ଚରିତ୍ର ସଗଠନର ପ୍ରକୃତ ସ୍ଥାନ। ଅବସ୍ଥାର ଶତ ସଙ୍ଘର୍ଷଣ ମନୁଷ୍ୟର ପାରିବାରିକ ଶିକ୍ଷାକୁ ସମ୍ପୂର୍ଣ୍ଣରୂପେ ଲୋପ କରିପାରେ ନାହିଁ। ଆମ୍ଭମାନଙ୍କ ଦେଶରେ ବର୍ତ୍ତମାନ ପାରିବାରିକ ଶିକ୍ଷାର ଏକାନ୍ତ ଅଭାବ ହୋଇଅଛି। ତାହାର କାରଣ "ମାତା"ର ଅଭାବ। ଜନନୀଗଣ ଶିକ୍ଷିତା ହେଲେ ଶିଶୁର ପ୍ରାଥମିକ ଶିକ୍ଷା ଘରେ ଘରେ ଅନାୟାସରେ ଚାଲିପାରେ। କି ରୂପେ ସନ୍ତାନ ପାଳନ କରିବାକୁ ହେବ, କି ରୂପେ ବା ତାହାର ଶରୀର ମନ ବିକଶିତ ହେବ, ଇତ୍ୟାଦି ବିଷୟରେ ସମ୍ୟକ୍ ଜ୍ଞାନ ନ ଜନ୍ମିଲେ କେହି ମାତା ହୋଇ ନ ପାରେ। ନିଜେ ମନୁଷ୍ୟ ନ ହେଲେ ଅନ୍ୟକୁ ମନୁଷ୍ୟ କରିବ କିପରି? ତତ୍ପରେ ପରିବାର ମଧ୍ୟରେ ଗୃହିଣୀର ଦାୟିତ୍ୱ ଅନେକ। ଉପଯୁକ୍ତ ଶିକ୍ଷା ନ ପାଇଲେ ସେ ଦାୟିତ୍ୱବୋଧ ଜନ୍ମିବ କିପରି? ତାହା ସୁସମ୍ପନ୍ନ ହେବ ବା କିପରି? ପୁରୁଷଗଣ ଅଧିକାଂଶ ସମୟ ବହିର୍ବିଷୟରେ ଲିପ୍ତ—ଘର ବାହାର ଉଭୟ ଆଡ଼ ରକ୍ଷା କରିବା ସେମାନଙ୍କ ପକ୍ଷରେ

ଅତ୍ୟନ୍ତ କଠିନ; ଏହି ଚିନ୍ତାରେ ଅଧିକାଂଶ ଗୃହସ୍ଥ ବ୍ୟତିବ୍ୟସ୍ତ । ଗୃହିଣୀ ଯେବେ ସୁଗୃହିଣୀ ହୁଅନ୍ତି—ଗୃହସଂସାରର ବନ୍ଦୋବସ୍ତ, ଅର୍ଥାଦିର ସଦ୍‌ବ୍ୟବହାର, ଦାସଦାସୀଙ୍କର ଉପଯୁକ୍ତ ପରିଚାଳନ, ନାନାପଦାର୍ଥର ଦୋଷ ଗୁଣ ଜ୍ଞାନ, ଅନ୍ୟ ସହିତ ନ୍ୟାୟାନୁଗତ ବ୍ୟବହାର—ଏକ କଥାରେ ଯାହାକୁ କଷ୍ଟସୂଚକ ବୋଲିଯାଏ—ଗୃହିଣୀ ଯେବେ ସେ ବିଷୟରେ ସୁନିପୁଣା ହୁଅନ୍ତି, ତାହାହେଲେ ପୁରୁଷର ଆଉ ଭାବନା କଣ ? ଏହା ନିଶ୍ଚିତ କଥା ଯେ ଏଗୁଡ଼ିକ ଶିକ୍ଷା ସାପେକ୍ଷ । ଅମ୍ଭେମାନେ ଏ ସ୍ଥଳରେ ଶିକ୍ଷା ଶବ୍ଦରେ କେବଳ ପୁସ୍ତକଗତ ଶିକ୍ଷା କହୁନାହୁଁ, ପୁସ୍ତକପାଠରେ ଆମ୍ଭମାନଙ୍କର ଜ୍ଞାନ ବୃଦ୍ଧି ହୁଏ ସତ୍ୟ, କିନ୍ତୁ ବ୍ୟବହାରଗତ ଶିକ୍ଷା ସ୍ୱତନ୍ତ୍ର ଏବଂ ତାହାହିଁ ଜୀବନର ପ୍ରକୃତ ଶିକ୍ଷା । ପୁସ୍ତକାଦି ପାଠରେ ସେ ଶିକ୍ଷାର ସାହାଯ୍ୟ ହୁଏ ମାତ୍ର । ପୁଣି ନାରୀ ପୁରୁଷର ଅର୍ଦ୍ଧାଙ୍ଗ ବୋଲି ପ୍ରସିଦ୍ଧ । ପରସ୍ପର ପରସ୍ପରଙ୍କର ଜୀବନପଥର ସଙ୍ଗୀ ଓ ସହାୟ; ଉଭୟ ମିଳିତ ହୋଇ ସଂସାରର ସୁଖ ଦୁଃଖ ଭୋଗ କରିବେ; ବିପଦ ପରୀକ୍ଷା ବହନ କରିବେ । ଏପରି ଅବସ୍ଥାରେ ଯେବେ ପରସ୍ପରଙ୍କ ହୃଦୟର ଭାବ ଓ ଚିନ୍ତା ବିନିମୟ କରିବାର ପନ୍ଥା ନ ରହିଲା—ଜଣେ ଅନ୍ୟ ଜଣଙ୍କର ଭାବ ଗ୍ରହଣରେ ଅସମର୍ଥ ହେଲା—ଯେବେ ଅର୍ଦ୍ଧାଙ୍ଗ ଅକର୍ମଣ୍ୟ ହୋଇ ପଡ଼ି ରହିଲା, ତେବେ ସେ ସଂସାରରେ ସୁଖ ଶାନ୍ତିର ଆଶା କେଉଁଠାରେ ? ତାହା କି ରୂପେ ବା ମନୁଷ୍ୟର ଉନ୍ନତିର ସହାୟ ହେବ ? ଆମ୍ଭେମାନେ ଏହାର ବିଷମୟ ଫଳ ବର୍ତ୍ତମାନ ଅନେକ ସ୍ଥଳରେ ପ୍ରତ୍ୟକ୍ଷ କରୁଅଛୁଁ ।

ଏହିପରି ନାନା କାରଣରୁ ସ୍ତ୍ରୀଶିକ୍ଷା ସମାଜୋନ୍ନତି ଓ ପାରିବାରିକ ସୁଖ ଶାନ୍ତି ଉଭୟ ପକ୍ଷରେ ଏକାନ୍ତ ପ୍ରୟୋଜନୀୟ । ଅମ୍ଭମାନଙ୍କ ଭାଗ୍ୟରେ ଯାହା ଘଟିବାର ଘଟିଅଛି; ଜାଣି ଶୁଣି କାହିଁକି ଭବିଷ୍ୟତ୍ ବଂଶକୁ ଏଥିରୁ ବଞ୍ଚିତ କରିବୁଁ ? ଅତଏବ କି ଉପାୟରେ ତାହା ସୁଚାରୁ ରୂପେ ସମ୍ପନ୍ନ ହେବ, ଏହା ପ୍ରତ୍ୟେକ ହୃଦୟବାନ୍ ଓ ଚିନ୍ତାଶୀଳ ବ୍ୟକ୍ତିର ବିଚାରର ବିଷୟ । ଅମ୍ଭେମାନେ ଏଠାରେ କେତେ ଗୋଟି

ସାଧାରଣ ଉପାୟ ନିର୍ଦ୍ଦେଶ କରି ପ୍ରବନ୍ଧର ଉପସଂହାର କରିବୁଁ । ସମୟର ସୀମା ଲଙ୍ଘନ କରି ଆମ୍ଭେମାନେ କୌଣସି କଥା କହିବୁଁ ନାହିଁ ।

ବାଲ୍ୟବିବାହ ଓ ଅବରୋଧପ୍ରଥା ଏ ଦୁଇଟି ହିନ୍ଦୁରମଣୀର ଉଚ୍ଚଶିକ୍ଷା ଲାଭର ପ୍ରଧାନ ଅନ୍ତରାୟ । ଏହାର ପ୍ରଭାବରେ ଭାରତରମଣୀ ସାହସ, ପ୍ରତିଭା ପ୍ରଭୃତି ହରାଇ ମୃତବତ୍ ହୋଇ ଅଛନ୍ତି । ଶିକ୍ଷାର ପ୍ରକୃତ ସମୟ ଆରମ୍ଭ ନ ହେଉଣୁ ତାହାର ଦ୍ୱାର ରୁଦ୍ଧ । ପୁଣି ନାନା ସ୍ଥାନରେ ନାନା ବିଷୟ ଦର୍ଶନ କରି ଯେଉଁ ମହାଶିକ୍ଷା ଲାଭ ହୁଏ, ସେଥିରୁ ଏମାନେ ଏକାବେଳକେ ବଞ୍ଚିତ । ନିଜ ଜୀବନର ଦାୟିତ୍ୱ ନ ବୁଝୁଣୁ ଅନେକ ବଡ଼ ଏ ଦାୟିତ୍ୱ ଆସି ମୁଣ୍ଡରେ ପଡ଼େ, ନିଜେ ମନୁଷ୍ୟ ନୋହୁଣୁ ଅନ୍ୟକୁ ମନୁଷ୍ୟ କରିବାର ଗୁରୁତର କର୍ତ୍ତବ୍ୟ ଆସି ଉପସ୍ଥିତ ହୁଏ । ସେ ଯାହାହେଉ, କାଳର ପ୍ରଭାବରେ ଏ ଦୁଇ ଅକଲ୍ୟାଣକର ନିୟମର କଠୋରତା କ୍ରମେ ହ୍ରାସ ପାଉଅଛି । କିନ୍ତୁ ସମ୍ପୂର୍ଣ୍ଣ ଦୂର ହେବା ସମୟ-ସାପେକ୍ଷ । ଆମ୍ଭେମାନେ ଇଚ୍ଛା କରିବା ମାତ୍ରକେ ଏହା ଏକ ଦିନରେ ଭାରତ ଛାଡ଼ି ପଳାଇବ ନାହିଁ । ଯେଉଁମାନେ ଏହା ଦୂର କରିଅଛନ୍ତି ବା କରିବାକୁ ପ୍ରସ୍ତୁତ ହୋଇଅଛନ୍ତି, ସେମାନଙ୍କ ସାହସ ଓ ଉତ୍ସାହକୁ ଅନ୍ତରର ସହିତ ପ୍ରଶଂସା କରୁଅଛୁଁ । କେବଳ ସେମାନଙ୍କ ପ୍ରତି ବକ୍ତବ୍ୟ ଏତିକି ଯେ, ସେମାନେ ଅତି ସାବଧାନତା ସହକାରେ ପଥ ଚାଲନ୍ତୁ, ନଚେତ୍ ନିଜେ ଅତଳ ସାଗରରେ ବୁଡ଼ିବେ ଓ ଦେଶର ଉନ୍ନତି ପଥରେ କଣ୍ଟକ ନିକ୍ଷେପ କରିବେ । ଯେଉଁ ସ୍ଥଳରେ ବାଲ୍ୟବିବାହ ଓ ଅବରୋଧପ୍ରଥା ପ୍ରଚଳିତ, ସେ ସ୍ଥଳରେ ସ୍ତ୍ରୀଶିକ୍ଷାର ଭାର ପିତା, ଭ୍ରାତା ଓ ସ୍ୱାମୀ ଏହିମାନଙ୍କ ଉପରେ ନିର୍ଭର କରୁଅଛି । ଯେତେଦୂର ସମ୍ଭବ, ବିଦ୍ୟାଳୟରେ ଶିକ୍ଷା ଦେବା ଉପରେ ନିଜ ନିଜ ଗୃହରେ ପରିବାରସ୍ଥା ବାଳିକା ଓ ଯୁବତୀମାନଙ୍କୁ ଜମ୍ବୁରିତ ରୂପେ ନାନା ବିଷୟରେ ଶିକ୍ଷା ଦେବାକୁ ପ୍ରତ୍ୟେକ ଗୃହସ୍ଥ ଯତ୍ନବାନ୍ ହେଲେ ନିଜର ଓ ସମାଜର ପ୍ରଭୂତ ଉପକାର ସାଧିତ ହୋଇପାରେ । ବିଦ୍ୟାଳୟରେ ସାଧାରଣତଃ

ପ୍ରଚଳିତ ପଦ୍ଧତି ଅନୁସାରେ ସାହିତ୍ୟ, ଗଣିତ, ଇତିହାସ, ବିଜ୍ଞାନ ପ୍ରଭୃତି ଯେ ସକଳ ବିଷୟରେ ଶିକ୍ଷା ପ୍ରଦତ୍ତ ହେଉଅଛି, ତାହା ସଙ୍ଗେ ସଙ୍ଗେ ବାଳିକାମାନଙ୍କୁ ଗାର୍ହସ୍ଥ୍ୟ ଧର୍ମ, ପଦାର୍ଥ ବିଦ୍ୟା, ଚିତ୍ରବିଦ୍ୟା ଓ ସଙ୍ଗୀତବିଦ୍ୟା ଏ ଗୁଡ଼ିକ ମଧ୍ୟ ଶିକ୍ଷାଦେବା ଉଚିତ । ଗୃହସଂସାରକୁ ମଧୁମୟ କରିବା ପକ୍ଷରେ ଏ ଗୁଡ଼ିକ ଅତ୍ୟୁପଯୋଗୀ । ଗୃହସ୍ଥର କର୍ତ୍ତବ୍ୟ ବଡ଼ ଗୁରୁତର । କିନ୍ତୁ ଦୁର୍ଭାଗ୍ୟର ବିଷୟ, ଅତି ଅଳ୍ପ ଲୋକେ ଏହି କର୍ତ୍ତବ୍ୟର ଗୁରୁତ୍ୱ ଅନୁଭବ କରି କାର୍ଯ୍ୟ କରନ୍ତି । ସମସ୍ତ ପରିବାର-ବର୍ଗଙ୍କୁ ଏକତ୍ର କରି ନିତ୍ୟ ନିତ୍ୟ ଧର୍ମ, ନୀତି, କାବ୍ୟ, ଉପନ୍ୟାସ, ଇତିହାସ, ବିଜ୍ଞାନ ପ୍ରଭୃତି ନାନା ବିଷୟରେ ନୂତନ ନୂତନ କଥା ଶିକ୍ଷା ଦେବେ, ସମୟାନୁସାରେ ନୂତନ ନୂତନ ସୁନ୍ଦର ସ୍ଥାନ ଓ ସୁନ୍ଦର ସୁନ୍ଦର ବସ୍ତୁ ଦେଖାଇ ସେମାନଙ୍କ ଚିନ୍ତାଶକ୍ତି ଓ ହୃଦୟର ଉଚ୍ଚ ବୃତ୍ତି-ଗୁଡ଼ିକୁ ସମ୍ୟକ୍ ବିକାଶ ପ୍ରାପ୍ତ ହେବାର ଅବସର ଓ ସୁଯୋଗ ପ୍ରଦାନ କରିବେ । ଏହା ପ୍ରତ୍ୟେକ ଭଦ୍ର ଓ ଧର୍ମନିଷ୍ଠ ଗୃହସ୍ଥର କର୍ତ୍ତବ୍ୟ । ବିଧାତା ସମସ୍ତଙ୍କୁ ମନୁଷ୍ୟଜନ୍ମ ଦେଇଅଛନ୍ତି—ପଶୁତୁଲ୍ୟ କେବଳ ଆହାର ବିହାରରେ ଦିନ କଟାଇ ଧ୍ୱଂସପ୍ରାପ୍ତ ହେବାକୁ ତାହାକୁ ସୃଷ୍ଟି କରି ନାହାନ୍ତି ।

ସକଳ ଉନ୍ନତିର ଶ୍ରେଷ୍ଠ ଉନ୍ନତି ଚରିତ୍ରର ଉନ୍ନତି—ସକଳ ସୌନ୍ଦର୍ଯ୍ୟର ଶ୍ରେଷ୍ଠ ସୌନ୍ଦର୍ଯ୍ୟ ଚରିତ୍ରର ସୌନ୍ଦର୍ଯ୍ୟ; ଚରିତ୍ରହିଁ ପ୍ରକୃତ ଜୀବନ । ସର୍ବପ୍ରକାର ସୁଖ ସମୃଦ୍ଧି ଓ ବିଦ୍ୟାଲାଭ କରି ମଧ୍ୟ ଏକା ଚରିତ୍ର ଅଭାବରେ ମନୁଷ୍ୟର ଜୀବନ ଅସାର । ଚରିତ୍ରର ଉତ୍କର୍ଷ ସାଧନ ପକ୍ଷରେ ପ୍ରଧାନ ସହାୟ ଉଚ୍ଚ ଆଦର୍ଶ । ଉଚ୍ଚ ଆଦର୍ଶ ସମ୍ମୁଖରେ ରଖି ସର୍ବଦା ଚରିତ୍ର ଗଠନ କରିବାକୁ ଯତ୍ନବାନ୍ ନ ହେଲେ ପ୍ରକୃତ ପକ୍ଷେ ଚରିତ୍ରର ଉନ୍ନତି ହୁଏ ନାହିଁ । ରମଣୀଗଣ ବାହ୍ୟ ସୌନ୍ଦର୍ଯ୍ୟର ବଡ଼ ପକ୍ଷପାତୀ । ସୁରୁଚି-ସମ୍ମତ ବେଶଭୂଷା ନିନ୍ଦନୀୟ ନୁହେ, କିନ୍ତୁ ଏହାଦ୍ୱାରା ଯେବେ ଶ୍ରେଷ୍ଠ ସୌନ୍ଦର୍ଯ୍ୟ ଯେ ହୃଦୟର ସୌନ୍ଦର୍ଯ୍ୟ ତତ୍ପ୍ରତି ଶ୍ରଦ୍ଧା ଓ ଆଦର କମିଯାଏ;

ତେବେ ଏହା ଘୋର ଅନିଷ୍ଟର କାରଣ ହୋଇପଡ଼େ । ଏଣୁ ରମଣୀମାନଙ୍କୁ ପୃଥିବୀର ଅନୁକରଣୀୟ-ଚରିତା ନାରୀମାନଙ୍କର ଓ ସାଧୁ ମହାତ୍ମାମାନଙ୍କର ଜୀବନଚରିତ ପାଠ କରିବାକୁ ଦେବା ଏବଂ ସର୍ବଦା ମାନସିକ ସୌନ୍ଦର୍ଯ୍ୟର ପ୍ରଶଂସା କରିବା ଦ୍ୱାରା ସେମାନଙ୍କ ଚିତ୍ତକୁ ସେ ଆଡ଼କୁ ଆକର୍ଷଣ କରିବାକୁ ଚେଷ୍ଟା କରିବା ଉଚିତ । ଅତ୍ୟନ୍ତ ମନସ୍ତାପର ବିଷୟ ଯେ, ଏ ଦେଶର ପୁରୁଷଗଣ ସ୍ତ୍ରୀମାନଙ୍କୁ ବିଳାସ-ତରଙ୍ଗରେ ଭାସମାନ ଦେଖିବାକୁ ଯେପରି ଆଗ୍ରହ ପ୍ରକାଶ କରନ୍ତି, ସେମାନଙ୍କ ହୃଦୟ ମନର ଉନ୍ନତିରେ ତାହାର ଶତାଂଶର ଏକାଂଶ ମାତ୍ର ଯତ୍ନ ଦେଖାଯାଏ ନାହିଁ । ମନୁଷ୍ୟ ବୃଥା କୋଳାହଳରେ ମତ୍ତ ନ ହୋଇ ଯେବେ ନିଜର ଓ ବିଧାତାଙ୍କ ନିର୍ଦ୍ଦେଶ ଅନୁସାରେ ଯେଉଁମାନଙ୍କ ସହିତ ସେ ଘନିଷ୍ଠଭାବରେ ସମ୍ବନ୍ଧ, ସେମାନଙ୍କ ଉନ୍ନତି କାମନାରେ ନିରନ୍ତର ନିଯୁକ୍ତ ରହନ୍ତା, ତାହାହେଲେ ପ୍ରକୃତ ପକ୍ଷେ ସମାଜର ପ୍ରକୃତ ମଙ୍ଗଳ ସାଧିତ ହୁଅନ୍ତା । ଦେଶହିତୈଷୀ "ଦେଶର ଅଭାବ, ଦେଶର ଅଭାବ" ବୋଲି ଆକାଶ କମ୍ପାଉ ଅଛନ୍ତି, ଅଥଚ ନିଜ ଗୃହର ଅଭାବ ସେମାନଙ୍କ ଚକ୍ଷୁରେ ପଡ଼େ ନାହିଁ । ଦେଶର ଅଭାବ ବ୍ୟକ୍ତିଗତ ଅଭାବର ସମଷ୍ଟି ମାତ୍ର, ତାହା ପୂର୍ଣ୍ଣ ହେଲେ ଦେଶର ଅଭାବ ପୂର୍ଣ୍ଣ ହେବ ।

ଭାରତର ଅନ୍ୟାନ୍ୟ ପ୍ରଦେଶରେ ସ୍ତ୍ରୀ ଶିକ୍ଷା ପ୍ରତି ଲୋକଙ୍କର ଦୃଷ୍ଟି ପଡ଼ିଅଛି ଏବଂ ସେଥି ନିମନ୍ତେ ନାନାବିଧ ଚେଷ୍ଟା ଓ ଯତ୍ନ ଲାଗିଅଛି । ବୁଦ୍ଧିହୀନ ଉତ୍କଳ ଅନ୍ୟାନ୍ୟ ସର୍ବପ୍ରକାର ସଂସ୍କାର କାର୍ଯ୍ୟରେ ଯେପରି ମୃତ, ଏ ବିଷୟରେ ମଧ୍ୟ ସେହିପରି । ପ୍ରକୃତ କଥା କହିବାକୁ ଗଲେ ଉତ୍କଳଭୂମିରେ ଏ ପର୍ଯ୍ୟନ୍ତ ଯଥାର୍ଥ ସ୍ତ୍ରୀଶିକ୍ଷାର ସୂତ୍ରପାତ ହୋଇନାହିଁ । ହେବ ବା କିପରି ? ଯେଉଁମାନେ କରନ୍ତେ, ସେମାନଙ୍କର କି ଜୀବନ ଅଛି । ଉତ୍ସାହ, ଉଦ୍ୟମ, ସାହସ କାହାକୁ କହନ୍ତି, ସେମାନଙ୍କୁ ଜଣାନାହିଁ । କି ହେତୁରୁ କେଜାଣି, ସେମାନେ ଏପରି ଦୃଷ୍ଟିହୀନ ଓ ବୋଧଶକ୍ତିଶୂନ୍ୟ

ହୋଇଅଛନ୍ତି ଯେ, ଚକ୍ଷୁ ଅଛି କିନ୍ତୁ ଦେଖିପାରୁ ନାହାନ୍ତି—କିଛି ଜାଣିପାରୁ ନାହାନ୍ତି—ନିଜର ହୀନତା, ଅପଦାର୍ଥତା ପର୍ଯ୍ୟନ୍ତ ସେମାନେ ବୁଝିପାରୁ ନାହାନ୍ତି । କି ଘୋର ଅଧଃପାତ ଏ ଜାତି ଉପରେ ପଡ଼ିଅଛି, କିଏ ଜାଣେ ? ବିଧାତା କେତେ ଦିନେ ଏ ଦୁର୍ଦ୍ଦଶା ଅଚିରାତ୍ ଦୂର କରିବେ, କିଏ କହିପାରେ ? ଅନେକ ବର୍ଷ ଅତୀତ ହୋଇଗଲାଣି, ଉଦ୍ୟମଶୀଳ ସତ୍‌ସାହସସମ୍ପନ୍ନ, ଉତ୍ସାହୀ ପୁରୁଷ ଏ ଦେଶରେ ଅଧିକ ଜନ୍ମିଲେ ନାହିଁ ? କିଏ ଏହାର କାରଣ ନିର୍ଦ୍ଦେଶ କରିପାରିବ ?

( ୧୪ )

# ପାରାଦ୍ୱୀପ

ଶ୍ରୀ ରାମଶଙ୍କର ରାୟ (୧୮୫୬-୧୯୩୧)

ତାଳଦଣ୍ଡାର ଅନ୍ତର ପୂର୍ବକୁ ମହାନଦୀରୁ ବାହାରିଥିବା ଏକ ପୟଃପ୍ରଣାଳୀ କଣ୍ଟକପୁର ସମୁଦ୍ରାଭିମୁଖେ ଗଲା ପରେ କୁଜଙ୍ଗ ନାମକ କ୍ଷୁଦ୍ର ନଦୀ ସହିତ ମିଳିତ ହୋଇ ବିସ୍ତୃତାକାରରେ ଭୟଙ୍କର ରୂପ ଧାରଣପୂର୍ବକ ବଙ୍ଗୋପସାଗରରେ ପତିତ ହୋଇଅଛି । ଲୋକେ ଏହାକୁ ପାଟକୁଣ୍ଡ ବୋଲନ୍ତି । ବିସ୍ତୃତ ଭୂମିଖଣ୍ଡକୁ ଜଳ ଯୋଗାଇବା ଉଦ୍ଦେଶ୍ୟରେ ବିଧାତା କୁଣ୍ଡରୂପେ ଏହାକୁ ବସାଇଥିବାରୁ ହେଉ ଅଥବା ଲୋକେ ଏହାର ଜଳ ବ୍ୟବହାର କରି ଧନ ଉପାର୍ଜ୍ଜନ ଦ୍ୱାରା ପାଟ ପିନ୍ଧୁଥିବାରୁ ହେଉ, ଏହିର ନାମ ପାଟକୁଣ୍ଡ ହୋଇଅଛି । ଉତ୍ତରକୁ ମହାନଦୀର ମୂଳଧାରା କଳନାଦରେ ବଙ୍ଗୋପସାଗରର କଣ୍ଠଧାରଣପୂର୍ବକ ଶଘ୍ରଲଙ୍ଘନରେ ସମୁଦ୍ରଭୂବାଲମ୍ବନ କରିଅଛି । ଏହି ପାଟକୁଣ୍ଡ ଓ ମହାନଦୀର ମଧ୍ୟଭାଗସ୍ଥ ଭୂଖଣ୍ଡ ଦ୍ୱୀପାକାରରେ ଦୃଶ୍ୟ ହୁଏ । ଏହାର ନାମ ପାରାଦ୍ୱୀପ ଓ ତହିଁର ମଧ୍ୟସ୍ଥଳରେ କୁଜଙ୍ଗର ବିଶାଳ ପ୍ରତାପଶାଳୀ କ୍ଷତ୍ରିୟ ରାଜାଙ୍କର ଦୁର୍ଦ୍ଧମନୀୟ ପାରାଦ୍ୱୀପ ଗଡ଼ ।

ପାଠକେ ! ଆପଣମାନଙ୍କ ମଧ୍ୟରେ ଯେ କେହି ପାରାଦ୍ୱୀପ ଗଡ଼ ଦେଖିଥିବେ ସେହି ଜାଣିଥିବେ ତହିଁର ଶୋଭା ଏକ କାଳରେ କି ଥିଲା !

କାଳର ନିୟତ ପରିବର୍ତ୍ତନଶୀଳ ଚକ୍ରରେ ପଡ଼ି ଷଣ୍ଢ ରାଜାଙ୍କର ପତନ ହେବା ସଙ୍ଗେ ସଙ୍ଗେ ସେ ସ୍ୱର୍ଗର ଛବି ପାରଦ୍ୱୀପ ଗଡ଼ର ଶୋଭା ମଧ୍ୟ ଅନ୍ତର୍ହିତ ହୋଇଅଛି । ଯେଉଁ ପାରଦ୍ୱୀପ ଏକ କାଳରେ ଅମିତ ତେଜର ମୂର୍ତ୍ତିରେ ବହୁଦୂରବର୍ତ୍ତୀ ଭୂଖଣ୍ଡକୁ ପ୍ରକମ୍ପିତ କରୁଥିଲା, ଯାହାର ଗୌରବରେ ଉତ୍କଳୀୟ ଗଜପତି ରାଜାଙ୍କର ଗୌରବ ରକ୍ଷିତ ହୋଇଥିଲା ଏବଂ ଯାହା ନାମରେ ଅତି ଦୁର୍ଜ୍ଜନ ଲୋକ ସୁଦ୍ଧା ବଶ୍ୟତା ସ୍ୱୀକାର କରୁଥିଲା, ଆଜି ସେ ପାରଦ୍ୱୀପ ଭଗ୍ନାବଶେଷରେ ପରିଣତ ହୋଇଅଛି । ଆଜି ସେହି ଷଣ୍ଢ ରାଜାଙ୍କ ବଂଶୀୟ ଲୋକମାନେ ନିଷ୍ପ୍ରଭ ହୋଇ ହୀନ ଲୋକଙ୍କ ପ୍ରାୟ ଏଣେ ତେଣେ ବୁଲୁଅଛନ୍ତି । ସେହି ଦୁର୍ଗର ପରିଖା ଓ ପୟଃପ୍ରଣାଳୀମାନ ଅଦ୍ୟାପି ରହିଅଛି, ମାତ୍ର ଜଳ ବଦଳରେ ତନ୍ମଧ୍ୟରେ ଲୋତକଧାର ପ୍ରବାହିତ ହେଉଅଛି । ସେହି ଅପୂର୍ବ ବନରାଜି ଅଦ୍ୟାପି ବିରାଜିତ ରହିଅଛି, ମାତ୍ର ଫଳଦ୍ୱାରା ତୃପ୍ତି ସାଧନ କରିବା ପରିବର୍ତ୍ତେ କଷ୍ଟ ଋଥଳ ଲୋତକଧାର ବୁହାଉଅଛି । ସେହି ଲୋକେ ଅଦ୍ୟାପି ରହିଅଛନ୍ତି, ମାତ୍ର ତେଜଃ ସ୍ଫୂର୍ତ୍ତି ସ୍ଥାନରେ ଆଳସ୍ୟ ଓ ନିସ୍ତେଜସ୍ୱିତା ଜାତ ହୋଇ ମୁଖମଣ୍ଡଳ ମଳିନ କରି ଅଶ୍ରୁଧାରାର କାରଣ ହୋଇଅଛି । ହାୟ ! ଏ ପରିବର୍ତ୍ତନର କାରଣ କଣ ? ପରିବର୍ତ୍ତନ ତ ଜଗତରେ ଲାଗିଅଛି । ଯେତେବେଳେ ଏଥିର ବିଧାତା ଗଜପତି ରାଜକୁଳର ଅପୂର୍ବ ଗୌରବ ନଷ୍ଟ ହୋଇଅଛି, ତେତେବେଳେ ଏହା କି ଅବା ଛାର ! ମାତ୍ର କାରଣ ବୁଝିବାକୁ ବସିଲେ ହୃଦୟ ବିଦୀର୍ଣ୍ଣ ହୁଏ । ଯେଉଁ ବିଳାସପ୍ରିୟତା ହେତୁ ଭାରତ ନିଷ୍ପ୍ରଭ ଓ ପରପଦାନତ ହୋଇ ସୁଦ୍ଧା ଅଦ୍ୟାପି ଉଠିପାରୁନାହିଁ, ସେହି ବିଳାସପ୍ରିୟତା ପାରଦ୍ୱୀପର ଅପୂର୍ବ ଶୋଭା ଓ ତେଜକୁ ଘୋର ପାରାବାରରେ ନିକ୍ଷେପ କରିଅଛି । କି କୁକ୍ଷଣରେ ଜନାର୍ଦ୍ଦନ ଷଣ୍ଢ ଜନ୍ମଗ୍ରହଣ କରିଥିଲେ, କି କୁକ୍ଷଣରେ କୁଜଙ୍ଗର ସିଂହାସନ ତାଙ୍କ ଦ୍ୱାରା ଅଳଙ୍କୃତ ହୋଇଥିଲା । ପୂର୍ବ ପୂର୍ବ ରାଜାମାନେ ସେହି ବଲ୍ଲାରଂ ଅଧିରୁ କେତେ ଦିଗ୍ବିଜୟ ବାସନା ଚରିତାର୍ଥ ପୂର୍ବକ କେତେ ଅବା ସନ୍ଧି କରି ଯାଇ ନଥିଲେ । ଜନାର୍ଦ୍ଦନ ଷଣ୍ଢଙ୍କୁ

ସେ ସବୁ କିଛି ଅଣ୍ଟିଲା ନାହିଁ । ଦେଖୁଁ ଦେଖୁଁ ଲକ୍ଷ ଲକ୍ଷ ଟଙ୍କା ମହାଜନମାନଙ୍କଠାରୁ ଋଣ ହୋଇଗଲା । ସହସ୍ରମୁଖୀ ସୁଦ ମୁଖବିସ୍ତାର କରି ରାଜ୍ୟ ସହିତ ଜନାର୍ଦ୍ଦନ ଭଞ୍ଜଙ୍କୁ ଗ୍ରାସ କରିବାକୁ ବସିଲା । ଲକ୍ଷ ଲକ୍ଷ ପରିଶୋଧ କରି ମଧ୍ୟ ଲକ୍ଷ ଲକ୍ଷ ବାକି ହେଲା । ରାଜ୍ୟର ଟଙ୍କା ମହାଜନଙ୍କୁ ଅଣ୍ଟିଲା ନାହିଁ । ମହାଜନମାନେ ମହାଦମ୍ଭରେ ଅଦାଲତର ଆଶ୍ରୟ ନେଲେ ଏବଂ ଭୂଞ୍ଜଙ୍କ ପୃଥ୍ୱୀ ନିଲାମ ଲୁଟରେ ଅସିଲା । ଜନାର୍ଦ୍ଦନ ଭଞ୍ଜ ଇତିମଧ୍ୟରେ ପରଲୋକ ଗମନ କଲେ । ତାଙ୍କର ପୁତ୍ର ବିଦ୍ୟାଧର ଭଞ୍ଜ ରାଜା ହେଲେ ସତ୍ୟ, ମାତ୍ର ପରକ୍ଷଣରେ ବୁଝି ପାରିଲେ ତାହା ନାମମାତ୍ର । ମହାଜନଙ୍କ ଦେଣରୂପ ଶୃଙ୍ଖଳଦ୍ୱାରା ରାଜଶ୍ରୀ ନିତାନ୍ତ ବଦ୍ଧ ହୋଇଅଛି; ସେ ଶୃଙ୍ଖଳ ଉନ୍ମୋଚିତ ନ ହେଲେ ଧ୍ୱଜଶ୍ରୀ ଚଳିବ ନାହିଁ । ମାତ୍ର ବିଦ୍ୟାଧର କି ସେ ଶୃଙ୍ଖଳ ଉନ୍ମୋଚିତ କରି ପାରିବେ ? ଭାଗ୍ୟ ଯାହାକୁ ପ୍ରସନ୍ନ ନାହିଁ; ଭାଗ୍ୟ ଯେତେବେଳେ ଭୂଞ୍ଜଙ୍କର ଦଶା ଶେଷ କରିଅଛି; ତେତେବେଳେ ଅଯୁତ କାହିଁ ? ଦୟାଶୀଳ ଇଂରେଜ ରାଜାଙ୍କର ଦୟାପୂର୍ଣ୍ଣ କର୍ମଚାରୀ ବିଚାରାସନରେ ବସି ଭଞ୍ଜବଂଶର ଅପୂର୍ବ କୀର୍ତ୍ତି ନଷ୍ଟ ହେଉଥିବା ବ୍ୟଥିତ ହୃଦୟରେ ଦେଖି ଦୟା ବହି ଭୂଜଙ୍ଗ ଜିଲ୍ଲା ଖାସ ତହସିଲରେ ଅଣାଇ ମହାଜନଙ୍କ ଦେଣ ପରିଶୋଧ କରିବାର ଭାବନା କରି ବିଦ୍ୟାଧରଙ୍କୁ ଡକାଇ ପଠାଇଲେ ! ବିଦ୍ୟାଧର ଉପସ୍ଥିତ ହେଲେ. ତାଙ୍କର ସମ୍ମତି ଜାଣି ସେ ଏ ଉପାୟ ଅବଲମ୍ବନ କରିଥାନ୍ତେ । ମାତ୍ର କାହିଁ ? ବିଦ୍ୟାଧର ତ ମହାନଦୀପାଏ ଆସି ଆଜ ଏଣିକି ପଦାର୍ପଣ କଲେ ନାହିଁ । ତାଙ୍କର କର୍ମଚାରୀମାନେ କେତେଅବା ଲୁଟି କରି ଖାଇ ନଥିଲେ । ତଥାପି ସେମାନେ ଏ ବିପଦ ସମୟରେ ସୁଦ୍ଧା କପଟାଚରଣ କରି ମହାନଦୀ କୂଳରେ ବିଦ୍ୟାଧରଙ୍କୁ କହିଲେ "ଯାଅ ନାହିଁ—ଗଲେ ବନ୍ଦୀ ହେବ ।" ବିଦ୍ୟାଧର ଶଠତା ବୁଝି ନପାରି ଭୟରେ ପ୍ରତ୍ୟାଗମନ କଲେ; ଏଣେ ୩୫୯ ବର୍ଗ ମାଇଲର ଉନ୍ନତିଶାଳୀ ଭୂଖଣ୍ଡ କେବଳ ମହାଜନଙ୍କ ତୃପ୍ତି ସାଧନ ନିମିତ୍ତ ଟ ୫,୫୦,୦୦୦୯ ରେ ନିଲାମ ହୋଇ ଭଞ୍ଜ ଗୌରବ ଚୂର୍ଣ୍ଣୀଭୂତ କଲା ।

ସନ ୧୮୨୮ ମସିହା ମଇମାସ ୧୮ ତାରିଖରେ ଏ ଜମିଲ ସମ୍ପାଦିତ ହେଲା । ମହାଜନଙ୍କ ଦେଣ ପରିଶୋଧ ପାଇ ଅବଶିଷ୍ଟ ଯେ ଟଙ୍କା ବଳିଲା, ତାହା ଗୌରବ ଜଙ୍କାର କାରଣରୂପ ମିଥ୍ୟା ଲାଳସାରେ ମୋକଦ୍ଦମା ବ୍ୟୟରେ ବ୍ୟୟିତ ହେଲା ଏବଂ ଖଣ୍ଡିବଂଶଧର ସାମାନ୍ୟ ଅପରିଚିତ ଦରିଦ୍ର ପ୍ରାୟ ପୃଥିବୀରେ ପରିକ୍ରମଣ କଲେ ।

ନିତି ଏହି କାଣ୍ଡ ଚାଲିଅଛି । ମହାଜନମାନେ ଲୋକଙ୍କର ବିପଦ ସମୟରେ ଟଙ୍କା ଉଧାର ଦେଇ ଯେଉଁ ଉପକାର କରିଥାନ୍ତି ଖାତକ ସେ ଟଙ୍କା ସୁଚାରୁ ରୂପେ ଅଦାୟ ନଦେଲେ ଅପଣା ଟଙ୍କା ଅଦାୟ କରିବାକୁ ଯାଇ ଚତୁର୍ଗୁଣ ଅପକାର କରିବାକୁ ସ୍ପୃହା ଛାଡନ୍ତି ନାହିଁ । ଏଥିରୁ ଉପାୟ ନାହିଁ । ଯେପରି ପୂର୍ବେ କଥା ଥିଲା "ବୁଦ୍ଧିର୍ଯସ୍ୟ ବଳଂ ତସ୍ୟ" ସେହିପରି ଏବେ ହୋଇଅଛି "ଧନଂ ଯସ୍ୟ ବଳଂ ତସ୍ୟ ।" ଲୋକେ ଯେବେ ବୁଦ୍ଧିମାନ୍ ନ ହେବେ ତେବେ, ମହାଜନମାନେ ସେମାନଙ୍କୁ ଗୋପଲୀଳାର ପିତୁଳା ପରି ନଚାଇବେ—ଏଥିରେ ସେମାନଙ୍କୁ ଅବା ଦୋଷ କି ଦେବୁଁ ? ମାନ୍ୟ ପାଠକେ । ଏହି ଓଡ଼ିଶା ଖଣ୍ଡରେ କେତେ ଘର ଦେଣା ଦାୟରେ ଉତ୍ସନ୍ନ ହୋଇଯିବା ଦେଖିଲେ ସୁଦ୍ଧା ଓଡ଼ିଶାବାସୀଙ୍କର କି ଚେତନା ହୋଇ ଅଛି ?—କାଳସ୍ୟ କୁଟିଳା ଗତିଃ ।

ଥାଉ, ଏ କଥାରେ ଆମ୍ଭମାନଙ୍କର କିଛି କାର୍ଯ୍ୟ ନାହିଁ । କଥା ପ୍ରସଙ୍ଗରେ ଆମ୍ଭେମାନେ ଏତେଦୂର ବହକି ଆସିଲୁଁ । କଥା ପ୍ରସଙ୍ଗରେ ଲକ୍ଷିତ ବଂଶର ଅବଧାରଣା ସଙ୍ଗେ ସଙ୍ଗେ ତାହାର ବର୍ତ୍ତମାନ ଦଶା ମନୋମଧ୍ୟରେ ଜାଗ୍ରତ ହେବାରୁ ବ୍ୟଥିତ ହୃଦୟରେ ଏ ଯାଏ ବାହାରି ଆସିଲୁଁ । ନୋହିଲେ ଆମ୍ଭେମାନେ ଯେଉଁ ସମୟର କଥା କହୁଅଛୁଁ ସେତେବେଳେ ପାରଦ୍ୱୀପର ଶୋଭା ଅପୂର୍ବ ଥିଲା—ତାହା ଶୋଭାର ଅପୂର୍ବ ଦୋଳନାରେ ଦୋହଲୁଥିଲା । ସେତେବେଳେ ପାରଦ୍ୱୀପ ଅପୂର୍ବ ଢଙ୍ଗରେ ପାରବାରର ଉର୍ଦ୍ଧ୍ୱକୁ ଦୃଷ୍ଟି ନିକ୍ଷେପ କରି ହସୁଥିଲା । ସେତେ-

ହବଲେ କେବଳ ବଗାଚ-ବଷରେ ପୃଥିବୀରେ ବିଚରଣ କରି ଅପରିମିତ ଧନୋପାର୍ଜନ ଦ୍ୱାରା ପାରଦ୍ୱୀପର ଭଣ୍ଡାର ଘରର କପାଟ ସବୁ ଅବାରିତ ରଖିଥିଲେ । ଗଡ଼ର କୃତ୍ରିମ ପରିଖା ଈଶ୍ୱରସୃଷ୍ଟ ପୟଃ ପ୍ରଣାଳୀକୁ ପରିରୂଢ଼ କରି କରଧୃତରୂପ ଅସୀମ ଧନ ଛନି ନେଉଥିଲା । ସେ ପରିଖା ବାସ୍ତବରେ ଅତୁଳନୀୟ । ଯେ ଦେଖିନାହାଁ ସେ ତାହାର ଶୋଭା ଅନୁଭବ କରିପାରିବ ନାହିଁ । ତାହା ଏତେ ବିସ୍ତୃତ ଥିଲା ଯେ, ଗୃହଖଣ୍ଡ ଜାଲଅ ସହଜରେ ଅକ୍ଲେଶ ଭିଡ଼ ଏକାଠି ଯାଇ ପାରିବ । ସେ ପରିଖା ପାରହେବା ଶତ୍ରୁପକ୍ଷରେ ଅତୀବ ଦୁଷ୍କର । ପରିଖା ଯେମନ୍ତ ଗଭୀର ତେମନ୍ତ ଭୟଙ୍କର—କୁମ୍ଭୀରାଦି ଜନ୍ତୁମାନଙ୍କରେ ପରିପୂର୍ଣ୍ଣ । ଗଡ଼କୁ ଯିବା ନିମିତ୍ତ ଗୋଟିଏ ମାତ୍ର ଦ୍ୱାର ଏବଂ ତାହା ଦୁର୍ଦ୍ଦମ ବଳଶାଳୀ ପ୍ରହରୀମାନଙ୍କ ଦ୍ୱାରା ସତତ ସୁରକ୍ଷିତ । ସେହି ଦ୍ୱାରଦେଶରେ ବିଶାଳ ଘଣ୍ଟା ବନ୍ଧାହୋଇ ନାନାପ୍ରକାର ସମୟ ପାରଦ୍ୱୀପ ଗଡ଼ରେ ଘୋଷିତ କରୁଥିଲା ।

ଦୁର୍ଗମଧ୍ୟରେ ରାଜାଙ୍କର ପ୍ରାସାଦ ଅତୁଳନୀୟ ଶ୍ରୀ ଧାରଣ କରି ବିରାଜିତ ଥିଲା । ସେ ପ୍ରାସାଦ ଦେଖିଲେ ପୌରାଣିକ ପ୍ରାସାଦମାନ ମନେ ପଡ଼ଇ । ବାସ୍ତବରେ ଯେ ଏଡ଼େ ବିଶାଳ ଅମ୍ବୁଧିର ଭୂମିଖଣ୍ଡର ଅଧୀଶ୍ୱର ଏବଂ ଯାହାଙ୍କୁ ପାରାବାର ପୟଃପ୍ରଣାଳୀ ପ୍ରେରଣପୂର୍ବକ ରତ୍ନରାଜି ପ୍ରଦାନ କରୁଅଛି, ତାହାଙ୍କର ପ୍ରାସାଦ ଯେ ବରୁଣ ଦେବଙ୍କ ପ୍ରାସାଦପରି ହେବ, ଏଥିରେ କି ସନ୍ଦେହ ଅଛି ? ସେ ପ୍ରାସାଦରେ ପରିବାର ଧନେ ଷଣ୍ଢରାଜା ବାସ କରନ୍ତି । ସେ ପରିବାର ଗୋଟିଏ ରମଣୀରେ ଉଜ୍ଜ୍ୱଳ ହୋଇନାହିଁ । ଯେମନ୍ତ ବିଶାଳ ରାଜ୍ୟ ତେମନ୍ତ ବିଶାଳ ପରିବାର । ତହିଁରେ ସୁରବନିତାଙ୍କ ସଦୃଶ ଶତ ଶତ ରମଣୀବୃନ୍ଦ ବାସ କରି ଅପୂର୍ବ-ଲୀଳା ଭିଆଇ ଅଛନ୍ତି । ଦୁର୍ଗ ମଧ୍ୟରେ ମନ୍ଦିରର ଆଡ଼ମ୍ବରର କଥା ଅବା କି ବୋଲିବୁଁ ? ପୁରୁଷୋତ୍ତମ କ୍ଷେତ୍ରରେ ଯେତେ ପ୍ରକାର ଦେବଦେବୀଙ୍କର ମନ୍ଦିର ବିଦ୍ୟମାନ ଅଛି, ପାରଦ୍ୱୀପର କ୍ଷୁଦ୍ରାୟତନରେ ତେତେ ପ୍ରକାର

ଦେବ ଦେବୀଙ୍କର ମନ୍ଦିର ପ୍ରତିଷ୍ଠିତ—ବାରମାସରେ ତେର ପର୍ବ ମହାସମାରୋହରେ ପାଳିତ ହୁଅଇ ଏବଂ ପର୍ବୋପଲକ୍ଷରେ ଲକ୍ଷ ଲକ୍ଷ ଲୋକେ ସମବେତ ହୋଇ ପ୍ରଭୂତ ଉତ୍ସାହରେ ପାରଦ୍ୱୀପକୁ ମତାଇ ଦଅନ୍ତି ।

୪ର୍ଥ ଉତ୍ତରୁ ବାଗ ବଗିଚା । କେତେ ପ୍ରକାର ବୃକ୍ଷଲତା ଯେ ଋତୁ ଋତୁ କରି ଫଳ ଫୁଲ ଫଣ୍ଡ ରଜାଙ୍କୁ ଉପହାର ଦେଉଅଛି ତାହା କହିବା ଅସାଧ୍ୟ । ସମୁଦ୍ରଗର୍ଭରେ ପାରଦ୍ୱୀପ ଚତୁର୍ଦ୍ଦିଗ ପଯ୍ୟଃ ପ୍ରଣାଳୀ ଦ୍ୱାରା ପରିବେଷ୍ଟିତ ଥିବାରୁ ଉଦ୍ୟାନାଦ ସତତ ଶ୍ୟାମଳ ଓ ଶ୍ରୀଶାଳୀ ହୋଇ ରହୁଅଛି । ଅଧିକ ଆଉ କି କହିବୁଁ—ପ୍ରକୃତରେ ସେ ସବୁ ଦେବ-ଭୋଗ୍ୟ ହୋଇ କଳ୍ପିତ ଅଛି ଏବଂ ସେମାନେ ଅପ୍ସରାମାନଙ୍କର କ୍ରୀଡ଼ାଭୂମି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେଠା ଲୋକେ ଶ୍ରମ ନିବାରଣାର୍ଥ ଯେଉଁ ବାଗ ବଗିଚାରେ ବସି ନିର୍ମଳ ବାୟୁ ସେବନ କରନ୍ତି, ସେହିପରି ନିର୍ଦ୍ଦିଷ୍ଟ ସମୟରେ ବନଦେବୀ ଦ୍ୱାରା ପରମ ସନ୍ତୋଷ ଲାଭକରି ଜନ୍ମତତ୍ତ୍ୱରେ କ୍ରୀଡ଼ା କରତଃ ବନଦେବୀଙ୍କ ଜନ୍ମୋତ୍ସବ କରନ୍ତି । ପାଠକେ ! ଯେଉଁଠାରେ ଲୋକେ ଶାନ୍ତିପ୍ରିୟ, ଯେଉଁଠାରେ ରଜା ନିଷ୍ଠାପ୍ର, ଯେଉଁଠାରେ ଅଳ୍ପାୟାସରେ ନିଜ ପ୍ରଭୂତ ଧନ ଉପାର୍ଜ୍ଜିତ ହେଉଅଛି ଏବଂ ଯେଉଁଠାରେ ଶତ୍ରୁ ଉପଦ୍ରବର ଅବେଁ ଦବା ନାହିଁ, ସେଠାରେ ଘରଦ୍ୱାର ଛାଡ଼ି ବାଗ ବଗିଚାରେ ପକ୍ଷୀ ଶ୍ରୀ ବିରାଜିତ ଥାଏ । ପାରଦ୍ୱୀପଟି ଏହିପରି ଅପୂର୍ବ ଶୋଭାରେ ଅପୂର୍ବ ଭାବରେ ବିରାଜିତ । ଦେଖିଲେ ହଠାତ୍ ମାଘଭବଙ୍କର ଦ୍ୱାରକା ବର୍ଣ୍ଣନା ମନେ ପଡ଼େ । ପାଠକେ ! ବାସ୍ତବରେ ପାରାଦ୍ୱୀପକୁ ଯଦି କେହି କଳ୍ପାଦର୍ଶରେ ସ୍ୱର୍ଗର ପ୍ରତିବିମ୍ବ ପଡ଼ିଥିବାର ବୋଲନ୍ତି ତେବେ ତାଙ୍କୁ ନିତାନ୍ତ ଭ୍ରାନ୍ତ ବୋଲି ବୋଲାଯାଇ ପାରିବ ନାହିଁ ।

ରାଜପ୍ରାସାଦର ସମ୍ମୁଖଭାଗରେ ରଜାଙ୍କର ଦରବାର ଗୃହ । ଏଠାରେ ପ୍ରତିଦିନ ପ୍ରାତଃକାଳରେ ବେଳ ପ୍ରାୟ ପ୍ରହରକଠାରୁ ସାତଘଡ଼ି ଯାଏ ଦଣ୍ଡ

ରାଜା ଦରବାର କରନ୍ତି । ରାଜ୍ୟର ହାକିମ ହୁକୁମ ସମସ୍ତ ଏହି ତିନି ଘଣ୍ଟା ମଧ୍ୟରେ ରାଜାଙ୍କ ସମ୍ମୁଖରେ ଅବଗତ ହୁଅଇ । ଦିବାଭାଗର ଅବଶିଷ୍ଟ ଅଂଶ ଏବଂ ରାତ୍ରି ଗୋଟାକଯାକ ରାଜାଙ୍କର ନିଜର କାର୍ଯ୍ୟ ଅର୍ଥାତ୍ ଭୋଗ ବିଳାସରେ ଚାଲିଯାଏ । ଯେଉଁଠାରେ ରାଜ୍ୟ ନିମନ୍ତେ ଚିନ୍ତା ଏତେ ଅଳ୍ପ ଏବଂ ରାଜ୍ୟଲୋକଙ୍କର କାର୍ଯ୍ୟ ନିମିତ୍ତ ଏତେ ଅଳ୍ପ ସମୟକ୍ଷେପ, ସେଠାରେ ଦୁର୍ଦ୍ଦଶା ଏବଂ ପରପଦାନତ ନ ହେବ କାହିଁକି ? ଯାହାଙ୍କ ଧନରେ ଲୋକେ ପେଟ ପୂରାଇ ବିଳାସରେ ପ୍ରମତ୍ତ ହୋଇ ରହିଅଛନ୍ତି, ସେମାନଙ୍କ ନିମିତ୍ତ ଉପଯୁକ୍ତ କାଳକ୍ଷେପଣ ନ କଲେ ବିଧାତା ଏ କାଳକୁ ସହିବେ କିପରି ? ମାତ୍ର ବିଳାସରେ ପ୍ରମତ୍ତ ଥିଲାବେଳେ କେତେଜଣ ଲୋକର ଏପରି ଦକ୍ଷ ଉପସ୍ଥିତ ହୁଏ ? ଏବଂ ଦକ୍ଷ ନ ଥିଲେ କେତେଜଣ ସଂସାରରେ ନାମ କିଣିଯାଇ ପାରନ୍ତି ? ତଥାପି ଅମ୍ଭମାନଙ୍କର ଷଣ୍ ରାଜାଏ ଦିନମାନଙ୍କରେ ତିନି ଘଡ଼ିକାଳ ରାଜ୍ୟର ଚିନ୍ତାରେ ସମୟ ଅତିବାହିତ କରନ୍ତି; ଏ ହେତୁରୁ ତାହାଙ୍କୁ ଧନ୍ୟବାଦ ଦିଆଯିବ, କାରଣ ଅନେକ ସ୍ଥାନରେ ଅଦ୍ୟାପି ସୁଦ୍ଧା ରାଜାମାନେ ଅପର ଲୋକ ହସ୍ତରେ କେବଳ ଭସାଇ ଦେଇ ନିଶ୍ଚିନ୍ତ ଭୋଗଚିନ୍ତାରେ ଦିନାତିପାତ କରିବା ଦେଖାଯାଏ ।

କଚେରୀ ପ୍ରତିଦିନ ଦୁଇଓଳି ହୁଅଇ । ଦେଓ୍ୱାନ, ବେବର୍ତ୍ତା ଇତ୍ୟାଦି ଦୁଇଓଳି କଚେରୀକୁ ଆସନ୍ତି । ମାତ୍ର ରାଜାଙ୍କର ଭେଟ କେବଳ ସଞ୍ଜ ଓଳି ଛଅଘଡ଼ି ମିଳେ ଏବଂ ରାଜା କଚେରୀରେ ବସିଲେ 'ହୁଜୁରମିଞ୍ଜି' ଓ 'ରଣହାଣ୍ଡୋଳ' ଠାରୁ 'ଭକ୍ତିବ୍ରହ୍ମ' ଓ 'ରସବୃନ୍ଦ' ପର୍ଯ୍ୟନ୍ତ ତହଲ ପଡ଼ିଯାଏ । ଅନ୍ୟାନ୍ୟ ରାଜଧାନୀ ପ୍ରାୟ ଏଠାରେ ସୁଦ୍ଧା ଉପାଧିର ଅବଧି ନାହିଁ । କେହି ପାଞ୍ଚଟଙ୍କା ସଲାମି ଏବଂ କେହି ଅବା ରାଜାଙ୍କର ତୋଷ ସମୟରେ ଦୁଇପଦ ମିଠା କଥା କହି ଉପାଧି ନେଇ ଛାତି ଫୁଲାଇ ଚାଲିଯାନ୍ତି । ଏରୂପରେ ରାଜ୍ୟଯାକରେ ବହୁ ଉପାଧିଧାରୀଙ୍କର ବାସ ହୋଇଅଛି । ଇଂରେଜଙ୍କ ଅମଳରେ ଯେପରି ଇଂରାଜୀ ଅକ୍ଷର କେତୋଟିର ଉଚ୍ଚାରଣ ସହକାରେ ପଦବୀ ବୁଝାଇ ଦିଏ, ଅମ ଦେଶର ରାଜାମାନଙ୍କ

ପ୍ରଦତ୍ତ ଉପାଧିମାନ ସେପରି ନୁହଇ । ବେଳେ ବେଳେ ଉଚ୍ଚାରଣ କରିବାକୁ ବଡ଼ ଲଜ୍ଜାକୁଣ୍ଠ ପଡ଼େ । ଉପରୋକ୍ତ ପଦ ଛଡ଼ା "ଡମ୍ଫ ବାଘ", 'ହସ୍ତିସିଂହ', 'ରଣ ଛମ୍ପାଣ', 'ସର୍ଦ୍ଦାର ଶାର୍ଦ୍ଦୁଳ' ପ୍ରଭୃତି କେତେ ଯେ ପଦବୀ ବାଞ୍ଛ ଲୋକେ ବିତରଣ କରୁଅଛନ୍ତି, କହି ଶେଷ ହେବ ନାହିଁ । ଅତ୍ତ ଯେପରି ଅକାଳରୁ ବିରତ ଫେରନ୍ତା କଲା ହାକିମମାନଙ୍କୁ ମିସ୍ତର ନ କହିଲେ ରାଗ ହୁଅନ୍ତି, ତହିଁ ବଳି ଏମାନଙ୍କୁ ପ୍ରାପ୍ତ ପଦବୀ ଧରି ନ ଡାକିଲେ ଏମାନେ ଚଞ୍ଚଳ ହୋଇ ରାଜାଙ୍କଠାରେ ଗୁହାରି କରନ୍ତି ଏବଂ ରାଜା ମଧ୍ୟ ତଦ୍ଦ୍ୱାରା ନିଜର ଅବମାନନା ହେବାର ଜ୍ଞାନ କରି ଅର୍ଥଦଣ୍ଡର ଆଦେଶ କରନ୍ତି । ଏହି ରୂପରେ ପ୍ରଦତ୍ତ ପଦବୀର ମର୍ଯ୍ୟାଦା ସୁରକ୍ଷିତ ହୋଇଅଛି ଏବଂ ପଦବୀ ପାଇବା ନିମନ୍ତେ ଲୋକେ କେତେ ଲାଳାୟିତ । ଏଥିରେ ଲାଭ କି ଅଛି ଅନ୍ତର୍ଯ୍ୟାମୀ ଭଗବାନ୍ ଜାଣନ୍ତି, ମାତ୍ର ବାନରର ଲାଙ୍ଗୁଳ ଦେଖିବା ଆମ୍ଭମାନଙ୍କୁ ଯେପରି ଦୃଷ୍ଟିକଟୁ ଏହା ମଧ୍ୟ ସେହିପରି ।

ପୌଷ ପୂର୍ଣ୍ଣିମାର ପରଦିନ ପ୍ରାତଃକାଳରୁ ଷଣ୍ଢରାଜାଙ୍କର ଦରବାର ଖୋଲା ହୋଇଅଛି । ଷଣ୍ଢ ରାଜା ଅଳଙ୍କୃତ ହୋଇ ଆସି ସିଂହାସନରେ ବସି ପାତ୍ରମନ୍ତ୍ରୀଙ୍କ ସହିତ ଦେଶର ନାନାପ୍ରକାର ଅବସ୍ଥା ବୁଝୁଅଛନ୍ତି । ଯେତେବେଳେ ଦାସ ଖୋଜଙ୍ଗା ସୁବାଦାରଙ୍କ ଛାମୁରୁ ପ୍ରଦର୍ଶ— ସମ୍ଭବ୍ୟାହାରେ ତୁମନ ସର୍ଦ୍ଦାରଙ୍କ ନିକଟରୁ ଲଭିବାଗରୁ ପ୍ରେରିତ ହୋଇ ଠିକ୍ ସେହି ସମୟରେ ବାହାବଳୀନ୍ଦ୍ର ଦରବାରରେ ଉପସ୍ଥିତ ହୋଇ ବାହୁ ଠୁକି ରାଜାଙ୍କୁ ଜୁହାର ହେଲେ । ରାଜା ପ୍ରଫୁଲ୍ଲ ବଦନରେ ପଚାରିଲେ "ବାହାବଳୀନ୍ଦ୍ର ! କେତେବେଳେ ଆସିଲ ? ସବୁ ଭଲ ତ ?" ବାହାବଳୀନ୍ଦ୍ର ଉତ୍ତର କଲେ "ଛାମୁରୁ ଏହିକ୍ଷଣି ପହଞ୍ଚିଲି । ସବୁ ଭଲ । ଆଜ୍ଞା ହେଲେ ପଟ୍ଟନାୟକେ ଛାମୁକୁ ଆସିବେ ।"

ଉକ୍ତାଯୁକ୍ତ ଜାଳିଆମାନେ ପହଞ୍ଚିଥିବା ରାଜା ଏଥିରୁ ଅବଗତ ହୋଇ ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ଶୀଘ୍ର ରଘୁନାଥ ପଟ୍ଟନାୟକଙ୍କୁ ଛାମୁକୁ ଆସିବା କାରଣ ଆଦେଶ ପ୍ରଦାନ କରି ଦରବାର ଭଙ୍ଗ କଲେ ।

ଆଦେଶ ହେବା ମାତ୍ରକେ ଅମଲାମାନେ ତାଲପତ୍ରର ବହୀମାନ ଗୋଲକୁଣ୍ଡରେ ବାନ୍ଧି ଭଡ଼ାରେ ଥୋଇ ଦେଇ କଚେରୀ ଭାଙ୍ଗି ଚାଲିଗଲେ ଏବଂ ଶୀଘ୍ର କଚେରୀ ଭାଙ୍ଗିବାରୁ ସ୍ନାନାହାରର ସୁବିଧା ବିଶେଷ ହୋଇଥିବା ହେତୁ ପ୍ରକୃତ ଆନନ୍ଦିତ ହେଲେ । ପାତ୍ର ମନ୍ତ୍ରୀ ମଧ୍ୟ କଚେରୀ ଭାଙ୍ଗି ଚାଲିଗଲେ; କାରଣ ନକାଯୁଦ୍ଧ ସମ୍ବନ୍ଧରେ ରଜା ଏମାନଙ୍କ ସହିତ କୌଣସି ସମ୍ପର୍କ ରଖିନାହାନ୍ତି । ସେ ଇଲାକା ଅଲଗା ଏବଂ ସ୍ୱତନ୍ତ୍ର ବିଷୟରେ ଲୋକେ ନିଯୁକ୍ତ ଅଛନ୍ତି ।

କଚେରୀ ଭଙ୍ଗ ହେବା ସଙ୍ଗେ ସଙ୍ଗେ ରଘୁନାଥ ଦଳ ବଳ ଘେନି କଚେରୀ ଗୃହରେ ରଜାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ଯଥାବିଧି ଅଭିବାଦନପୂର୍ବକ ଉପବେଶନ କଲେ । ଜଳାଯୁଦ୍ଧର ସମୁଦାୟ ବିବରଣ ରଜାଙ୍କ ସମ୍ମୁଖରେ ଆନୁପୂର୍ବିକ ବର୍ଣ୍ଣନ କରି ପ୍ରକୃତ ଜୟ ହୋଇଥିବା ଜଣାଇଦେଲେ । ରଜା ଏଥର ଜଳାଯୁଦ୍ଧର ଅଦ୍ଭୁତ ଘଟନାମାନ ଶ୍ରବଣ କରି ଯତ୍ପରୋନାସ୍ତି ବିସ୍ମିତ ଓ ଆନନ୍ଦିତ ହୋଇ ରଘୁନାଥଙ୍କୁ ତାଙ୍କର କୌଶଳ ନିମିତ୍ତ ଶତ ଶତ ଧନ୍ୟବାଦ ପ୍ରଦାନ କରି ମାୟାଧରଙ୍କୁ ଅନାଇ କହିଲେ "ମାମୁ ଏଥର ବିଶେଷ କାର୍ଯ୍ୟ କି କରିଛନ୍ତି ?"

ମାୟାଧର ଏ ସମ୍ବୋଧନରେ ପରମ ଆନନ୍ଦିତ ହୋଇ କହିଲେ, "ମହାରାଜ ଯଷ୍ଟିନାୟକେତ ରଜା ହୋଇ ପାଲିଙ୍କିରେ ବସିଥିଲେ । ମୋ ଭାଗ୍ୟରେ ବନ୍ଧୁକ ଘେନି ସମସ୍ତଙ୍କ ପଛରେ ଯିବାକୁ ପାଳି ପଡ଼ିଥିଲା । ମୁଁ ବନ୍ଧୁକ ଘେନି ଯଥାବିଧି ଦଗବାରଣ କରି ସମସ୍ତଙ୍କୁ ଅଭୟ ପ୍ରଦାନ କରିଥିଲି ।" ରଜା ଏ ଉତ୍ତରରେ ମାମୁର ଅନ୍ତର୍ଗତ ଭାବ ଜାଣିପାରି ଅଟ୍ଟହାସ୍ୟରେ କହିଲେ, "ଯଷ୍ଟିନାୟକେ ! ଏଥର ମାମୁଙ୍କୁ ରଜା କରିଦେବ ।" ଦଳପତି ଓ ଦଳର ଲୋକେ ଏ କଥାରେ ଉଚ୍ଚହାସ୍ୟ କରି ଦରବାର ଗୃହକୁ କମ୍ପାଇ ଦେଲେ ।

ଏଥି ଉତ୍ତାରୁ ରଜା ଲୁଣ୍ଠିତଦ୍ରବ୍ୟ ମଧ୍ୟରୁ ଯାହା ରଖିବା ଓ ଯାହା ଲୋକମାନଙ୍କୁ ଦିଆଯିବା ଉଚିତ, ତହିଁର ବିହିତ ଆଦେଶ ପ୍ରଦାନ

କଲେ । ପରେ ରଘୁନାଥ ଲୋକମାନଙ୍କୁ ବିଦାୟ କରିଦେଇ ଗୋଟିଏ ସୁନ୍ଦରୀ ସ୍ତ୍ରୀଲୋକ ଅପହୃତ ହୋଇ ଆସିଥିବା ରାଜାଙ୍କୁ ଜଣାଇ ତାଙ୍କୁ ନଗରରେ ରଖିବା କାରଣ ପ୍ରାର୍ଥନା କରନ୍ତେ ରାଜା ତହିଁରେ ଅନୁମତି ପ୍ରଦାନ କଲେ ।

ରଘୁନାଥ ରାଜାଙ୍କର ଆଦେଶ ଘେନି ତତ୍‌ପଶ୍ଚାତ୍ ରସକଳାକୁ ଷଣ୍ଢରାଜାଙ୍କ ନଗରକୁ ପଠାଇଦେଲେ । ଦ୍ରବ୍ୟାଦି ବର୍ଣ୍ଣନ ଓ ରକ୍ଷା କରିବା କାର୍ଯ୍ୟରେ ମାୟାଧର ବାହୁବଳୀନ୍ଦ୍ର ଓ ବଳଅର ଷୈତଙ୍କୁ ଯଥାବିଧି ଆଦେଶ ପ୍ରଦାନ କରି ଖଣ୍ଡିଏ କ୍ଷୁଦ୍ର ଜାହାଜରେ କଳାବତୀଙ୍କି ନେଇ ପାରଦ୍ୱୀପ ଦୁର୍ଗ ପାର୍ଶ୍ୱରୁ ପ୍ରସ୍ଥାନ କଲେ ।

—୧୭—

# କୃଷକ ଜୀବନ

ପଣ୍ଡିତ ଶ୍ରୀମୃତ୍ୟୁଞ୍ଜୟ ରଥ

ସମସ୍ତ ମାନବପ୍ରାଣରେ ବୁଭୁକ୍ଷା ବିଦ୍ୟମାନ ଅଛି । ସେହି ବୃତ୍ତିର ବିଦ୍ୟମାନତା ହେତୁରୁ ମାନବ ନିତ୍ୟ ଖାଦ୍ୟାନ୍ୱେଷଣରେ ବ୍ୟାପୃତ ଥାଏ ଖାଦ୍ୟବସ୍ତୁଦ୍ୱାରା ଉଦର ପୂରଣ ନ କଲେ ଜୀବନଧାରଣ ହୁଏ ନାହିଁ, ଅତଏବ ଖାଦ୍ୟ ସମସ୍ତଙ୍କର ନିତାନ୍ତ ପ୍ରୟୋଜନୀୟ ।

ଏହି ରତ୍ନଗର୍ଭା ଧରିତ୍ରୀଗର୍ଭରେ ସମସ୍ତ ପ୍ରାଣୀମାନଙ୍କ ଜୀବନ ନିମିତ୍ତ ଆହାର୍ଯ୍ୟ ଦ୍ରବ୍ୟ ନିହିତ ଅଛି । ମାନବ ତହିଁରୁ କେବଳ ନିଜ ପରିଶ୍ରମ ଦ୍ୱାରା ଉପଯୁକ୍ତ ଖାଦ୍ୟ ଲାଭ କରେ । ପୃଥିବୀରେ ଖାଦ୍ୟ ଅଛି, ଏହାର ଅର୍ଥ ଏପରି ବୁଝିବାକୁ ହେବ ନାହିଁ ଯେ, ତାହା ଏକତ୍ର ପୁଞ୍ଜୀକୃତ ହୋଇ ରକ୍ଷିତ ହୋଇଅଛି; ଇଚ୍ଛାନୁସାରେ ଭକ୍ଷ୍ୟ ହୋଇ ପାରିବ । ଖାଦ୍ୟ ପୃଥିବୀରେ ଅତି ପ୍ରଚ୍ଛନ୍ନ ରୂପରେ ଅଛି । ଭୂମିରେ କୌଶଳ ପ୍ରଯୁକ୍ତ ହେଲେ, ତାହା ରୂପାନ୍ତରିତ ହୋଇ ଆମ୍ଭମାନଙ୍କ ନିକଟକୁ ଖାଦ୍ୟରୂପେ ଆନୀତ ହୁଏ । ଯେପର୍ଯ୍ୟନ୍ତ ଭୂମିରୁ କୌଶଳ ପ୍ରୟୋଗଦ୍ୱାରା ଶସ୍ୟୋତ୍ପାଦିତ ହୋଇ ନ ଥାଏ, ସେପର୍ଯ୍ୟନ୍ତ ମନୁଷ୍ୟକୁ ଅଦ୍ଭୁତ ଭଙ୍ଗୀରେ କାଳାତିପାତ କରିବାକୁ ହୁଏ । ପ୍ରଥମରେ କିଛି ମନୁଷ୍ୟ-ମାନଙ୍କ ପାଇଁ ପୃଥିବୀରେ ଖାଦ୍ୟ ଥୁଆ ହୋଇ ନ ଥିଲା; ତହୁଁ ଲୀନ ଲୋକ-

ମାନେ ଖାଦ୍ୟାନ୍ୱେଷଣରୁ ଅରଣ୍ୟ ଫଳମୂଳ ଏବଂ ପଶୁମାଂସାଦି ଭକ୍ଷଣ କରୁଥିଲେ । ତା ପରେ ସ୍ୱ ସ୍ୱ ବାସ ସନ୍ନିକଟସ୍ଥ ସ୍ଥାନରେ ବୃକ୍ଷାଦି ରୋପଣ କରି ତାହାର ଫଳମୂଳ ଭକ୍ଷଣ କରିବାକୁ ଆରମ୍ଭ କଲେ । ଏହିପରି ବୃକ୍ଷାଦି ରୋପଣ କରି ଓ ତଜ୍ଜନ୍ମ ଫଳମୂଳ ଭକ୍ଷଣ କରି ଟିକିଏ ନିଶ୍ଚିନ୍ତ ହେଲାରୁ ସେମାନଙ୍କ ହୃଦୟରେ ନବ ନବ କୌଶଳ ଉଦ୍ଭାବନର ଉପକ୍ରମ ହେଲା । କାହିଁକି ନା ଲୋକ ଟିକିଏ ଭୋଜନ ବିଷୟରେ ନିଶ୍ଚିନ୍ତ ନ ହେଲେ କୌଣସି ମହତ୍ ବିଷୟ ଉଦ୍ଭାବନ କରିପାରେ ନାହିଁ । କାଳକ୍ରମେ ସେମାନେ ଭୂମିରେ ବୀଜବପନ କରି ତହିଁରୁ ଶସ୍ୟୋତ୍ପାଦନ କରିବାକୁ ଶିକ୍ଷା କଲେ । ଅଳ୍ପକାଳ ମଧ୍ୟରେ ସେହି ଜୀବନରକ୍ଷିଣୀ ବୃତ୍ତି ସମସ୍ତଙ୍କର ଅବଲମ୍ବନୀୟ ହେଲା । ସେହି ବୃତ୍ତି କୃଷି ଏବଂ ତତ୍କର୍ତ୍ତା କୃଷକ ନାମରେ ଅଭିହିତ ।

କୃଷି ଗୋଟିଏ ଉତ୍କୃଷ୍ଟ ଜୀବନରକ୍ଷଣୋପଯୋଗୀ ଓ ମହତ୍ ବ୍ୟବସାୟ ଅଟେ । ଏତଦୁତ୍ପନ୍ନ ଶସ୍ୟରୁ ଅମ୍ଭେମାନେ ପରମ ଖାଦ୍ୟ ଅନ୍ନ ପ୍ରାପ୍ତ ହେଉଁ । ଏହାକୁ ଯେ ଅବଲମ୍ବନ କରେ, ସେ ସାମାନ୍ୟ ବ୍ୟବସାୟୀ ନୁହେଁ । ତାହାର ବ୍ୟବସାୟ ଅପରାପର ବ୍ୟବସାୟ ଅପେକ୍ଷା କୌଣସିରୂପେ ନିକୃଷ୍ଟ ନୁହେଁ । ତଦୀୟ ବ୍ୟବସାୟଦ୍ୱାରା ସାକ୍ଷାତ୍ ଭାବରେ ଜୀବନ ରକ୍ଷା ହୁଏ । ଅନ୍ୟାନ୍ୟ ଉତ୍କୃଷ୍ଟ ବ୍ୟବସାୟୀମାନେ ଅଧିକ ଲାଭବାନ୍ ହୁଅନ୍ତି ସତ୍ୟ, ମାତ୍ର ପାନଭୋଜନାଦି ବିଷୟରେ ସେମାନଙ୍କୁ କୃଷକର ଅନୁଗ୍ରହାପେକ୍ଷୀ ହେବାକୁ ହୁଏ । ସେମାନେ ଆଉ ଆହାର ସମ୍ବନ୍ଧରେ ନିଶ୍ଚିନ୍ତ ହୋଇ ପାରନ୍ତି ନାହିଁ ।

ଅନ୍ୟାନ୍ୟ ଦେଶରେ ପ୍ରାୟ ନୀଚଜାତୀୟ ଲୋକମାନେ ଉକ୍ତ ବ୍ୟବସାୟ ଅବଲମ୍ବନ କରିଥାନ୍ତି । ଅମ୍ଭମାନଙ୍କ ଦେଶରେ ତାହା ଜାତୀୟ ବ୍ୟବସାୟ ରୂପରେ ପ୍ରଚଳିତ ହୋଇ ଆସୁଅଛି । ତଦ୍ବ୍ୟବସାୟୀମାନେ କୃଷକ (ଚଷା) ବୋଲି ପରିଚିତ । ଆଜିକାଲି ତାହା ଅନ୍ୟାନ୍ୟ ଜାତିମାନଙ୍କ ମଧ୍ୟରେ କିଞ୍ଚିତ୍ ପରିମାଣରେ ଚଳୁଅଛି । ଉକ୍ତ ବ୍ୟବସାୟ ସମ୍ବନ୍ଧରେ ଅଧୁନାତନ ଓ ପ୍ରାଚୀନ ରୀତି ଅନେକାଂଶରେ ବିଭିନ୍ନ ଅଟେ । ପ୍ରାଚୀନ ଅର୍ଥା

ମହର୍ଷିମାନେ ଯେଉଁ କୃଷିକୁ ପବିତ୍ର ନୟନରେ ଦେଖି, ତାହାକୁ ସାଦରରେ ଅବଲମ୍ବନ କରୁଥିଲେ, ଆଧୁନିକ ଅଭିନବ ସଭ୍ୟତାପିପାସୁ ଲୋକେ ସେହି ମେଧ୍ୟ କୃଷିବୃତ୍ତିକୁ ଘୃଣାଚକ୍ଷୁରେ ଦେଖନ୍ତି । ସେମାନେ କୃଷକକୁ ନିକୃଷ୍ଟ ବ୍ୟବସାୟୀ ବୋଲି ମନେ କରନ୍ତି । କିନ୍ତୁ ସେମାନଙ୍କର ଏହି ଧାରଣା ବା ମତ ଅଭ୍ରାନ୍ତ, ଏହା କୁହାଯାଇ ନ ପାରେ ।

କୃଷକତୁଲ୍ୟ ଉତ୍କୃଷ୍ଟ ବ୍ୟବସାୟୀ ଓ ସୁଖୀ ପୃଥିବୀରେ ଅଳ୍ପସଂଖ୍ୟାରେ ଦୃଷ୍ଟ ହୁଅନ୍ତି । କୃଷକ ଯାଦୃଶ ସ୍ୱାଧୀନ ଭାବର ଅଧିକାରୀ ହୁଏ, ଅନ୍ୟ କାହାରି ହୃଦୟରେ ତାଦୃଶ ଭାବର ଉଦୟ ହୁଏ ନାହିଁ । ସେ ଯେପରି ପ୍ରକୃତିଗତ ଆମୋଦ ଅନୁଭବ କରେ, ଅନ୍ୟ କେହି ସେପରି ଅନୁଭବୀ ହୋଇପାରେ ନାହିଁ । କୃଷକ ଯେପରି ବହୁ ବିଷୟକ ସୁଖର ଅଧିକାରୀ ହୁଏ, ତାହାର କିଛିତ୍ ଆଭାସ ପଶ୍ଚାତ୍ କଥିତ ହେଉଅଛି । ଅସ୍ମଦ୍ଦେଶୀୟ କୃଷକ-ମାନଙ୍କର ଦୁରବସ୍ଥା ଦେଖି କେହି କେହି କୃଷକମାନଙ୍କର ସେହି ସୁଖ-ଭୋଗିତ୍ୱକୁ ଅସମ୍ଭବ ବୋଲି ମନେ କରି ପାରନ୍ତି; କିନ୍ତୁ ଆମ୍ଭମାନଙ୍କ ଦେଶରେ ପ୍ରକୃତ କୃଷକମାନଙ୍କର ଅଭାବ ଦୃଷ୍ଟ ହେଲେହେଁ ଅନ୍ୟାନ୍ୟ ଦେଶରେ ସେମାନଙ୍କର ସଂଖ୍ୟାବାହୁଲ୍ୟ ଦେଖାଯାଏ ।

ଭିନ୍ନ ଭିନ୍ନ ଦେଶୀୟ କୃଷିଜୀବୀମାନଙ୍କ ସୁଖର ବିଷୟ ଆନ୍ଦୋଳନ କରିବାକୁ ଗଲେ, ନିଶ୍ଚୟ ଇତିହାସ ଜ୍ଞାନ ଆବଶ୍ୟକ । କିନ୍ତୁ ମାଦୃଶ ବ୍ୟକ୍ତିମାନଙ୍କର ଭୂଗୋଳ ଇତିହାସରେ ଅନଭିଜ୍ଞତା ନିତାନ୍ତ ଅସମ୍ଭବ ନୁହେଁ । ସୁତରାଂ ତତ୍ସମ୍ବନ୍ଧରେ ବିଶେଷ କହିବା ମାଦୃଶ ବ୍ୟକ୍ତିର ଶକ୍ତିବହିର୍ଭୂତ । ତେବେ ଏତିକମାତ୍ର କୁହାଯାଇ ପାରେ ଯେ, କୃଷକକୁ ଅନେକ ସୁଖଭୋଗ କରିବାକୁ ଏବଂ ଶିକ୍ଷା କରିବାକୁ ଅବସର ମିଳେ । ସେ ଇଚ୍ଛାକଲେ ସ୍ୱଚ୍ଛନ୍ଦରେ ବିଦ୍ୟାଚର୍ଚ୍ଚା କରି ପାରିବ ଏବଂ ଶିକ୍ଷାଜନିତ ନିର୍ମଳ ଆନନ୍ଦ ଅନୁଭବ କରି ପାରିବ । ଯଦି କେହି କହନ୍ତି, ଯେ କୃଷି କରିବ, ସେ ପୁଣି କାହୁଁ ବିଦ୍ୟାଚର୍ଚ୍ଚା କରିବ ? ଶିକ୍ଷିତାବସ୍ଥାରେ ଅବଶ୍ୟ କାଳଯାପନ କରିପାରିବ ନାହିଁ । ତାହାହେଲେ

ବିଦେଶୀୟ କୃଷକମାନେ ଶିକ୍ଷିତାବସ୍ଥାରେ ଅଛନ୍ତି କିପରି ? କୃଷକଙ୍କୁ ଅବସର ମିଳୁ ନ ଥିଲେ ପୂର୍ବୋକ୍ତ କଥା ଘଟି ପାରନ୍ତା; ମାତ୍ର କୃଷକଙ୍କୁ ଯଥେଷ୍ଟ ଅବସର ମିଳେ । ସେ ସର୍ବଦା କିଛି କୃଷିରେ ବ୍ୟାପୃତ ନ ଥାଏ । ସମୟ ସମୟରେ ତାହାକୁ ଦୀର୍ଘକାଳ ବସି ରହିବାକୁ ହୋଇଥାଏ । ସେତେବେଳେ ସୁଚାରୁ ରୂପେ ପଠନକାର୍ଯ୍ୟ ଚଳାଇପାରେ । କୃଷିରେ ମଧ୍ୟ ବିଦ୍ୟାବୁଦ୍ଧିର ପ୍ରୟୋଜନୀୟତା ଅଛି । ଅତଏବ କୃଷକ ଚେଷ୍ଟା କଲେ ବିଦ୍ୟାର ପୁଣ୍ୟାନନ୍ଦମୟ ସୁଖ ଭୋଗ କରି ପାରିବ । ପ୍ରଥମରେ କିଞ୍ଚିତ୍ ବିଦ୍ୟାଶିକ୍ଷା କରି କୃଷିରେ ପ୍ରବେଶ କର୍ତ୍ତବ୍ୟ । ତଦନନ୍ତର କୃଷିର ପ୍ରତ୍ୟବସରରେ ବିଦ୍ୟାଧ୍ୟୟନ କରାଯାଇପାରେ । କାହିଁକି ନା, ଯେ ପୂର୍ବରୁ ଶିକ୍ଷିତ ହୋଇ ନ ଥିବ, ତାହାଦ୍ୱାରା କୃଷିର ଅବସରକ କାର୍ଯ୍ୟ ସୁନ୍ଦରରୂପେ ସମାହିତ ହୋଇ ପାରିବ ନାହିଁ । କୃଷି କରିବାକୁ ଗଲେ ଟିକିଏ ବିଜ୍ଞାନ ଓ ରସାୟନ ବିଷୟରେ ଅଭିଜ୍ଞତା ଆବଶ୍ୟକ । ତାହା ନ ହେଲେ ଯେତେବେଳେ କୃଷିରେ ପ୍ରଥମେ ମୃତ୍ତିକା ପରୀକ୍ଷା କରିବାକୁ ହେବ, ସେତେବେଳେ କେଉଁ ଜାତୀୟ ଭୂମିରେ କୀଦୃଶ ବୀଜ ବପନ କରିବା ଉଚିତ, ତାହା ଜଣାଯିବ ନାହିଁ । ଅଦ୍ଭୁର ମଧ୍ୟ କୃଷକର ତଦ୍ ବିଷୟରେ ଜ୍ଞାନ କୃଷିକର୍ମରେ ଅଲୋଚିତ ହୋଇ କ୍ରମେ ପରିପକ୍ୱ ହୁଏ । କିନ୍ତୁ ତଦନଭିଜ୍ଞ କୃଷକଦ୍ୱାରା କୃଷିକର୍ମ ସମ୍ୟକ୍‌ରୂପେ ସମାହିତ ହୋଇପାରିବ ନାହିଁ । ବର୍ତ୍ତମାନ ଏହା ସ୍ପଷ୍ଟ ରୂପେ ପ୍ରତୀତ ହୋଇଅଛି ଯେ, ଶିକ୍ଷିତ କୃଷକ ଦ୍ୱାରା ଯେ ସୁଫଳ ଲବ୍ଧ ହୁଏ, ଅଶିକ୍ଷିତ ଦ୍ୱାରା ତାହା କଦାପି ହୋଇପାରିବ ନାହିଁ । ଏହି ବିଷୟରେ ବହୁଳ କହିବାର ଆବଶ୍ୟକତା ନାହିଁ; ତଥାପି ଗୋଟିଏ ସାମାନ୍ୟ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା । ଜର୍ମାନ୍ ଇଂଲଣ୍ଡ ପ୍ରଭୃତି ଦେଶର ଭୂମି ଭାରତଭୂମି ଅପେକ୍ଷା ଅଧିକ ଉର୍ବରା ନୁହେଁ; କିନ୍ତୁ ସେଥିରୁ ଅଧିକ ଶସ୍ୟ ଉତ୍ପାଦିତ ହେବାର ଦେଖାଯାଏ । ତାହାର କାରଣ ଏହି, କୃଷକମାନେ ଶିକ୍ଷିତ ଥିବାରୁ ନିତ୍ୟ ନବୋଦ୍ଭାବିତ ନବ ନବ କୌଶଳମାନ ତହିଁରେ ପ୍ରୟୋଗ କରନ୍ତି । ଏଣୁ କରି ସେ ସ୍ଥାନର ଭୂମି ଅଧିକ ଶସ୍ୟବତୀ ହେଉଅଛି । କିନ୍ତୁ ବିଦେଶୀୟମାନେ

ଯାହାକୁ ଶସ୍ୟଶାଳିନୀ ମନେ କରି ତହିଁରୁ ବହୁଳ ଶସ୍ୟ ଶୋଷଣ କରୁଥିଲେ ଏବଂ କରୁଅଛନ୍ତି, ସେହି ଉତ୍କଳମୂ ଭାରତଭୂମି ବର୍ତ୍ତମାନ "ଦୁର୍ଭିକ୍ଷପ୍ରସୂ" ଆଖ୍ୟାରେ ଅଖ୍ୟାତ ହେବାର ଯୋଗ୍ୟ ହେଉଛି । ତହିଁର ଲୋକମାନେ ଅନ୍ନ ଅଭାବରୁ ଦୁର୍ଭିକ୍ଷର ଦୁର୍ବିସହ ଯନ୍ତ୍ରଣାରେ ପ୍ରପୀଡ଼ିତ ହୋଇ ଅକାଳ ମୃତ୍ୟୁର କରାଳ କବଳରେ କବଳିତ ହେଉଅଛନ୍ତି । ଏହାର କାରଣ କଅଣ ? ତାହାର କାରଣ ନିର୍ଦ୍ଧାରଣ କରିବା ମାଦୃଶ ବାଳକର ସାଧ୍ୟାତୀତ । ସେଥିପାଇଁ ଅବନତ ହେବାର ଅନେକ ପ୍ରଧାନ କାରଣ ଅଛି । କିନ୍ତୁ ସେମାନଙ୍କର ଉଲ୍ଲେଖ ଏଠାରେ ଆବଶ୍ୟକ ନୁହେଁ । ତନ୍ମଧ୍ୟରେ ଗୋଟିଏ ପ୍ରଧାନ କାରଣ ପ୍ରକୃତ କୃଷକର ଅଭାବ ଅଥବା କୃଷିପ୍ରତି ଅନାଦର ବା ଅନାସ୍ଥା ।

ଏହି ଦେଶରେ ପୂର୍ବେ ଯେପରି ଭାବରେ କୃଷି ହେଉଥିଲା, ବର୍ତ୍ତମାନ ମଧ୍ୟ ପ୍ରାୟ ସେହିପରି ଚଳୁଅଛି । ଏତାବତ୍ କାଳ ଅତୀତ ହେଲା, ତାହାର କୌଣସି ବିଶିଷ୍ଟ ଉନ୍ନତି ସାଧିତ ହୋଇ ନାହିଁ । ଯଦି ଆଗ୍ରହ ଓ ସମାଦର ସହକାରେ ସେହି କର୍ମ ସମ୍ପାଦିତ ହେଉଥାନ୍ତା, ତାହାହେଲେ ଏହି ଭୂମିରେ ବହୁବିଧ କୃଷିଜାତ ଦ୍ରବ୍ୟର ଉତ୍ପାଦନ ହୋଇ ପାରନ୍ତା । ତଦନୁକ୍ରମେ ହେଉଥିଲେ, ପୂର୍ବାବସ୍ଥା ଟିକିଏ ଉନ୍ନତ ହୁଅନ୍ତା; ଆଜି ଏତାଦୃଶ ଶସ୍ୟାଭାବ ଉପସ୍ଥିତ ହୁଅନ୍ତା ନାହିଁ । କିନ୍ତୁ ତତ୍ସମ୍ବନ୍ଧରେ ଅନେକ ତ୍ରୁଟି ଥିବାରୁ ଅସ୍ମମାନଙ୍କର ହିତ ସାଧନ ହୋଇ ପାରୁନାହିଁ । ତନ୍ମଧ୍ୟରେ ଗୋଟିଏ ମହାଦୋଷ ଏହି ଯେ, କୃଷି ନୀଚଜାତୀୟ ବ୍ୟବସାୟ ମଧ୍ୟରେ ସ୍ଥାନ ପାଇଅଛି ! ସେହି କାରଣରୁ ଅନ୍ୟାନ୍ୟ ବ୍ୟବସାୟୀମାନେ ଇଚ୍ଛାସତ୍ତ୍ୱେ ତାହା ଅବଲମ୍ବନ କରିପାରି ନାହାନ୍ତି । କୃଷକ ( ଚଷା ) ମାନଙ୍କର କେବଳ ତହିଁରେ ଅଧିକାର ଥାଏ । ଅଳ୍ପକାଳ ସେହି ମତ ଭାବ ଟିକିଏ ହ୍ରାସ ହୋଇଅଛି । ତଥାପି କୌଣସି ଅନ୍ୟ ବ୍ୟବସାୟୀ କୃଷି କଲେ ତାହାକୁ ଲୋକେ କହିଥାନ୍ତି, "ତୁମ୍ଭେ କଣ ଚଷା କି ? ଚଷାଙ୍କର କରଣୀୟ ବୃତ୍ତିରେ ହସ୍ତକ୍ଷେପ କରୁଅଛ ?" ଏତ ଗଲା ଏକ ପ୍ରକାର ସାଧାରଣ ମତ ।

ଅନ୍ୟଥା ଯେଉଁ କୃଷକ ମହାଶୟମାନେ କୃଷି କରନ୍ତି, ସେମାନେ ତଦ୍‌ବିଷୟରେ ନିତାନ୍ତ ଅନଭିଜ୍ଞ । ସୁତରାଂ କୃଷି ସମ୍ବନ୍ଧରେ ନବ ନବ କୌଶଳ ଉଦ୍ଭାବନ କରିବା ସେମାନଙ୍କ ପକ୍ଷରେ ସମ୍ଭବପର ନୁହେଁ । ସେମାନେ କେବଳ ଯାହା ପୂର୍ବପୁରୁଷମାନଙ୍କଠାରୁ ଦେଖି ଆସୁଥାନ୍ତି, ତାହାକୁହିଁ ଅନୁକରଣ କରି ଅଭ୍ୟାସ ସହକାରେ କାର୍ଯ୍ୟ କରନ୍ତି । ଶିଖିବାର ହେଉ ବା ଦେଖିବାର ହେଉ, ସେମାନେ ଯାହା କରନ୍ତି, ତାହା ସାଗ୍ରହରେ ଓ ସୂକ୍ଷ୍ମରୂପେ ନିରୀକ୍ଷଣ କରନ୍ତି ନାହିଁ । ଯେ କୌଣସି ପ୍ରକାରେ ମୁଠାଏ ଖାଇଲେ ପେଟ ପୂରିଲା । ଅଧିକ କଥାରେ କିଏ ପଡ଼ିବେ ? ବା ଦେଶର ଉନ୍ନତିକୁ ଚିନ୍ତିବେ କିଏ ? ଅଶିକ୍ଷା ବଶରୁ ସେମାନେ ବୁଝନ୍ତି ନାହିଁ ଯେ, ଏହି ବ୍ୟବସାୟ ଗ୍ରହଣ କରିବା ଦ୍ୱାରା ଆମ୍ଭମାନଙ୍କ ଉପରେ ଦେଶର ଗୋଟିଏ ବଡ଼ ଦାୟିତ୍ୱ ନ୍ୟସ୍ତ ହୋଇଅଛି । ଏହାପରି ଘରବାର,ପରିଣାମ ଫଳ କୃଷିର ଅଧଃପତନ ବା ଶସ୍ୟାଭାବ । କିନ୍ତୁ ସେହି ହେତୁରୁ ଭାରତର ଯେ କି ମହାକଷ୍ଟ ସଂଘଟିତ ହେଉଅଛି, ତାହା ସାଧାରଣଙ୍କର ହୃଦୟ ସ୍ପର୍ଶ କରିଥିବ । ଯଦି ନବ ନବ କୌଶଳ ପ୍ରୟୋଗଦ୍ୱାରା ଅଧିକ ଶସ୍ୟ ଉତ୍ପାଦିତ ହୋଇ ଉଦବୃତ୍ତାଂଶ ସଞ୍ଚିତ ହେଉଥାନ୍ତା, ତାହାହେଲେ ଏହି ଦେଶବାସୀମାନଙ୍କୁ ଭୀଷଣ ଦୁର୍ଭିକ୍ଷରେ ଏତାଦୃଶ ନିରୁପାୟ ହେବାକୁ ହୁଅନ୍ତା ନାହିଁ । ବିଦେଶୀୟ ଲୋକମାନଙ୍କ ଦ୍ୱାରା ବହୁଶସ୍ୟ ଶୋଷିତ ହେଉଅଛି ବୋଲି ଯେ ଆମ୍ଭମାନଙ୍କ ଦେଶବାସୀମାନେ ନିର୍ଦ୍ଦୋଷ, ଏହା କୁହାଯାଇ ନ ପାରେ । ସେହି ମହାଦୋଷ ବ୍ୟତୀତ ନିଜ ନିଜ ଦୋଷରୁ ଅସ୍ମଦ୍ଦେଶୀୟ ଲୋକମାନଙ୍କୁ ଅତ୍ୟନ୍ତ କଷ୍ଟଭୋଗ କରିବାକୁ ହେଉଅଛି । ପାଶ୍ଚାତ୍ୟ ଦେଶର କୃଷିପ୍ରଣାଳୀ ଆଡ଼କୁ ଦୃଷ୍ଟି ପକାଇଲେ, ଆମ୍ଭେମାନେ ତଦ୍‌ବିଷୟରେ ନିଜ ନିଜ ତ୍ରୁଟି ବୁଝି ପାରିବୁ ।

ଇଂଲଣ୍ଡରେ ବଣିକ୍‌ମାନେ କୃଷିକୁ ବାଣିଜ୍ୟବତ୍ ଲାଭଜନକ ବ୍ୟବସାୟ ବୋଲି ଗ୍ରହଣ କରି ପ୍ରତ୍ୟାଶାତୀତ ଶସ୍ୟୋତ୍ପାଦନାର୍ଥ ତହିଁରେ ବହୁ ମୂଳଧନ ବ୍ୟୟ କରନ୍ତି । ଆମ୍ଭମାନଙ୍କ ଦେଶର କୃଷକମାନେ କୃଷିକୁ ସେପରି ଭାବରେ ଗ୍ରହଣ କରନ୍ତି ନାହିଁ । କର୍ଷଣଭୂମିରେ,

କେବଳ ପୁଞ୍ଜାଏ ବିହନ ବୁଣି ଥରେ ଦୁଇଥର ହଳ କଲେ ଯାହା ମିଳଇ ସେହି ଯଥେଷ୍ଟ । ବେଶି ପଇସା ଖରଚ କରିବେ କାହିଁକି । କିନ୍ତୁ ସେମାନେ ଏହା ବୁଝିପାରନ୍ତି ନାହିଁ ଯେ, ଏପରି କରିବା ଦ୍ୱାରା କ୍ଷତି ହେଉଅଛି; ଆଉ ଟିକିଏ ଅଧିକ ବ୍ୟୟ ଓ ପରିଶ୍ରମ ସ୍ୱୀକାର କଲେ ଅନେକାଂଶରେ ଲାଭ ହେବ । ଆଉ ଏକ ଶ୍ରେଣୀର କୃଷକ ଦେଖାଯାନ୍ତି ଯେ ସେମାନେ ନିଜେ କୃଷି ନ କରି ଅନ୍ୟ ଏକ ଜଣକୁ ଭାଗ ଦିଅନ୍ତି; କିନ୍ତୁ ଅଂଶ ଗ୍ରହୀତାଙ୍କର ଉକ୍ତ ଭୂମିରେ ସ୍ଥାୟୀ ଭୂସ୍ୱତ୍ୱ ଆସ୍ଥା ନଥାଏ । ଏକ ପକ୍ଷରେ ତ ସ୍ଥାୟୀ ଭୂମିପ୍ରତି ଅନାସ୍ଥା, ଅନ୍ୟର ଭୂମି ପ୍ରତି କଅଣ ନ ବା ହେବ । ସେପରି କରିବା ଦ୍ୱାରା ବହୁକ୍ଷତି ହୁଏ । ଅନ୍ୟଦେଶୀୟ କୃଷକମାନେ ନିଜେ କୃଷିକର୍ମସୁକର ଯନ୍ତ୍ର ବ୍ୟବହାର ଏବଂ ଭିନ୍ନ ଭିନ୍ନ ଉପକରଣ ସଂଗ୍ରହ କରି ଲାଭ ବୃଦ୍ଧି କରନ୍ତି । ଏଠାରେ ସେପରି କିଛି ନଥିବାରୁ ଲାଭ ବୃଦ୍ଧି ହେବା ଦୂରେ ଥାଉ, ବରଂ କ୍ଷତି ବୃଦ୍ଧି ହେଉଅଛି । ପୂର୍ବେ ଏ ଦେଶରେ ଯେଉଁ କାଠୁଲଙ୍ଗଳ ବ୍ୟବହୃତ ହେଉଥିଲା, ବର୍ତ୍ତମାନ ସୁଦ୍ଧା ତାହାର ପ୍ରଚଳନ ଅଛି । ତାହାର ପରିବର୍ତ୍ତନ ହେବା ଦୂରେ ଥାଉ ତହିଁରେ ନୂତନ ହୋଇ ଖଣ୍ଡିଏ କୀଲକ ସୁଦ୍ଧା ବ୍ୟବହୃତ ହୋଇନାହିଁ । ଭିନ୍ନଦେଶରେ କୃଷିର ସୁବିଧା ନିମିତ୍ତ ଜଳପ୍ରଣାଳୀ ଦ୍ୱାରା ଜଳ ଅଣାଇ ନିହାଇ ଶସ୍ୟକ୍ଷେତ୍ର ନିକଟରେ ରକ୍ଷିତ ହେଉଅଛି । ମାତ୍ର ଏଠାରେ ସେପରି ସୁବିଧା ନାହିଁ । ଏହି ଦେଶ କୃଷିପ୍ରଧାନ ଓ ନଦୀମାତୃକ ହେଲେହେଁ ବର୍ତ୍ତମାନ ଅନେକ ସ୍ଥଳରେ ଜଳାଭାବ ଦେଖାଯାଏ, ଅଥଚ ସେହି ସ୍ଥାନକୁ ଜଳ ଯୋଗାଇବାକୁ ଜଳାଧାର ନାହିଁ, ଏବଂ ଯେଉଁ ସବୁ ପୁଷ୍କରିଣୀରେ ଜଳ ଥାଏ, ସେଠାରୁ କ୍ଷେତ୍ରକୁ ଜଳ ନେବାକୁ ହେଲେ ସେଣା ( ସେଚନୀ ) ବ୍ୟତୀତ ଅନ୍ୟ କୌଣସି ଜଳୋତ୍ତୋଳକ ଯନ୍ତ୍ରର ବ୍ୟବହାର ହୋଇନାହିଁ । ଏହିପରି ଅନେକ ଅସୁବିଧା ଓ ପ୍ରତିବନ୍ଧକମାନ ଥିବାରୁ ଏଦେଶର ଅତି ଉର୍ବର ଭୂମିରୁ ସୁଦ୍ଧା ଅଧିକ ଶସ୍ୟ ଉତ୍ପାଦିତ ହେଉନାହିଁ । ଉକ୍ତ ଅସୁବିଧା ସବୁ ଘଟିବାର ପ୍ରଧାନ କାରଣ, ଏତଦ୍ଦେଶୀୟ କୃଷକମାନଙ୍କ ଅନଭିଜ୍ଞତା ।

ଦେଶର ଉନ୍ନତି, ସୁଖବୃଦ୍ଧି ଓ ଧନବୃଦ୍ଧି ତଦ୍ଦେଶୀୟ କୃଷକମାନଙ୍କ ଅବସ୍ଥାର ଉନ୍ନତି ଉପରେ ନିର୍ଭର କରେ । କୃଷକମାନେ ଶିକ୍ଷିତ ନ ହେଲେ ଦେଶର ବିଶେଷ ମଙ୍ଗଳ ସାଧିତ ହେବ ନାହିଁ । କୋଡ଼ିହଣା ଚଷା ଅପେକ୍ଷା ରସାୟନବିତ୍ ପଣ୍ଡିତ କୃଷିରେ ଅଧିକ ଲାଭବାନ୍ ହେବେ, ଏଥିରେ ସନ୍ଦେହ ନାହିଁ । ଅସ୍ମମାନଙ୍କ ଦେଶର ଅନଭିଜ୍ଞ କୃଷକମାନେ କୌଣସି ଭୂମିରେ ପ୍ରତିବର୍ଷ ଏକ ପ୍ରକାର ଶସ୍ୟ ଉତ୍ପାଦନ କରି ତାହାର ଉର୍ବରତା ନଷ୍ଟକରି ପକାନ୍ତି । ଅନ୍ୟବିଧ ଶସ୍ୟଦ୍ୱାରା ସେମାନେ ଅଧିକ ଲାଭବାନ୍ ହେବେ, ଅଥଚ ଭୂମିର ଉର୍ବରତା ଅଦୌ ନଷ୍ଟ ହେବ ନାହିଁ । ଏହା ସେମାନଙ୍କ ଜ୍ଞାନକୁ କେବେ ସ୍ପର୍ଶ କରି ନଥାଏ । କିନ୍ତୁ ପର ରସାୟନବିତ୍ ଜଣେ କୃଷି କରି ଥାଆନ୍ତି ଅବଶ୍ୟ ପର୍ଯ୍ୟାପ୍ତ ପରିମାଣରେ ଫଳନ୍ତ ଶସ୍ୟ ପ୍ରାପ୍ତ ହୋଇପାରନ୍ତେ, ଏବଂ ତାହାର ସମ୍ୟକ୍ ଉନ୍ନତି କରିବାକୁ ଚେଷ୍ଟା କରନ୍ତେ । ଯେ ପର୍ଯ୍ୟନ୍ତ କୃଷକମାନେ ଶିକ୍ଷିତ ହୋଇ କୃଷିର ସମ୍ୟକ୍ ଉନ୍ନତି ନ କରିବେ, ସେ ପର୍ଯ୍ୟନ୍ତ ଦେଶର ମଙ୍ଗଳ ସାଧିତ ହେବ-ନାହିଁ । ଦେଶରେ କେବଳ ଦରିଦ୍ର, ଅଜ୍ଞ, ଅଳସ ଓ ଭିକ୍ଷୁକମାନଙ୍କର ସଂଖ୍ୟା କ୍ରମଶଃ ବୃଦ୍ଧିପ୍ରାପ୍ତ ହେବ । ଉକ୍ତ ଦୁରବସ୍ଥାମାନଙ୍କର ଦୂରୀକରଣ ଅବଶ୍ୟ ମଙ୍ଗଳକର ଅଟେ । ମାନନୀୟ ଗଭର୍ଣ୍ଣମେଣ୍ଟ କୃଷି ସମ୍ବନ୍ଧରେ ଯେ ଶିକ୍ଷାପ୍ରଣାଳୀ ଚଳାଇବାର ପ୍ରସ୍ତାବ କରୁଅଛନ୍ତି, ତାହା ଅବଶ୍ୟ ହିତକର । ସେହି ଶିକ୍ଷା ସର୍ବ ସାଧାରଣଙ୍କର ପ୍ରାଥମିକ ଶିକ୍ଷା ହେବା ଉଚିତ । ତାହା ଫଳବତୀ ହେଲେ ମାନନୀୟ ପ୍ରସ୍ତାବକ ମହାଶୟ ଶତଧନ୍ୟବାଦର ପାତ୍ର ହେବେ । କେତେ ଗୁଡ଼ିଏ ବିଷୟରେ ବିଗୃହ କଲେ ଅବଶ୍ୟ ଅସ୍ମମାନଙ୍କର କଥଞ୍ଚିତ୍ ଉନ୍ନତି ହୋଇପାରିବ । ପ୍ରଥମତଃ କୃଷି ଜାତୀୟ ବ୍ୟବସାୟମଧ୍ୟରେ ଗଣ୍ୟ ହେବା ଉଚିତ ନୁହେଁ । ତାହା ସାଧାରଣ ବୃତ୍ତି ହେବା ବିଧେୟ । କାରଣ ହେଲେ କୃଷି ନ ଥିଲେ ସମସ୍ତରେ ଲୋକଙ୍କୁ ବହୁ ଯନ୍ତ୍ରଣା ଭୋଗ କରିବାକୁ ହୁଏ । ଅନେକେ କେବଳ ଅନ୍ନାନ୍ୱେଷଣରେ ବୃଥା କାଳାତିପାତ କରନ୍ତି, ସୁତରାଂ ଭିକ୍ଷାଜୀବିମାନଙ୍କର ସଂଖ୍ୟା ବୃଦ୍ଧିପ୍ରାପ୍ତ ହୁଏ ।

ଦ୍ୱିତୀୟତଃ ଦେଶବାସୀମାନଙ୍କର ସାଧାରଣ ଶିକ୍ଷା । ସାଧାରଣ ଲୋକେ ଟିକିଏ ଶିକ୍ଷିତ ହେଲେ ଜମିରୀ ହୋଇ ବସିବାକୁ ଭଲ ମନେ କରିବେ ନାହିଁ । ଅବଶ୍ୟ କୌଣସି ବ୍ୟବସାୟରେ ବ୍ୟାପୃତ ହେବେ କିମ୍ବା ଭିନ୍ନ ବ୍ୟବସାୟ ସୃଷ୍ଟି କରିବେ । ତାହାହେଲେ ଦେଶର ଅପଟୁ ଲୋକଙ୍କ ସଂଖ୍ୟା ଅଧିକ ଦେଖାଯିବ ନାହିଁ । କୃଷି ଶିକ୍ଷା କଲା ପରେ କୃଷିବ୍ୟବସାୟୀଙ୍କୁ ବିଶେଷତଃ ପ୍ରକୃତ ବିଜ୍ଞାନ ଓ ରସାୟନ ସମ୍ବନ୍ଧରେ ଶିକ୍ଷା ଦେବା କର୍ତ୍ତବ୍ୟ, ଯାହିଁକି ନା ସେ ଜ୍ଞାନ କୃଷିରେ ଲୋଡ଼ା ହୁଏ ।

ଏ ତ ଗଲା ଶିକ୍ଷାର କଥା, କିନ୍ତୁ ତାହା କାର୍ଯ୍ୟରେ ପରିଣତ ହେବ କିପରି ? ସେମାନଙ୍କୁ ଶିକ୍ଷା ଦେବ କିଏ ? ଶିକ୍ଷା ପ୍ରଚଳନ ନିମିତ୍ତ ଶାସନ-କର୍ତ୍ତାମାନେ ସଚେଷ୍ଟ ଅଛନ୍ତି । କିନ୍ତୁ ପ୍ରଧାନ ପ୍ରତିବନ୍ଧକ ବିଦ୍ୟମାନ ଥିଲେହେଁ ତାହା ଶୀଘ୍ର ଏବଂ ସମ୍ପୂର୍ଣ୍ଣରୂପେ ସମ୍ପାଦିତ ହୋଇପାରିବ ନାହିଁ । ସେଥି-ପାଇଁ ସ୍ଥାନୀୟ ଭଦ୍ରଲୋକମାନଙ୍କର ବିଶେଷରୂପେ ମନୋଯୋଗ କରିବା ବିହିତ ଅଟେ । ସେମାନେ ଯଦି ବିଳାସ ଉତ୍ସବାଦିରେ ବହୁଅର୍ଥ ଅପବ୍ୟୟ ନ କରି ଦେଶହିତକର ଏହି ମହତ୍ କାର୍ଯ୍ୟ ସାଧନ ନିମିତ୍ତ ତାହା ସଞ୍ଚୟ କରିବେ, ତତ୍ସନ୍ନିକଟସ୍ଥ ଲୋକମାନଙ୍କୁ ଉପଦେଶ ଓ ଉତ୍ସାହ ପ୍ରଦାନ କରି ସେମାନଙ୍କୁ ଶିକ୍ଷାରେ ଅଗ୍ରସର କରିବାକୁ ଯଥାସାଧ୍ୟ ଯତ୍ନ କରିବେ, ଏବଂ ସମାଜର ଅନିଷ୍ଟକାରୀ କୁସଂସ୍କାରସବୁ କ୍ରମେ ଦୂରୀଭୂତ କରିବେ, ତାହାହେଲେ ଦେଶର ଅନେକ ପରିମାଣରେ ମଙ୍ଗଳ ସାଧିତ ହେବ । ସେମାନଙ୍କର ମଧ୍ୟ ବହୁ ଉପକାର ହେବ । ତାହାହେଲେ ସେମାନଙ୍କ ଦୁଆରେ ପ୍ରତିଦିନ କୋଡ଼ିଏ ଜଣ ଲେଖାଏଁ ଭିକାରୀ ଠିଆ ହେବେ ନାହିଁ ।

କୃଷିଦ୍ୱାରା ଲୋକ ଯେପରି କାର୍ଯ୍ୟକ୍ଷମ ଓ ଅନଳସ ହୁଏ, ସେହିପରି ମଧ୍ୟ ବଳିଷ୍ଠ ହୁଏ, କାରଣ କୃଷିକର୍ମରେ ନିତ୍ୟ ନିୟମିତ ବ୍ୟାୟାମ ହେବାରୁ ସେମାନଙ୍କର ଯଥେଷ୍ଟ ଶୋଣିତ ସଞ୍ଚାଳନା ହୁଏ । ସେହି ହେତୁରୁ କୃଷକ ଅନ୍ୟାନ୍ୟମାନଙ୍କ ଅପେକ୍ଷା ବଳବାନ୍ ଓ ସୁସ୍ଥ

ସୁତରାଂ ଏକ କାର୍ଯ୍ୟରେ କୃଷକର ଦୁଇପ୍ରକାର ଉପକାର ଲବ୍ଧ ହୁଏ । ତନ୍ମଧ୍ୟରୁ ଗୋଟିଏ ନିଜର ଲାଭ ଓ ପରୋପକାର; ଅନ୍ୟଟି ନିଜ ଶରୀରର ସ୍ୱାସ୍ଥ୍ୟ, ବଳବତ୍ତା ଓ କର୍ମପଟୁତା ।

ପରକୁ ଅନ୍ନ ଦେବାପାଇଁ ଯେଉଁ କୃଷକମାନେ ଭୂମିରେ ନିଜର ରକ୍ତମାଂସାସ୍ଥି ଧ୍ୱଂସ କରି ଶସ୍ୟ ଉପାର୍ଜ୍ଜନ କରନ୍ତି, ସେମାନେ ଅବଶ୍ୟ ଦେଶହିତକାରୀ, ଏଥିରେ ପ୍ରାୟ ସମସ୍ତେ ଏକମତ ହେବେ । ସେମାନଙ୍କ ଅଭାବରେ ଲୋକମାନଙ୍କୁ ଅତ୍ୟନ୍ତ ଦୁର୍ଦ୍ଦଶା ଭୋଗ କରିବାକୁ ହୁଏ । ଏହା ମଧ୍ୟ ଦେଖାଯାଉଅଛି, ଯେଉଁ ଦେଶର କୃଷକମାନେ ଅଭିଜ୍ଞ ଏବଂ କର୍ମଠ ତଦ୍ଦେଶବାସିମାନେ ଅପେକ୍ଷାକୃତ ସୁଖୀ । ପୁଣି କୃଷକ ସୁସ୍ଥ, ସବଳ, କାର୍ଯ୍ୟକ୍ଷମ, ଦେଶହିତକାରୀ, ଭୋଜନରେ ନିଶ୍ଚିନ୍ତ ଏବଂ ବିଦ୍ୟାଚର୍ଚ୍ଚା ସମ୍ବନ୍ଧରେ ଅବସର ପ୍ରାପ୍ତ ହୁଏ । ରାଜକର୍ମଚାରୀମାନେ ବହୁଅର୍ଥ ଉପାର୍ଜ୍ଜନ କରନ୍ତି ସତ୍ୟ, କିନ୍ତୁ ସେମାନଙ୍କୁ ସମୟରେ ଭୋଜନର ଅନାଟନରେ ପଡ଼ିବାକୁ ହୁଏ । ତାହାହେଲେ ସମସ୍ତେ "କୃଷକ ଜୀବନ ସୁଖମୟ ନୁହେଁ" ଏହା କହି ପାରିବେ ନାହିଁ । ସେମାନଙ୍କୁ ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ, କୃଷକ ଜୀବନରେ ଅନେକ ସୁଖ ଅଛି ।

ପରିଶେଷରେ ବକ୍ତବ୍ୟ ଏହି ଯେ ଦେଶହିତକର ସେହି କୃଷି ଆମ୍ଭମାନଙ୍କ ନିକଟରେ ଆଜ ଦୃଶ୍ୟ ନ ହୋଇ ମେଘ ବ୍ୟବସାୟ ରୂପରେ ଅଦୃତ ହେଉ ଏବଂ ଶିକ୍ଷିତ ମଣ୍ଡଳୀ ପରିଶ୍ରମ ସ୍ୱୀକାରପୂର୍ବକ ତାହାର ଉନ୍ନତିସାଧନରେ ଯତ୍ନବାନ୍ ହୁଅନ୍ତୁ ।

—୧୭—

# ଶିକ୍ଷା ଓ ସମାଲୋଚନା

ରାମପାଳ ମିଶ୍ର

"ସମାଲୋଚନା" ଏହି ଶବ୍ଦଟି ଶୁଣିଲେ ଆଜିକାଲି କାହିଁକି ଏକ ପ୍ରକାର ଭୟ ମନରେ ସଞ୍ଜାତ ହୁଏ । ଭୟ ହେବାର କୌଣସି ଯୁକ୍ତିସଙ୍ଗତ କାରଣ ନାହିଁ, ତଥାପି ଭୟ ହୁଏ । ଏଥିର ହେତୁ ଅନୁମାନ କଲେ ବୁଝାଯାଏ ଯେ, ଆଜିକାଲି ଏହି ଶବ୍ଦଟିକୁ ଉତ୍କଳରେ ଅନେକ "ଅପଢ଼ା ପଣ୍ଡିତ" କଳଙ୍କିତ କରିଅଛନ୍ତି । କୌଣସି ଗୋଟିଏ ପ୍ରବନ୍ଧ କିମ୍ବା କାବ୍ୟର ସମାଲୋଚନା ଶୁଣିଲେ ପ୍ରବନ୍ଧ ଲେଖକ ହଠାତ୍ ମନେ କରନ୍ତି ଯେ କୌଣସି ବ୍ୟକ୍ତି ତାହାଙ୍କୁ ଆକ୍ରମଣ କରିଅଛନ୍ତି । ଆଜିକାଲି ଯେପରି ଉତ୍କଳ ସାହିତ୍ୟକ୍ଷେତ୍ରରେ ଏହି ଶବ୍ଦଟି କଳଙ୍କିତ ହୋଇଅଛି ଏବଂ ଏହାର ପ୍ରକୃତ ଅର୍ଥ କଣ, ଏହି ଦୁଇଟି ବିଷୟ ଆଲୋଚନା କରିବା ଏହି ପ୍ରବନ୍ଧର ପ୍ରଧାନ ଉଦ୍ଦେଶ୍ୟ ଅଟେ । ଅବଶ୍ୟ ମତର ପାର୍ଥକ୍ୟ ହୋଇ ପାରେ, ମାତ୍ର ସେଥିଲାଗି ଯେ ଆମ୍ଭେମାନେ ନିଜର ସ୍ୱାଧୀନ ମତ ପ୍ରକାଶ କରିବାକୁ ଭୀତ ହେବୁଁ, ତାହା ନୁହେଁ ।

ଜଗତର ସର୍ବ ପ୍ରକାର ଉନ୍ନତିର ମୂଳ କାରଣ ଶିକ୍ଷା । ଏହି ଶିକ୍ଷାର ଅର୍ଥ ଅତି ପ୍ରଶସ୍ତ । ଜନ୍ମକାଳରୁ ମୃତ୍ୟୁ ପର୍ଯ୍ୟନ୍ତ ପ୍ରାଣୀ ଶିକ୍ଷା କରେ

ଅନୁକରଣ, ଅଧ୍ୟୟନ, ଉପଦେଶ ଶ୍ରବଣ କିମ୍ବା ନିଜର ଅନୁସନ୍ଧାନ ଏବଂ ବୁଦ୍ଧିବଳରେ ସଂସାର କାର୍ଯ୍ୟାବଳୀ ଅବଲୋକନଦ୍ୱାରା ସାରାସାର, ନ୍ୟାଯ୍ୟାନ୍ୟାଯ୍ୟ ପ୍ରଭୃତି ପ୍ରତ୍ୟକ୍ଷ କରିବା ଶିକ୍ଷାର ଅନ୍ତର୍ଗତ । ଏହି ଶିକ୍ଷାର ସମସ୍ତ ବିଭାଗ ମଧ୍ୟରେ ଅଧ୍ୟୟନ ଓ ଉପଦେଶ ଶ୍ରବଣ ପ୍ରଧାନ; କାରଣ ଏହି ଦୁଇ ଗୋଟି ବିଷୟ ମନୁଷ୍ୟର ଉଦ୍ୟମ ଓ ଯତ୍ନର ସାପେକ୍ଷ, ଅନ୍ୟଗୁଡ଼ିକ ଆପେ ଆପେ ସମ୍ପାଦିତ ହୁଏ । ପ୍ରଥମରେ ଅନୁକରଣଦ୍ୱାରା ଶିଶୁ ଚାଲିବାକୁ, କଥା କହିବାକୁ ଶିକ୍ଷା କରେ ଏବଂ ହସ୍ତ ପଦ ଚାଳନାଦି ପ୍ରତ୍ୟକ୍ଷରେ ସ୍ଥୂଳ ପଦାର୍ଥର ଜ୍ଞାନ ଲାଭ କରେ । ପରିଶେଷରେ ବୁଦ୍ଧି କ୍ରମଶଃ ପରିପକ୍ୱ ହୋଇ ଆସିଲେ ସେହି ଅନୁକରଣ ସାହାଯ୍ୟରେ ତାହାର ମାନସିକ ଚାଳନା ହେଉଥାଏ । ଏହି ମାନସିକ ପରିଚାଳନା ମନୁଷ୍ୟର ମନୁଷ୍ୟତ୍ୱ ଅର୍ଥାତ୍ ଯାହାଲାଗି ମନୁଷ୍ୟ ଗୋମେଷାଦି ପଶୁମାନଙ୍କଠାରୁ ଭିନ୍ନ । କେତେକ ଦାର୍ଶନିକମାନଙ୍କ ମତରେ ମନୁଷ୍ୟଠାରେ ଜନ୍ମଗତ ପ୍ରବୃତ୍ତି (Instinct) ଅଳ୍ପ ଏବଂ ପଶୁମାନଙ୍କଠାରେ ତାହା ଅଧିକ । କାରଣ ମନୁଷ୍ୟକୁ ଯେଉଁ ବୁଦ୍ଧି ପ୍ରଦତ୍ତ ହୋଇଛି ତାହା ବଳରେ ଅନୁକରଣଦ୍ୱାରା ମନୁଷ୍ୟ ଅନେକ ବିଷୟ ଶିକ୍ଷା କରିବାକୁ ସକ୍ଷମ । ବର୍ତ୍ତମାନ ସେହି ବୁଦ୍ଧିର ଧାରଣା ଶକ୍ତି ଉଦିତ ହେଲେ ମାନସିକ ଚାଳନାର ଆରମ୍ଭ ହୁଏ । କ୍ରମଶଃ ଶିଶୁ ଶିକ୍ଷା କରେ—ସେ ଏତେ ଉଚ୍ଚରୁ ଡେଇଁଲେ ଗୋଡ଼ ଭାଙ୍ଗିଯିବ, ଅଗ୍ନିଶିଖା ଧରିଲେ ହାତ ପୋଡ଼ିଯିବ, ଏ ବ୍ୟକ୍ତିକୁ ପ୍ରହାର କଲେ ଏହାର କଷ୍ଟ ହେବ, ବର୍ତ୍ତମାନ ତାଙ୍କୁ କିଛି କହିବା ନାହିଁ, କାରଣ ସେ ରାଗି ଅଛନ୍ତି, ଏହିପରି ନାନାବିଧ ବିଷୟ ନିଜର ଇନ୍ଦ୍ରିୟମାନଙ୍କ ସାହାଯ୍ୟରେ ଓ ବୁଦ୍ଧିର ନେତୃତ୍ୱରେ ସେ ଶିକ୍ଷା କରିବାକୁ ଆରମ୍ଭ କରେ । ଅତଏବ ଏଥିରୁ ସ୍ପଷ୍ଟ ବୋଧ ହେଉଅଛି ଯେ ବିନା ଅଧ୍ୟୟନରେ କେବଳ ମାନବ ସମାଜରେ ଥାଇ ଅନୁକରଣଦ୍ୱାରା ମନୁଷ୍ୟ ଶିକ୍ଷାଲାଭ କରିବାକୁ ସକ୍ଷମ । କିନ୍ତୁ ମନୁଷ୍ୟର ଯେଉଁ ବିଶାଳ ମାନସ ଅଧ୍ୟୟନ, ସତ୍ସଙ୍ଗ ଓ ସଦୁପଦେଶଦ୍ୱାରା ଯେତେ ଦୂର ପ୍ରସାରିତ ହୁଏ, ଅନ୍ୟ କାହାର ସାହାଯ୍ୟରେ ସେରୂପ ହୁଏ ନାହିଁ । ଅଧ୍ୟୟନ

ପ୍ରକୃତ ମନୁଷ୍ୟର ବୋଧଶକ୍ତି, ଧାରଣା ଶକ୍ତି, ବୁଦ୍ଧି ଓ ଜ୍ଞାନକୁ ଉଜ୍ଜ୍ୱଳ କରେ । ଏହି ସଂସାରରେ ଯେତେ ଅଦ୍ଭୁତ କର୍ମ ଦେଖୁଅଛ, କରୁଅଛ, କରିବାକୁ ଆଶା ବାନ୍ଧୁଅଛ, ସେସବୁର ମୂଳ ଅଧ୍ୟୟନ । ଯେପରି ପଶୁ ସମାଜରେ ଯେ ଅଧିକ ବଳଶାଳୀ ସେ ନିମ୍ନଶ୍ରେଣୀସ୍ଥ ପଶୁ ଉପରେ ଆଧିପତ୍ୟ ସ୍ଥାପନ କରେ, ସେହିପରି ମନୁଷ୍ୟ ସମାଜରେ ଯେ ଯେତେ ଅଧିକ ବୁଦ୍ଧିମାନ୍ ସେ ସଂସାରର କର୍ମକ୍ଷେତ୍ରରେ ସେହି ଅନୁପାତରେ କୃତୀ । ଏହି ସୂତ୍ରରେ ଜଗତ୍ ପରିଚାଳିତ । ମନୁଷ୍ୟ ବିଦ୍ୟାସୋପାନରେ ଯେତେ ଉପରକୁ ଉଠେ ତେତେ ତାହାର ପଶୁଠାରୁ ବିଭିନ୍ନତାର ସୀମା ଦୂରକୁ ଦୂରକୁ ପଡ଼ିଥାଏ । ମନୁଷ୍ୟଠାରେ ଅଜନ୍ମରୁ ଭିନ୍ନ ଭିନ୍ନ ପ୍ରବୃତ୍ତି (Tendency) ଦେଖା ଦେଇଥାଏ, ଅର୍ଥାତ୍ ସେମାନଙ୍କର ବୁଦ୍ଧିର ଓ ରୁଚିର ପାର୍ଥକ୍ୟ ଓ ପରିମାଣର ତାରତମ୍ୟ ଅଛି । ଜଣେ ଜଣେ ବାଲ୍ୟରୁ ବୁଦ୍ଧିମାନ୍ । କେହି କେହି ସେହି ଅବସ୍ଥାରେ ସ୍ଥୂଳବୁଦ୍ଧି-ବିଶିଷ୍ଟ । କିନ୍ତୁ ଶେଷୋକ୍ତ ଶ୍ରେଣୀର ଲୋକେ ଚେଷ୍ଟା ଓ ଯତ୍ନଦ୍ୱାରା ବୁଦ୍ଧିକୁ ପରିପୁଷ୍ଟ କରି ପାରନ୍ତି ।

କ୍ଷୀଣକାୟ ବ୍ୟକ୍ତି ବ୍ୟାୟାମଦ୍ୱାରା ଯେପରି ଶରୀରର ମାଂସ ଓ ବୀର୍ଯ୍ୟ ବୃଦ୍ଧି କରିପାରେ, ସେହିପରି ପରିଶ୍ରମ ସ୍ୱୀକାର କରି ମାନସିକ ପରିଚାଳନା କଲେ ବୁଦ୍ଧି ଉଜ୍ଜ୍ୱଳ ଓ ପ୍ରଶସ୍ତ ହୋଇପାରେ । ସେ ଯାହାହେଉ, ଜଗତରେ ଏହା ତ ଦେଖାଯାଏ ଯେ ମନୁଷ୍ୟମାନଙ୍କର ସମାନ ବୁଦ୍ଧି ନୁହେଁ, ଅତଏବ ସମାନ କୌଶଳ ନୁହେଁ ଓ ସମାନ କାର୍ଯ୍ୟ ନୁହେଁ କିମ୍ବା କାର୍ଯ୍ୟରେ ସମସ୍ତଙ୍କୁ ସମାନ ପୁରସ୍କାର ମିଳେ ନାହିଁ । ତଦନନ୍ତର ରୁଚିର ପାର୍ଥକ୍ୟ । ଭିନ୍ନ ଭିନ୍ନ-ମନୁଷ୍ୟର ଭିନ୍ନ ଭିନ୍ନ ରୁଚି, ଭିନ୍ନ ଭିନ୍ନ ଶ୍ରେଣୀର ବିଭିନ୍ନ ରୁଚି ଓ ଭିନ୍ନ ଭିନ୍ନ କାଳର ଭିନ୍ନ ଭିନ୍ନ ରୁଚି । କେତେକ ବ୍ୟକ୍ତି କେଉଁ ମାର୍ଗ ଅବଲମ୍ବନ କରିବାକୁ ସେମାନଙ୍କର ବିଶେଷ ଇଚ୍ଛା, ତାହା ବାଲ୍ୟକାଳରେ ଅଳ୍ପାଧିକ ପରିମାଣରେ ଇଙ୍ଗିତସାରେ କାର୍ଯ୍ୟକଳାପଦ୍ୱାରା ପ୍ରକାଶ କରିଥାନ୍ତି । କାହାର ଯୁଦ୍ଧ କରିବାକୁ ମନ, କାହାର ବିଦ୍ୟାଧ୍ୟୟନ କରିବାକୁ ମନ, କାହାର କବିତା ଲେଖିବାକୁ, କାହାର ବକ୍ତୃତା ଦେବାକୁ, ଏହିପରି ନାନାପ୍ରକାର ।

ପ୍ରବୃତ୍ତି ( Tendency ) ବାଲ୍ୟକାଳରେ ଲକ୍ଷିତ ହୁଏ । ଏହି ସବୁ ପ୍ରବୃତ୍ତି କେବଳ ସମାଜ ଓ ଅଧ୍ୟୟନଦ୍ୱାରା ପରିପକ୍ୱ ହୁଏ । କିନ୍ତୁ ତାହାର କାହାରିଠାରେ ଏହି ରୂପ ପ୍ରବୃତ୍ତିର ପ୍ରାବଲ୍ୟ ଲକ୍ଷିତ ହୁଏ, ଯାହାକୁ ପ୍ରତିଭା ବୋଲିଯାଏ । ଏହି ପ୍ରତିଭା ଅତି ଅଳ୍ପସଂଖ୍ୟକ ବ୍ୟକ୍ତିଙ୍କଠାରେ ଜଗଦୀଶ୍ୱରଙ୍କଦ୍ୱାରା ଅର୍ପିତ ହୁଏ । ତଥାପି ଏହିପରି ପ୍ରତିଭାଶାଳୀ ବ୍ୟକ୍ତିମାନଙ୍କଠାରେ କିମ୍ବା ଅନ୍ୟାନ୍ୟ ଲୋକଙ୍କର ହୃଦୟରେ ଯେ ସମସ୍ତ ପ୍ରବୃତ୍ତି ଅଛି, ଜନସାଧାରଣରେ ମଧ୍ୟ ତାହା ଅଛି । କେବଳ ପରିମାଣର ପାର୍ଥକ୍ୟ ଏବଂ କୌଣସି ବିଶେଷ ପ୍ରବୃତ୍ତି ଭିନ୍ନ ଭିନ୍ନ ବ୍ୟକ୍ତିମାନଙ୍କ ହୃଦୟରେ ପ୍ରବଳ । ତାହା ନୋହିଲେ ମନୁଷ୍ୟଠାରେ ଯେ ସମସ୍ତ ଶକ୍ତି ଲକ୍ଷିତ ହୁଏ, ତାହା ସମଗ୍ର ମାନବସମାଜରେ ଅଳ୍ପାଧିକ ପରିମାଣରେ ଅଛି । ବର୍ତ୍ତମାନ ଦେଖାଯାଉ, ପ୍ରତିଭାଶାଳୀ ବ୍ୟକ୍ତିମାନେ କିଏ । ଆଜିକାଲି ଇଂରେଜୀ ଦାର୍ଶନିକମାନଙ୍କ ମତରେ ମନୋବୃତ୍ତି ( mental phenomena ) ତିନିଭାଗରେ ବିଭକ୍ତ । ଯଥା—(1) Cognition, (2) Affective states, (3) Conation । ପ୍ରଥମ ବିଭାଗଟି ଆମ୍ଭମାନଙ୍କ ସମସ୍ତଙ୍କର ପ୍ରତ୍ୟକ୍ଷ ଜ୍ଞାନ, ନିର୍ଣ୍ଣୟ, ଯୁକ୍ତି ଇତ୍ୟାଦି । ଦ୍ୱିତୀୟଟି ଆମ୍ଭମାନଙ୍କର କଷ୍ଟ, ସୁଖ, ଭୟ, ଆଶା, ନିରାଶା, ଅନୁତାପ ଇତ୍ୟାଦି; ତୃତୀୟ ବିଭାଗଟି ଆମ୍ଭମାନଙ୍କର ଇଚ୍ଛା, ଉଦ୍ଦେଶ୍ୟ, ପ୍ରଚେଷ୍ଟା, ଅନୁମାନ ଇତ୍ୟାଦି । ସଂସାରରେ ଏପରି କୌଣସି କାର୍ଯ୍ୟ ନାହିଁ, ଯାହାର କୌଣସି ଉଦ୍ଦେଶ୍ୟ ନାହିଁ । ଅନେକ ବିଷୟ ପ୍ରଥମ ଦୃଷ୍ଟିରେ ବୋଧ ହୁଏ ଯେ ନିରୁଦ୍ଦେଶ୍ୟ, କିନ୍ତୁ ଅତି ସୂକ୍ଷ୍ମଭାବରେ ଚିନ୍ତା କରି ଦେଖିଲେ ଦେଖାଯିବ ଯେ ଏହାର କୌଣସି ଉଦ୍ଦେଶ୍ୟ ଅଛି—ତାହା ସ୍ଥିର କରିବା କଷ୍ଟିପଥରେ ସୂକ୍ଷ୍ମ ଚିନ୍ତାସାପେକ୍ଷ । ପୁଣି ସମସ୍ତ ଉଦ୍ଦେଶ୍ୟର କାରଣ ଅନୁଭବ ବୃତ୍ତି । ବସ୍ତୁତଃ ଆମ୍ଭେମାନେ ଯେ ସମସ୍ତ କର୍ମ କରୁଁ ତହିଁରେ ମାନସିକ ଉପରୋକ୍ତ ତିନିଗୋଟି ବୃତ୍ତି ସର୍ବଦା ବିଦ୍ୟମାନ । କେବଳ କୌଣସି ଅବସ୍ଥାର ଆଧିକ୍ୟ ବିବେଚନାରେ ଆମ୍ଭେମାନେ ନାମକରଣ କରିଥାଉଁ । ସେ ଯାହାହେଉ, ବର୍ତ୍ତମାନ ବକ୍ତବ୍ୟ ଏହି ଯେ ଆମ୍ଭେମାନେ ଇଚ୍ଛାଦ୍ୱାରା ଚାଳିତ ହୋଇ,

ଆନନ୍ଦ ଲାଭ ଆଶାରେ ବୁଦ୍ଧି ସାହାଯ୍ୟରେ ସମସ୍ତ ଶକ୍ତି ଙ୍କ କାର୍ଯ୍ୟ ସମ୍ପୂର୍ଣ୍ଣ କରନ୍ତି । ଇଚ୍ଛା ନ ଥିଲେ କାର୍ଯ୍ୟ ହୁଏ ନାହିଁ । ଅନିଚ୍ଛାରେ ମଧ୍ୟ ଇଚ୍ଛା ଅଛି, ଅର୍ଥାତ୍ ଇଚ୍ଛା ବିରୁଦ୍ଧରେ କାର୍ଯ୍ୟ କଲେ ମଧ୍ୟ ସେହି କାର୍ଯ୍ୟରେ ଇଚ୍ଛା ଗୁପ୍ତ ଭାବରେ ଥାଏ । ଅତଏବ ମଧ୍ୟ ଆମ୍ଭମାନଙ୍କର ଇଚ୍ଛାର ମୂଳ ଆନନ୍ଦ ଲାଭ । ଆନନ୍ଦ ଲାଭର ଆଶା ନ ଥିଲେ ଇଚ୍ଛାର ଅସ୍ତିତ୍ୱ ନାହିଁ । ତେଣୁ ବୁଝିବାକୁ ହେବ ଯେ, ଅନିଚ୍ଛାରେ ଯେଉଁ ଇଚ୍ଛା ଥାଏ ସେ ନିଜର ଆନନ୍ଦଲାଭର ଆଶା ଉପରେ ପ୍ରତିଷ୍ଠିତ; କିନ୍ତୁ ସେହି ଆନନ୍ଦ ଏତେ ଅଳ୍ପ ଯେ ସହଜରେ ତାହା ଅନୁଭୂତ ହୁଏ ନାହିଁ (ତେବେ ଯୋଗୀ ସମସ୍ତ କାର୍ଯ୍ୟରେ ଆନନ୍ଦ ଲାଭ କରନ୍ତି ) ଏହି ବିଷପ୍ରକୃତି କଳ୍ପିତ ସୂକ୍ଷ୍ମ ଶକ୍ତିରେ ସଂରୁଦ୍ଧ ହେବ— ଅତଏବ ଏଥିରୁ ଜଣାଯାଏ ଯେ ଅନିଚ୍ଛାରେ ଯେଉଁ ଇଚ୍ଛା ଅଛି, ତହିଁରେ ଯଦି ଆନନ୍ଦ ରହିଲା, ତେବେ ଇଚ୍ଛାପୂର୍ବକ ଯେଉଁ କାର୍ଯ୍ୟ କରାହୁଏ ତହିଁରେ ତ ନିଶ୍ଚୟ ଆନନ୍ଦ ଅଛି । (କେବଳ ଇନ୍ଦ୍ରିୟତୃପ୍ତି କିମ୍ବା ହାସ୍ୟ ରସ ଅର୍ଥରେ ଆମ୍ଭେମାନେ ଆନନ୍ଦ ଶବ୍ଦ ବ୍ୟବହାର କରୁ ନାହୁଁ— ଏହାର ଅର୍ଥ ଚିତ୍ତପ୍ରସାଦ ) ।

ସେହି ଇଚ୍ଛା ଯେତେ ଅଧିକ, ତେତେ ଆନନ୍ଦ ଲାଭ; ଯେତିକି ଆନନ୍ଦ ଲାଭର ଆଶା, ତେତିକି ଉଦ୍ଦେଶ୍ୟ ସାଧନର ଇଚ୍ଛାର ପ୍ରାବଲ୍ୟ । ପ୍ରତିଭାଶାଳୀ ବ୍ୟକ୍ତିମାନଙ୍କ ମନରେ ଏହି ଉଦ୍ଦେଶ୍ୟସାଧନର ଇଚ୍ଛା ଯେ କେତେଦୂର ପ୍ରବଳ ଏବଂ ତତ୍ ସହିତ କେବଳ ଇଚ୍ଛାଦ୍ୱାରା (କାର୍ଯ୍ୟଦ୍ୱାରା ନୁହେଁ ) ସେମାନଙ୍କର ଯେ କି ପ୍ରକାର ଅସୀମ ଓ ଅତୁଳନୀୟ ଆନନ୍ଦ ସଞ୍ଜାତ ହୁଏ, ତାହା କେବଳ ସେହିମାନେ ବୁଝିବାକୁ ସକ୍ଷମ, ଆଉ କେହି ନୁହନ୍ତି । ଜୀବନର ଉଦ୍ଦେଶ୍ୟସାଧନ ପାଇଁ ସେହି ଇଚ୍ଛା ଓ ଆନନ୍ଦର ନିରନ୍ତର ଅନୁଧାବନର ନାମ ପ୍ରତିଭା । ସଂସାରର କାର୍ଯ୍ୟକ୍ଷେତ୍ରରେ ଉଦ୍ଦେଶ୍ୟ ପଥରେ ଯେ କେତେ କଣ୍ଟକ ଅତିକ୍ରମ କରି ଯିବାକୁ ହୁଏ, ତାହା ଭାବିଲେ ଏହି ପ୍ରତିଭାର ଯଥାର୍ଥ ମୂଲ୍ୟ ବୁଝାଯିବ । ମାନବ ସର୍ବଦା ସ୍ୱାର୍ଥକେନ୍ଦ୍ରିକ । ତାହାର ସକଳ କାର୍ଯ୍ୟ ନିଜର ମନସ୍ତୃପ୍ତି ଆଶାରେ;

ଅତଏବ ତାହାର ଇଚ୍ଛାପଥ ନିରନ୍ତର କଣ୍ଟକମୟ କରି କଷ୍ଟ ଉତ୍ପାଦନ କରନ୍ତି । କଷ୍ଟ ସହଜ ସହଜ ପୁଣି ଇଚ୍ଛାପୂର୍ବ ସମସ୍ତ ସମୟରେ ଘଟିଥାଏ । ଇଚ୍ଛାଧ୍ୱଂସ, ପୁନର୍ବାର ଇଚ୍ଛାର ଆବିର୍ଭାବ, ପୁନର୍ବାର ଧ୍ୱଂସ ଏହିପରି କ୍ରମରେ ମନୁଷ୍ୟଜୀବନ ଅତିବାହିତ ହୁଏ । ଏହିପରି ଜୀବନ ଅତି ହୀନ ଜୀବନ । ଗୋଟିଏ ଦଉଡ଼ି ବନ୍ଧରେ ଯଦି ମନୁଷ୍ୟ ଉଦ୍ଦେଶ୍ୟମୁଖୀ ହୁଏ, ତେବେ ସେ ମନୁଷ୍ୟପଦବାଚ୍ୟ ନୁହନ୍ତି । କିନ୍ତୁ ସାଧାରଣତଃ ଦେଖାଯାଏ ଯେ, ମନୁଷ୍ୟ ଅନେକ ବିଘ୍ନ ନିବାରଣ ପୂର୍ବକ ଜୀବନର ଅନେକ ଉଦ୍ଦେଶ୍ୟ ସମାଧାନ କରିଥାଏ । କାରଣ ମନୁଷ୍ୟମନରେ ତୃପ୍ତିର ଆଶା ପ୍ରବଳ । ବର୍ତ୍ତମାନ ଆମ୍ଭମାନଙ୍କର କହିବାର ଉଦ୍ଦେଶ୍ୟ ଏହି ଯେ, ପ୍ରତିଭାଶାଳୀ ବ୍ୟକ୍ତି ସହସ୍ର ସହସ୍ର ବାଧା ଅତିକ୍ରମ କରିବାକୁ ସମର୍ଥ ଏବଂ ତାଙ୍କର ବିଘ୍ନ ପ୍ରତି ଭ୍ରୂକ୍ଷେପ ନ କରିବାର କ୍ଷମତା ଗୋଟିଏ ବିଶେଷତ୍ୱ ଅଟେ । ଯତ୍ନଶୀଳ ଓ ଉଦ୍ୟମୀ ମିଜା କି କେତେବେଳେ ଅର୍ଜନ କରିବାକୁ ଯାଇ ବାଧାପ୍ରାପ୍ତିରେ ବିରକ୍ତ ହୋଇ ଘରକୁ ଫେରି ଆସନ୍ତି ଓ ନିଜର ସନ୍ତାନମାନଙ୍କୁ ଉପବାସ କରାନ୍ତି ? ସଂସାରକ୍ଷେତ୍ରରେ ପ୍ରତିଭାଶାଳୀ ବ୍ୟକ୍ତି ଜଣେ ଧର୍ମନିଷ୍ଠ ପଥିକ । ସେ ସର୍ବଦା ନିଜର ଉଦ୍ଦେଶ୍ୟ-ମନ୍ଦିର ଆଡ଼କୁ ଗମନ କରନ୍ତି । ହଠାତ୍ ମାର୍ଗମଧ୍ୟେ ଅରଣ୍ୟ ଦେଖିଲେ ସେ ଫେରନ୍ତି ନାହିଁ । ରାସ୍ତାରେ ଅନେକ ବିଘ୍ନ ତାଙ୍କୁ କଷ୍ଟ ଦିଏ ସତ, କିନ୍ତୁ ସେ ଉଦ୍ଦେଶ୍ୟବିମୁଖ ହୁଅନ୍ତି ନାହିଁ, ମନ୍ଦିର ଦର୍ଶନ କରିବାର ତାଙ୍କର ଯେ କି ଅନୁପମ ସନ୍ତୁଷ୍ଟି ହେବ, ସେହି ଆନନ୍ଦଦ୍ୱାରା ସେ ସର୍ବପ୍ରକାର ବିଘ୍ନକୁ ଅତିକ୍ରମ କରନ୍ତି ।

ମନୁଷ୍ୟର ଜୀବନଟି ଅସଂଖ୍ୟ ବିଘ୍ନ ଦ୍ୱନ୍ଦ୍ୱ ସଂଗ୍ରାମରେ କଟିଯାଏ । ବୃଦ୍ଧକାଳରେ ଅବଶ୍ୟ ଜୀବନର ଉଦ୍ଦେଶ୍ୟ ଭୁଲିଯିବାକୁ ହୁଏ । କିନ୍ତୁ ଜୟଲାଭ ଉତ୍ତରେ ଅନ୍ୟ ମନୁଷ୍ୟ ପରିଶ୍ରାନ୍ତ ହୋଇ ଅବଶ୍ୟମ୍ଭାବୀ ବିପଦସମୂହକୁ ଆଗରୁ ଭାବନା କରି ଯୋଉ ଉଦ୍ଦେଶ୍ୟରୁ ବିରତ ହୁଏ, ପ୍ରତିଭାଶାଳୀ ବ୍ୟକ୍ତି ସେପରି ହୁଅନ୍ତି ନାହିଁ । ପ୍ରତ୍ୟେକ ଜୟଲାଭ ତାଙ୍କର

ସ୍ୱୀ ଅନନ୍ଦକୁ ଉତ୍ତେଜିତ କରେ ଏବଂ ପରାସ୍ତ ହେଲେ ଜୟଲାଭ ଆଶା ଦ୍ୱିଗୁଣ ପ୍ରବଳ ହୁଏ । ଇଂରାଜରେ ଗୋଟିଏ କଥା ଅଛି:—"Where there is a will there is a way" ଅର୍ଥାତ୍ ଇଚ୍ଛାଥିଲେ ମାର୍ଗ ଅଛି । 'will' ଅର୍ଥକୁ କେହ କେହି ଯଥାର୍ଥ ହୃଦୟଙ୍ଗମ କରି ନପାରି ଏହି ଉକ୍ତିର ଯଥାର୍ଥ୍ୟ ବୁଝିପାରନ୍ତି ନାହିଁ । ସେମାନଙ୍କ ମତରେ ଏହା ଯେପରି ଗୋଟିଏ ଖେଳିବାର ପଦାର୍ଥ । ସେମାନେ କହନ୍ତି, "କି ହିଁକି, ମୋର ତ ସମ୍ପୂର୍ଣ୍ଣ ଇଚ୍ଛା ଅଛି, କିନ୍ତୁ କାର୍ଯ୍ୟରେ ଏତେ ଝଞ୍ଜଟ ଯେ ଘଡ଼ିଏ ବାହାରିବାକୁ ସମୟ ନାହିଁ, ଜଗନ୍ନାଥ ଦର୍ଶନ କରିବି କିପରି ?" କିନ୍ତୁ ସେମାନଙ୍କର ଇଚ୍ଛା ଯଦି ପ୍ରକୃତ ଇଚ୍ଛା ହୁଏ, ତାହାହେଲେ ସେମାନେ ଘରକାର୍ଯ୍ୟ କରି ସୁଦ୍ଧା ଜଗନ୍ନାଥ ଦର୍ଶନ କରି ପାରିବେ । ସେମାନଙ୍କର ଇଚ୍ଛା ଆକାଶରେ ଭାସମାନ ତୁଳା ପରି ଝଞ୍ଜଟରୂପ ଝଞ୍ଜା ପବନରେ ଉଡ଼ିଯାଏ । କିନ୍ତୁ ପ୍ରକୃତ ଇଚ୍ଛା ଦୃଢ ବିଶାଳ ବୃକ୍ଷ ପରି, ପ୍ରତିଭାଶାଳୀର ଇଚ୍ଛା ଗିରିତୁଲ୍ୟ, ଯାହା ସହସ୍ର ସହସ୍ର ସମୁଦ୍ରତରଙ୍ଗ ଓ ବ୍ୟାଘାତ ସହ୍ୟ କରି ସେହିପରି ଦୃଢ଼ ଥାଏ । ଏପରି ପ୍ରତିଭାର ଗୋଟିଏ ଅସାଧାରଣ ଦୃଷ୍ଟାନ୍ତ ନେପୋଲିଅନ ।

ପାଠକେ, ପ୍ରତିଭା ଶବ୍ଦର ଏହି ସାମାନ୍ୟ ବ୍ୟାଖ୍ୟାରୁ କବିଙ୍କର କିମ୍ବା ସମାଲୋଚକଙ୍କର ପ୍ରତିଭାର ମୂଲ୍ୟ କିଞ୍ଚିତ୍ ବୁଝି ପାରୁଥିବେ । ମୌଳିକତା ( originality ) ପ୍ରତିଭାର କଷଟି ପଥର । ଏତଦ୍ୱାରା ତାହା ସୁବର୍ଣ୍ଣ କି ପିତଳ ପାଠକେ ସହଜରେ ବୁଝି ପାରିବେ । କିନ୍ତୁ ଏହା ନିରୂପଣ କରିବାକୁ ଗଲେ ଅନେକ ପୁସ୍ତକ ପଢ଼ିବାକୁ ହେବ ଏବଂ ଭାବୁକ ହେବାକୁ ହେବ । ଭାବ ନଥିଲେ ଭାବନା ଗ୍ରହଣ କରିବା ସହଜ ନୁହେଁ; ମୌଳିକତା କଳ୍ପନା କରିବା ତ ଦୂରର କଥା । କିନ୍ତୁ ଯେ ନ ବୁଝି ପାରିବ ଏପରି ନୁହେଁ, ତେବେ ତୁମ୍ଭର ବିଗ୍ରହର ଶକ୍ତି ଉପରେ ନିର୍ଭର କରିଯାଇ ନ ପାରେ । ଯେଉଁମାନେ ଯେତେ ପରିମାଣରେ ଭାବୁକ ବା ରସିକ, ସେମାନେ ସେହି ପରିମାଣରେ ସତ୍କାବ୍ୟରୁ ଆନନ୍ଦାନୁଭବ କରନ୍ତି । ପ୍ରାଚୀନ କବି କହିଅଛନ୍ତି ।

"ଗୁଣୀ ଗୁଣଂ ବେତ୍ତି ନ ବେତ୍ତି ନିର୍ଗୁଣୋ
ବଲୀ ବଲଂ ବେତ୍ତି ନ ବେତ୍ତି ନିର୍ବଲଃ ।
ପିକୋ ବସନ୍ତସ୍ୟ ଗୁଣଂ ନ ବାୟସଃ
କରୀ ଚ ସିଂହସ୍ୟ ବଲଂ ନ ମୂଷିକଃ ।

ଅନ୍ୟତ୍ର ମଧ୍ୟ ସୁମଧୁର କବିତା ସମ୍ବନ୍ଧରେ କବି କହି ଅଛନ୍ତି—
"କବିତା କୋମଳରସେନ ରଚିତା ରସପୂର୍ଣ ରଚିତମ୍ ।
ଯଦି ସା ପତତି କଠିନହୃଦୟେ ସନ୍ଧିପଦଭଗ୍ନା ଭବତ୍ୟଲଗ୍ନା ।"

ଏଣୁ ସାହିତ୍ୟ ସମାଲୋଚନା କରିବାକୁ ସତ୍ ସମାଲୋଚକଙ୍କର ସମ୍ପୂର୍ଣ୍ଣ ଅଧିକାର । ବସନ୍ତ କୋକିଳଠାରୁ ନିନ୍ଦା ବା ପ୍ରଶଂସାବଚନ ଶୁଣିଲେ ପ୍ରଫୁଲ୍ଲ ହୁଏ; ବାୟସଠାରୁ ନିନ୍ଦା ବା ସ୍ତୁତିବଚନ ଶୁଣିଲେ ଘୃଣାର ସହିତ କିଞ୍ଚିତ୍ ମୃଦୁ ହାସ୍ୟ କରେ । ମାନସିକ କୋମଳତା ଓ ମୃଦୁଚିନ୍ତା କାବ୍ୟାଦି ଲେଖକମାନଙ୍କର ପ୍ରଧାନ ବିଶେଷତ୍ୱ ଅଟେ । ଏଣୁ ସାମାନ୍ୟ ବାଧା ବା ମାନସିକ ଯନ୍ତ୍ରଣା, କଠୋର ରବିତାପ ଲଜ୍ଜାବତୀ ଲତାକୁ ଶୁଷ୍କ କଲାପ୍ରାୟ ସେମାନଙ୍କର ମନଃସନ୍ତାପ ଜନ୍ମାଏ । କେବଳ ପ୍ରତିଭାର ଶୀତଳ ସ୍ପର୍ଶରେ ସେହି ମନ ପୁନର୍ବାର ଉତ୍ତେଜିତ ହୁଏ । ପୁନଶ୍ଚ ସାହିତ୍ୟକ୍ଷେତ୍ରରେ ପ୍ରତିଭାଶାଳୀ ବ୍ୟକ୍ତିମାନଙ୍କର ପ୍ରତିଭା ଅନ୍ୟାନ୍ୟ ପ୍ରତିଭାଠାରୁ ସୁକୁମାର ଅଟେ । କାରଣ ଏମାନେ ପାଠକ-ମାନଙ୍କର ମନ ଉପରେ ଅଧିକାର ସ୍ଥାପନ କରିବାକୁ ଇଚ୍ଛୁକ । ମନୁଷ୍ୟ ନିକଟରେ ସୂକ୍ଷ୍ମ ଓ ସୁଲଳିତ ଚିନ୍ତା ଅପେକ୍ଷା ସଂସାରରେ ପ୍ରକୃତିକ ଯେ ବେଶି ମନୋମୁଗ୍ଧକର, ତେଣୁ ଜଗତରେ ଅଧିକାଂଶ ବ୍ୟକ୍ତି କାର୍ଯ୍ୟପ୍ରିୟ ଅଲସଚିନ୍ତାପ୍ରିୟ ବା ଚିନ୍ତାଶୀଳ । ପ୍ରଚୁର ଅର୍ଥ ବ୍ୟୟ କରି, କେତେ ପରିଶ୍ରମ କରି ମକଦ୍ଦମା ଜୟ କଲେ କିମ୍ବା ନାନାବିଧ କୌଶଳରେ କିଞ୍ଚିତ୍ ଅର୍ଥଲାଭ କଲେ ଜଗତର ପ୍ରାୟ ସମସ୍ତ ଲୋକଙ୍କର ଯେପରି ଆନନ୍ଦ ହୁଏ, ସାହିତ୍ୟସେବାଦ୍ୱାରା କ୍ଷଣିକ ପ୍ରତିଲାଭ ଲୋକମାନଙ୍କର ସେପରି ମନସ୍ତୃପ୍ତି ଉତ୍ପାଦନ କରେ ନାହିଁ । କିନ୍ତୁ ସାଧାରଣ ବ୍ୟକ୍ତିମାନଙ୍କଠାରୁ

ଏହି ବିଷୟରେ ପ୍ରକୃତ ପ୍ରତିଭାଶାଳୀ ସାହିତ୍ୟସେବକମାନେ କାହିଁକି ପୃଥକ୍ । ଏମାନେ ସର୍ବାଂଶରେ ଉପରୋକ୍ତ ବିଷୟରେ ସମସ୍ତଙ୍କ ସହିତରେ ସମାନ । କେବଳ ଏତିକି ପ୍ରଭେଦ ଯେ, ଅର୍ଥଲାଭ, ମକଦ୍ଦମା ଜୟ, ରାଜା ବାହାଦୁର ପଦ ସେମାନଙ୍କୁ ଯେପରି ପରିମାଣରେ ପ୍ରୀତ କରାଏ, ସାହିତ୍ୟସେବା ମଧ୍ୟ ସେହି ପରିମାଣରେ କିମ୍ବା ତହିଁରୁ ବେଶି ପରିମାଣରେ ତୁଷ୍ଟ କରାଏ । ଲେଖକଙ୍କ ମନରେ ଚିତ୍ତବିନୋଦିନୀ ଭାବନା ଉଦିତ ହେଲେ, ସହୃଦୟ ପାଠକ ସତ୍ ସାହିତ୍ୟର ଭାବ ଅନୁଭବ କରି, ପ୍ରତିଭା-ଶାଳୀ ସମାଲୋଚକ ଲେଖକମାନଙ୍କର ମନ ଓ ପ୍ରତିଭାକୁ ଅନୁଧାବନ କରି ସେହିପରି ଆନନ୍ଦଲାଭ କରନ୍ତି । ସଂସାରର ଅନ୍ୟ ସମସ୍ତ କାର୍ଯ୍ୟରୁ ସାହିତ୍ୟସେବା ପ୍ରୀତିଜନକ ହେବାରୁ ସୁକୁମାର ସାହିତ୍ୟସଂକ୍ରାନ୍ତ ପ୍ରତିଭା ଜଗତର କାର୍ଯ୍ୟାବଳୀ ସହିତ ନିଜ ସୃଷ୍ଟି ଶେଷ ପର୍ଯ୍ୟନ୍ତ ଜାଗରିତ ହୁଏ ।

ସାହିତ୍ୟକ୍ଷେତ୍ରରେ ତିନିଜଣ ପ୍ରଧାନ କାର୍ଯ୍ୟକାରୀ ବ୍ୟକ୍ତି ଲେଖକ, ସମାଲୋଚକ ଓ ପାଠକ । କେବଳ ସୁଲେଖକ ଥିଲେ ସାହିତ୍ୟର ମୂଲ୍ୟ କିଛି ନୁହେଁ । ତାହା ଗିରିଗର୍ଭ ଲୁକ୍କାୟିତ ରତ୍ନରାଶି ତୁଲ୍ୟ । ଲେଖକଙ୍କର ମନସ୍ତୃପ୍ତି ବ୍ୟତୀତ ଦ୍ୱିତୀୟ (Secondary ) ବାସନା ଏହି ଯେ ପାଠକ-ମାନଙ୍କ ହୃଦୟରେ ଆନନ୍ଦ ଉତ୍ପାଦନ କରିବ ଏବଂ ସମାଲୋଚକଙ୍କର ଉଦାର ମନରେ ସ୍ଥାନଲାଭ କରିବ । ପାଠକ ନ ଥିଲେ ସେମାନଙ୍କର ପ୍ରତିଭା ନାହିଁ ବୋଲି ବୁଝିବାକୁ ହେବ । ସହୃଦୟ ପାଠକମାନଙ୍କର ଅଭିରୁଚି ସାହିତ୍ୟସେବାର ଗୋଟିଏ ପ୍ରଧାନ ଅଙ୍ଗ । ପଠନ ଓ ଆଲୋଚନା ଏବଂ ସମ୍ୟକ ରୂପରେ ଅନ୍ୱେଷଣା (ସମାଲୋଚନା) ସମାନ ନୁହେଁ ।ଏଥି ମଧ୍ୟରେ ବିଶେଷ ତାରତମ୍ୟ ଅଛି । ପାଠକମାନଙ୍କ ମଧ୍ୟରେ ସମାଲୋଚକ ଅଛନ୍ତି ସତ୍ୟ, କିନ୍ତୁ ସମାଲୋଚକଙ୍କର କାର୍ଯ୍ୟ ପୃଥକ୍ ଓ ମହତ୍ ଅଟେ, ବୋଧହୁଏ ଲେଖକଙ୍କ କାର୍ଯ୍ୟ ଅପେକ୍ଷା ଗୁରୁତର । ପାଠକମାନେ କିଛି ବିଷୟ ପାଠ କରି ନିଜ ରୁଚି ଅନୁସାରେ ଆନନ୍ଦିତ କିମ୍ବା ବିରକ୍ତ ହୁଅନ୍ତି ।

କିନ୍ତୁ ସମାଲୋଚକ ଏହା ଛଡ଼ା କାବ୍ୟର ଆଲୋଚନା କରନ୍ତି। ଆଲୋଚନା କଣ ? ଲିଖିତ ବିଷୟର ସ୍ଥୂଳ ଅର୍ଥ ( ଅର୍ଥାତ୍ ଯାହା ପାଠକ ମାନଙ୍କ ଆନନ୍ଦ, ଘୃଣା, ଖେଦ ପ୍ରଭୃତି ଉତ୍ପାଦନ କରୁଅଛି ) ଅନୁଭବ କରି ଲେଖକଙ୍କର ଲେଖିବାର କୌଶଳ, ତାଙ୍କର ତାତ୍କାଳିକ ମାନସିକ ଅବସ୍ଥା, ପ୍ରତିଭାର ଗତି, ସେହି କୌଶଳର ଔଚିତ୍ୟ,ଚୌର୍କାତ୍ୟ କିଣ୍ଟଧି ପାଠକମାନଙ୍କ ମନରେ କୌଣସି ଭାବ ଜାଗରିତ କରିବା ନିମନ୍ତେ ଲେଖକଙ୍କର ଉପାୟାନୁସନ୍ଧାନ ଏବଂ ତାହାର ସାଫଲ୍ୟ ପ୍ରଭୃତି ଅତିସୂକ୍ଷ୍ମ ଭାବରେ ଉଦାର ମନରେ ବିଶ୍ଳେଷଣ କରିବାର ନାମ ଆଲୋଚନା। ସେହି ଆଲୋଚନା ସମ୍ୟକ୍ ପ୍ରଚାର ଉଦ୍ଦେଶ୍ୟ ପରିଗ୍ରାହୀ ରୂପରେ ଅନୁଷ୍ଠିତ ହେଲେ ସମାଲୋଚନା ପଦବାଚ୍ୟ ହୁଏ।

କବିଙ୍କର ପ୍ରତିଭା ଓ ମନକୁ ଏହିପରି ଆଲୋଚନା କରିବାକୁ ଗଲେ ସାଧାରଣ ପ୍ରତିଭା ଓ ପ୍ରଶସ୍ତ ମନର ଆବଶ୍ୟକ। ସେଥି ନିମନ୍ତେ ଆମ୍ଭେମାନେ କହୁଁ ଯେ, ଲେଖକଙ୍କର ପ୍ରତିଭାଠାରୁ ସମାଲୋଚକଙ୍କର ପ୍ରତିଭା ମହତ୍।

ଲେଖକଙ୍କର ମନ ଅପେକ୍ଷା ସମାଲୋଚକଙ୍କର ମନ ଅଧିକ ଉଦାର। ଲେଖକଙ୍କର ପରିଶ୍ରମ ଅପେକ୍ଷା ସମାଲୋଚକଙ୍କର ପରିଶ୍ରମ ଅଧିକ।

କବିମାନଙ୍କର କଳ୍ପନା ସର୍ବଥା ଏକଦେଶଦର୍ଶୀ। ଉଦାରତା ଯେ ନାହିଁ ଏପରି କହିବାକୁ ହେବ ନାହିଁ। ସେମାନେ ପ୍ରକୃତିର ପ୍ରଜା ଓ ଅଧୀନ ହୋଇ ସୃଷ୍ଟି ପ୍ରକୃତି ଉପରେ ନିଜର ଇଚ୍ଛା ନୂତନ ଜଗତ୍ ସୃଷ୍ଟି କରେ ( ଅବଶ୍ୟ ପ୍ରକୃତିର ଉପାଦାନ ସାହାଯ୍ୟରେ ) ଇଚ୍ଛା ହେଲେ କଳ୍ପନା ସେମାନଙ୍କ ଲାଗି ନାୟିକାକୁ ସର୍ବାଙ୍ଗସୁନ୍ଦର କରେ। ଇଚ୍ଛା ହେଲେ ନାୟିକା "ସର୍ବାବୟବାନବଦ୍ୟା" କିନ୍ତୁ ସମାଲୋଚକ ପ୍ରକୃତି-ରାଜ୍ୟର ପ୍ରକୃତ ପରିମାପକ (Standard) ରେ କଳ୍ପନାରାଜ୍ୟକୁ ଶାସନ କରନ୍ତି। ଶାସନ କରିବାକୁ ଗଲେ ନାନାବିଧ ଅନ୍ତରାୟ ମଧ୍ୟରେ

ବାଧା ଦଏ । ମନୁଷ୍ୟର ସ୍ୱଭାବ ଓ ମାନସିକ ବୃତ୍ତି ପ୍ରାୟ ଏକ ଦେଶବର୍ତ୍ତୀ (One-sided) । ଅର୍ଥାତ୍ ଯାହାକୁ ଦେଖି ନ ପାରିବେ ତାହାର ସମସ୍ତ କାର୍ଯ୍ୟରେ ଦୋଷ ଦେଖିବେ । ଯାହାକୁ ଭଲ ପାଇବେ ତାହାର ସମସ୍ତେ ଗୁଣ ଭଲ କହିବେ. ଯାହା ପ୍ରତି ସହାନୁଭୂତି ପ୍ରକାଶ କରୁଅଛନ୍ତି ତାହାର ଦୋଷ ଦେଖିବାକୁ ଭଲ ଲାଗେ ନାହିଁ । ଯାହା ପ୍ରତି ବିରକ୍ତ ହୋଇ ଅଛନ୍ତି ତାହାର ନିନ୍ଦା ସଙ୍ଗୀତତୁଲ୍ୟ ମଧୁର ଶୁଣାଯାଏ । କୌଣସି କାବ୍ୟାଂଶ ପାଠ କରି କରି ଯଦି ସୁମିଷ୍ଟ ବୋଧ ହୁଏ, ତାହା ହେଲେ ତହିଁରେ ଯଦି ଦୋଷ କିଛି ଥାଏ, ତାହା ଯେ କେବଳ ଲୁଚିଯାଏ ତାହା ନୁହେଁ ।

ଦୋଷଦ୍ରଷ୍ଟାଙ୍କ ଗୁଣପରି ବୋଧ ହୁଏ । ଶେକ୍ସପିୟର୍ କଥାଟି କହିଛନ୍ତି:- ରସିକ ବ୍ୟକ୍ତିମାନଙ୍କ ପକ୍ଷରେ ବାସ୍ତବିକ । କିନ୍ତୁ ସମାଲୋଚକମାନଙ୍କ ଚକ୍ଷୁରୁ ସେ ସବୁ ଅନ୍ତର୍ହିତ ହୁଅନ୍ତି ନାହିଁ । ଏତେ ଗୁଣର ଅନୁପାତରେ ସେ ସବୁ ପଦାର୍ଥ ଏପରି ବିବେଚିତ ହୋଇପାରେ । କେବଳ ଦୋଷ ଦେଖିବାକୁ କିମ୍ବା ଗୁଣ ଦେଖିବାକୁ ଅଥବା ଦୋଷ ଗୁଣ କୌଣସି ଉପାୟରେ ବାହାର କରିବାକୁ ଲବ୍ଧପ୍ରତିଷ୍ଠ ଲେଖକମାନଙ୍କର ଗୁଣ ଦେଖିବାକୁ ଓ ଅନ୍ୟାନ୍ୟ ଲେଖକମାନଙ୍କର ଦୋଷ ଦେଖିବାକୁ ସେମାନେ ସାହିତ୍ୟସେବା କରନ୍ତି ନାହିଁ । ସେମାନେ ଆଲୋଚନା କରନ୍ତି କେବଳ ଆଲୋଚନା ନିମିତ୍ତ—ଦୋଷ କି ଗୁଣ କଲେ କିଛି ସେମାନଙ୍କ ମନରେ ଅଙ୍କିତ ହୁଏ । ସେମାନଙ୍କ ମନ ଏତେଦୂର ଉଦାର ଯେ, ଦୋଷ ଦେଖୁ ଦେଖୁ ହଠାତ୍ ସାର ପଦାର୍ଥ ଦେଖି ପାରନ୍ତି । ଏହା ସମସ୍ତଙ୍କ ପକ୍ଷରେ ସହଜ ନୁହେଁ । ଆନନ୍ଦାନୁଭବ କାଳରେ ତ୍ରୁଟିକୁ ଖୋଜିବା କାହାର ଇଚ୍ଛା ନୁହେଁ; କିନ୍ତୁ ମନରେ କ୍ରୂର୍ଗଙ୍କର କ୍ରୋଧ ବା ଘୃଣା ଥିବା ବେଳେ ସହସା ସ୍ନେହ ଜାତ ହେବା ସହଜ ନୁହେଁ ।

କେବଳ ପ୍ରଶଂସା ବା ନିନ୍ଦା ସମାଲୋଚକର କାର୍ଯ୍ୟ ନୁହେଁ । ମନୁଷ୍ୟର ସ୍ୱାଭାବିକ ଅଛି; ଏଣୁ ଖାଲି ପ୍ରଶଂସା ବା ନିନ୍ଦା କଲା ସ୍ୱଭାବରେ

ଶୁଣିବାକୁ କର୍କଶ ବୋଧହୁଏ । ସମାଲୋଚକ ଉତ୍ତମ ସୂକ୍ଷ୍ମଭାବ ଦୋଷ ଓ ଗୁଣ ବ୍ୟକ୍ତ କରନ୍ତି । ପୁଣି ଭିନ୍ନ ଭିନ୍ନ ପ୍ରବୃତ୍ତିର ଭିନ୍ନ ଭିନ୍ନ ସମାଲୋଚକ ଅଛନ୍ତି । ସେମାନଙ୍କ ମଧ୍ୟରେ ବିଶେଷ ତର୍କ ବିତର୍କ ହୁଏ ଏବଂ ସାହିତ୍ୟର ଶ୍ରୀ ଓ ଚର୍ଚ୍ଚା ଉତ୍ତରୋତ୍ତର ବଳବତୀ ହୁଏ । ମୂଳତଃ ସମାଲୋଚକବୃନ୍ଦ ସାହିତ୍ୟଭଣ୍ଡାରକୁ ନିଜ ପ୍ରତିଭା ତେଜରେ ଉଜ୍ଜ୍ୱଳ କରନ୍ତି, ଅପରିଷ୍କୃତ ରତ୍ନରାଶି ପରିଷ୍କାର କରନ୍ତି, ସାହିତ୍ୟର ଅଙ୍ଗ ପରିପୁଷ୍ଟ କରନ୍ତି; ପାଠକ ଓ ଲେଖକମାନଙ୍କର ପ୍ରୀତିଭାଜନ ହୁଅନ୍ତି, କବିମାନଙ୍କୁ ଉତ୍ତେଜିତ କରନ୍ତି ଏବଂ ସମସ୍ତ ସାହିତ୍ୟକ୍ଷେତ୍ରରେ ପ୍ରଧାନ କାର୍ଯ୍ୟକାରୀ ହୋଇ ନିଜ ଦେଶର ଓ ଲେଖକମାନଙ୍କର ଉନ୍ନତି ସାଧନ କରନ୍ତି । ଏହିପରି ହେବାକୁ ଅନେକ ଲୋକଙ୍କର ଇଚ୍ଛା, କିନ୍ତୁ ସମସ୍ତେ କୃତକାର୍ଯ୍ୟ ହୋଇ ପାରନ୍ତି ନାହିଁ ।

ପାଠକମାନଙ୍କ ମନରେ ସୁନ୍ଦର କାବ୍ୟ ତାତ୍କାଳିକ ଆନନ୍ଦ ଉତ୍ପାଦନ କରେ । କିନ୍ତୁ ରୀତିମତ ମନୋଯୋଗପୂର୍ବକ ସମାଲୋଚନା ସହିତ କାବ୍ୟାଧ୍ୟୟନରେ ତାହା ଘନୀଭୂତ ଓ ଦୃଢ଼ ହୁଏ, ବୁଦ୍ଧିର ପରିଚାଳନା ହୁଏ ଏବଂ କାବ୍ୟପଠନ ଯଥାର୍ଥ ଫଳପ୍ରଦ ହୁଏ । ପ୍ରକୃତରେ ସମାଲୋଚନା କାବ୍ୟର ଶ୍ରୀ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ପାଠକମାନଙ୍କର ଅନୁଭବଶକ୍ତି ବର୍ଦ୍ଧନ କରେ । ଯେପରି ଆମ୍ଭମାନଙ୍କର ପ୍ରଧାନ ଅଧ୍ୟାପକ ମହାଶୟ ଉଚ୍ଚତ୍ୱ ( Sublimity ) ଅର୍ଥ ବ୍ୟାଖ୍ୟା କଲାପରେ ମିଲଟନଙ୍କର କେତେ ଗୁଡ଼ିଏ ଓଜଃପୂର୍ଣ୍ଣ କାବ୍ୟାଂଶ ଆମ୍ଭେମାନେ ଅଧିକ ଆନନ୍ଦର ସହିତ ଶ୍ରବଣ କରିଥିଲୁଁ । ପ୍ରଥମ ପାଠରେ ଯେପରି ଆନନ୍ଦାନୁଭବ ହୋଇଥିଲା, ତାହାଠାରୁ ଶତଗୁଣ ଅଧିକ ଦ୍ୱିତୀୟ ପାଠରେ ହୋଇଥିଲା । ହ୍ୟାମଲେଟର ଗୋଟିଏ ଅଂଶ ଦେଖନ୍ତୁ । କ୍ଲଡ଼ିୟସ ତାହାର ଜ୍ୟେଷ୍ଠଭ୍ରାତାଙ୍କୁ ହତ୍ୟା କରି ସିଂହାସନ ଅଧିକାର କରିଅଛି । ଦିନେ ଏକାନ୍ତରେ ଉପାସନା ମନ୍ଦିରକୁ ଯାଇ ଯାଉଁ ଅନୁତପ୍ତ ହୋଇ ଅନେକ କଥା କହିଥିଲା; ତନ୍ମଧ୍ୟରୁ ଏହା ଗୋଟିଏ—

What it this cursed hand
Were thicker than itself with brother's blood.
Is there not rain enough in the sweet heavens
To wash it white as snow ?

ଏହାର ସ୍ଥୂଳଭାବ ଦେଖି ଆମ୍ଭମାନଙ୍କର ଆନନ୍ଦ ଜାତ ହେଉଅଛି ସତ । କ୍ଲଡ଼ିୟସ୍ ହସ୍ତରେ ଯେଉଁ ରକ୍ତ ବର୍ତ୍ତମାନ ଅଛି, ସେ ରକ୍ତ ପୃଥିବୀ ଜଳରେ ଧୌତ ହେବ ନାହିଁ । ସେଥିପାଇଁ ସେ ସ୍ୱର୍ଗୀୟ ଜଳ ପାଇବା ନିମିତ୍ତ ଇଚ୍ଛା ପ୍ରକାଶ କରୁଅଛି । କିନ୍ତୁ ଏତିକି କହି ଆମ୍ଭେମାନେ ନିରସ୍ତ ହେବା ନାହିଁ । ସେକ୍ସପିୟରଙ୍କର ଅସାଧାରଣ କବିତ୍ୱର ଉତ୍କୃଷ୍ଟ ପରିଚୟ ଏଠାରୁ ମିଳିବ । କେତେକ ସମାଲୋଚକଙ୍କ ମତରେ କ୍ଲଡ଼ିୟସ୍ ପରି ଦୁଷ୍ଟ ଓ କ୍ରୂରବ୍ୟକ୍ତି ମୁଖରେ ଏ ରୂପ କଥା ଅସମ୍ଭବ । ଏଣୁ ଏ ସ୍ଥଳଟି ହାସ୍ୟାସ୍ପଦ । ଆଉ ଜଣେ ସମାଲୋଚକ କହନ୍ତି ଯେ ଦୁଷ୍ଟ ଲୋକ ସମସ୍ତ ସମୟରେ ମଧ୍ୟ କପଟରେ ନିଜର ଧାର୍ମିକତା ଦେଖାଏ, ଅଧର୍ମପଥାବଲମ୍ବୀ ବ୍ୟକ୍ତିଙ୍କୁ ଘୃଣା କରେ ଓ ନିଜର ମନକୁ ନିଜେ ନିଜେ ଠକିବାକୁ ଇଚ୍ଛା କରେ । ତେଣୁ କ୍ଲଡ଼ିୟସ ପକ୍ଷରେ ଏପରି ବାକ୍ୟ ଅସମ୍ଭବ ନୁହେଁ । "କବି ଏଠାରେ ଦୁଷ୍ଟ ଲୋକଙ୍କର ଚରିତ୍ର ସ୍ୱଭାବ ବର୍ଣ୍ଣନ କରିଅଛନ୍ତି ।" ଆଉ ଜଣେ ଟୀକାକାର ଅନ୍ୟପ୍ରକାର ସମାଧାନ କରନ୍ତି । ଏହିପରି ଅନେକ ପ୍ରକାର ଏହାର ଅର୍ଥ ବାହାରିବ । କିନ୍ତୁ ତନ୍ମଧ୍ୟରୁ କବି କଲରିଜ୍‌ଙ୍କର ସମାଲୋଚନା (ଅନ୍ତତଃ ଆମ୍ଭମାନଙ୍କୁ) ପ୍ରୀତିଜନକ ଅଟେ । ସେ କହନ୍ତି, ସେକ୍ସପିୟର କବି ଯେଉଁ ଗୁଣପାଇଁ ସମସ୍ତ କବିଙ୍କର ଶିରୋଭୂଷଣ, ତାଙ୍କର କୃତିତ୍ୱ ଅଧିକ ଏଠାରେ ଦିଶୁଅଛି । ମନୁଷ୍ୟ ହଜାର କ୍ରୂର ହେଲେ ସୁଦ୍ଧା ତାହାର ହୃଦୟରୁ ଦୟା, ଅନୁତାପ ପ୍ରଭୃତି ସମୂଳରେ ବିନଷ୍ଟ ହୋଇ ନ ପାରେ । ବିଶେଷତଃ ନରହତ୍ୟା ପରି କ୍ରୂର କାର୍ଯ୍ୟ କରିପାରି ମନୁଷ୍ୟ କଦାପି ସ୍ଥିର ହୋଇ ପାରେ ନାହିଁ । କ୍ଲଡ଼ିୟସ ନିତାନ୍ତ ନିର୍ବୋଧ ନୁହେଁ ।

ପାଶବ ସ୍ୱଭାବ ଥିଲେ ସୁଦ୍ଧା ତାର ହୃଦୟ ଅଛି । ଅତଏବ ଏକାନ୍ତରେ ତାହା ମନରେ ଏରୂପ ଭାବ ଉତ୍ପନ୍ନ ହେବା ଅତ୍ୟନ୍ତ ସଙ୍ଗତ ହୋଇଅଛି । ସେଠାରେ ଅନ୍ୟ କେହି ନ ଥିଲେ ସେ କମଠାଗ୍ରର କରିବାକୁ ସେ ଉଦ୍ୟତ ହେବ । ପାଠକେ ଏଥିରୁ କିଛି ବୁଝିବେ ଯେ ସେକ୍ସପିୟର କବି ମାନବଚରିତ୍ରଚିତ୍ରଣରେ କେତେଦୂର ପଟୁ । ଆଉ ଦୁଇଟି ଗୋଟିଏ ଦୃଷ୍ଟାନ୍ତ ଉଦ୍ଧୃତ କରିବାର ଇଚ୍ଛା ଥିଲା, କିନ୍ତୁ ସ୍ଥାନାଭାବ । ସମାଲୋଚନା ସାହିତ୍ୟର ପ୍ରଧାନ ଅଙ୍ଗ ବୋଲି ଶିକ୍ଷାର ବୃଦ୍ଧି । କେବଳ ସାହିତ୍ୟରେ ଯେ ସମାଲୋଚନା ଅଛି ତାହା ନୁହେଁ । ଅମ୍ଭେମାନେ ଅନେକ କାର୍ଯ୍ୟ ଆଲୋଚନା କରି ଅନୁଷ୍ଠାନ କରୁଁ । ଦର୍ଶନ, ନ୍ୟାୟ, ରାଜନୀତି, ଧର୍ମନୀତି ପ୍ରଭୃତି ସମସ୍ତ ବିଭାଗରେ ସମାଲୋଚନା ଅଛି । କାର୍ଯ୍ୟର ପ୍ରଣାଳୀ ଉଦ୍ଭାବନା ସମାଲୋଚନାଜନିତ । ସମାଲୋଚନାର ବସ୍ତୁତ ଅର୍ଥ ସମ୍ୟକ୍ ବିଚାର ( Sound deliberation ) ବୋଲି କହିଲେ ଚଳିପାରେ । ଏହା କେବଳ ଭିନ୍ନ ଭିନ୍ନ ବିଭାଗରେ ନିୟୋଜିତ ହେଲେ ପୃଥକ୍ ପୃଥକ୍ ପ୍ରଣାଳୀ ଅବଲମ୍ବନ କରେ । ଦର୍ଶନ, ନ୍ୟାୟ, ରାଜନୀତି, ଧର୍ମନୀତି ପ୍ରଭୃତିର ସମାଲୋଚନା ପ୍ରଧାନତଃ ଯୁକ୍ତି । ସାହିତ୍ୟର ସମାଲୋଚନା ବିଶେଷତଃ ସୌନ୍ଦର୍ଯ୍ୟପ୍ରିୟତା । ମନୁଷ୍ୟ ସମ୍ପୂର୍ଣ୍ଣରୂପେ ଉତ୍ତମ କିମ୍ବା ମନ୍ଦ ନୁହେଁ । ଏକର ଆଧିକ୍ୟ ନେଇ ଆମେ ଭଲ ମନ୍ଦ ବିଚାର କରୁ । ଲେଖକ ମଧ୍ୟ ମନୁଷ୍ୟ, ତେଣୁ ତାଙ୍କର ଲେଖା ସମ୍ପୂର୍ଣ୍ଣ ଉତ୍ତମ କିମ୍ବା ମନ୍ଦ ହେବ ଏପରି ବିଚାର ଅନ୍ୟାଯ୍ୟ । ଲବ୍ଧ-ପ୍ରତିଷ୍ଠ ଜଗଦ୍ବିଖ୍ୟାତ ଲେଖକଙ୍କର ମଧ୍ୟ ଦୋଷ ଅଛି । ପୁଣି ନିତାନ୍ତ ହୀନପ୍ରଭ ଲେଖକଙ୍କ ଲେଖାରେ ଅନ୍ଧକାର ମଧ୍ୟରେ ଖଦ୍ୟୋତା-ଲୋକବତ୍ କିଛି ସୌନ୍ଦର୍ଯ୍ୟ ମଧ୍ୟ ଲକ୍ଷିତ ହୁଏ । ଗୁଣର ଆଧିକ୍ୟ ଥିଲେ, ଦୋଷ ଢାଙ୍କେ ନାଙ୍କେ ଲୁକ୍କାୟିତ ହୁଏ । କିନ୍ତୁ ଏଠାରେ ଗୋଟିଏ ପ୍ରଶ୍ନ ଉଠୁଅଛି, ଦୋଷ କଣ, ଗୁଣ କଣ ?

ଏହି ପ୍ରଶ୍ନର ଉତ୍ତର କହିବା କଠିନ । ଦାର୍ଶନିକମାନଙ୍କ ମସ୍ତିଷ୍କ ଏଥିରେ କିଛି ଘୂର୍ଣ୍ଣିତ ହୁଏ, ଅମ୍ଭେମାନେ ଏଠାରେ ଦର୍ଶନ ଲେଖିବାକୁ

ଯାଇ ନାହୁଁ ଏବଂ ଅନ୍ୟମାନଙ୍କର ବର୍ଣ୍ଣନରେ ସମ୍ୟକ୍ ପ୍ରବେଶ ନାହିଁ । ଦୁଇ ଗୋଟି ପଦ ମୋଟାମୋଟି ଯଥେଷ୍ଟ ହେବ ।

ଜନସାଧାରଣ କେତେକ ବିଷୟରେ ମତର ପାର୍ଥକ୍ୟ ଦେଖାଇଲେ ହେଁ ନାନାବିଧ ବିଷୟରେ ଏକମତ । ଏହିପରି ଐକ୍ୟ ନ ଥିଲେ ସାମାନ୍ୟ ଜ୍ଞାନ (General idea) କିମ୍ବା ପଦାର୍ଥ-ମାନଙ୍କର ସଂଜ୍ଞା ହୋଇ ପାରନ୍ତା ନାହିଁ । ଏହି ଫୁଲଟି ଧଳା, ଜଳ ସ୍ଥଳ ପରି ଘନ ନୁହେଁ । କଦ ଖାଇବାକୁ ପିଠା ଲାଗେ, ଅଗ୍ନିରୁ ଧୂମ ଜାତ ହୁଏ— ଏହିପରି ଅନେକ ବିଷୟରେ ମନୁଷ୍ୟମାନଙ୍କର ଐକ୍ୟ ଅଛି । କେବଳ ରୁଚିର ବିଭିନ୍ନତା ହେତୁ ମନୁଷ୍ୟର ଅନୁଭବଶକ୍ତିର ତାରତମ୍ୟ ଘଟେ । ତଥାପି ଅନେକ ବିଷୟରେ ଜନସାଧାରଣ ସମାନ ବୋଧଶକ୍ତି ଦେଖାନ୍ତି । ଉନ୍ନତି ଓ ଅବନତି ସଙ୍ଗେ ସଙ୍ଗେ ବିଭିନ୍ନ ସମାଜ ସମ୍ପର୍କରେ କାଳର ପରିବର୍ତ୍ତନାନୁଯାୟୀ ରୁଚିର ବୈଚିତ୍ର୍ୟ ଦେଖାଯାଏ । ଅଶିକ୍ଷିତ ଯୁବା ଗୋଟିଏ ମନୋହର ଉପମା ଦେଖି ଯେତେଦୂର ସନ୍ତୁଷ୍ଟ ହୁଏ ନାହିଁ । ଯେତେ ମିଥ୍ୟା ଗଳ୍ପରେ ହୁଏ । ଅନେକ ସୌନ୍ଦର୍ଯ୍ୟ ଯାହା ଅଶିକ୍ଷିତକୁ ଅଦୃଶ୍ୟ, ତାହା ଶିକ୍ଷିତଠାରୁ ଲୁଚେ ନାହିଁ । ତେଣୁ ଶିକ୍ଷିତ ବ୍ୟକ୍ତିଙ୍କର ସୌନ୍ଦର୍ଯ୍ୟଜ୍ଞାନ ଅନ୍ୟମାନଙ୍କର ପରିମାପକ (Stantard) ଅଟେ । ପୁଣି ଯାହା ପ୍ରକୃତ ସୌନ୍ଦର୍ଯ୍ୟ ତାହା କି ଶିକ୍ଷିତ, କି ଅଶିକ୍ଷିତ ସମସ୍ତେ ଅନୁଭବ କରି ପାରନ୍ତି । ତାହା ଛଡ଼ା ଯେ ସୌନ୍ଦର୍ଯ୍ୟ ସ୍ଥଳବିଶେଷରେ ଜଟିଳ ହୋଇଥାଏ, ତାହା ଉଦ୍‌ଘାଟନ କରିବାକୁ ଗଲେ ମତର ବିଭିନ୍ନତା ଉପସ୍ଥିତ ହୁଏ । ଏହି ପ୍ରସଙ୍ଗରେ ଆଉ ଗୋଟିଏ ବିଷୟ କହିଲେ ବୋଧହୁଏ ଅସଙ୍ଗତ ହେବ ନାହିଁ ।

ଆମ୍ଭେମାନେ ପୂର୍ବରୁ କହିଅଛୁଁ ଯେ, ରୁଚିର ତାରତମ୍ୟ ହେତୁ ସୌନ୍ଦର୍ଯ୍ୟାନୁଭବର ବିଭିନ୍ନତା ଘଟିଥାଏ, କେବଳ ଅଶିକ୍ଷିତ ବ୍ୟକ୍ତିଠାରେ ନୁହେଁ । ଶିକ୍ଷିତ ବ୍ୟକ୍ତିମାନଙ୍କ ଠାରେ ମଧ୍ୟ ଏ ସମ୍ବନ୍ଧରେ ସମ ପାର୍ଥକ୍ୟ ଦେଖାଯାଏ । ଅଦ୍ଭୁତ ଓ ହାସ୍ୟରସ ସମସ୍ତ ବ୍ୟକ୍ତିଙ୍କ ହୃଦୟରେ ଶୀଘ୍ର

ଓ ସହଜରେ ଅନୁଭୂତ ହୁଏ । ଯେବେ ଅଦରସ ପ୍ରକୃତ ଉପଯୁକ୍ତ ସ୍ଥାନରେ ସନ୍ନିବେଶ ନ ହେଲେ ଅସୁନ୍ଦର ଦେଖାଯାଏ । ସେଥିଲାଗି ସେକ୍ସପିଅରଙ୍କ ଯେ ହେମ୍ଲେଟ ପରିହାର୍ଯ୍ୟ ଏପରି ବିଗ୍ରହ ଅନ୍ୟାଯ୍ୟ । ଯାହା-ହେଉ, ଏ ତ ଆମ୍ଭମାନଙ୍କର ମତ, ଏହାର ବିରୋଧୀ ପୁଣି ଅନେକ ବ୍ୟକ୍ତି ଅଛନ୍ତି । ଶିକ୍ଷିତମାନଙ୍କ ମଧ୍ୟରେ ସମୟ ସମୟରେ ଗୋଟିଏ ଅଛି ଗୁରୁତର ଭ୍ରମ ଲକ୍ଷିତ ହୁଏ । ବଡ଼ ଦୁଃଖର ବିଷୟ, ଏହି ଭ୍ରମ ସେମାନଙ୍କୁ ଦେଖାଇଦେଲେ ମଧ୍ୟ ସେମାନେ ବୁଝନ୍ତି ନାହିଁ । କାଳର ପରିବର୍ତ୍ତନ ସଙ୍ଗେ ସଙ୍ଗେ କେବଳ ଯେ ଜଡ଼ ଜଗତର ପରିବର୍ତ୍ତନ ହେଉଅଛି ତାହା ନୁହେଁ, ମନୁଷ୍ୟଜାତି ମଧ୍ୟ ଭିନ୍ନ ଭିନ୍ନ ଆକାର ଧାରଣ କରୁଅଛି । ୧୦୦ବର୍ଷ ପୂର୍ବରେ ଯେ ରୁଚି ଥିଲା, ତାହା ଅଜକାଲ ନାହିଁ । କିମ୍ବା ଅଜି କାଲି ଯେ ରୁଚି ଦେଖାଯାଏ ତାହା ୧୦୦ ବର୍ଷ ପରେ ଥିବ ନାହିଁ । ଏକମାତ୍ର ରୁଚି ଅକ୍ଷୁଣ୍ଣଭାବରେ ରହିବ ଏପରି ଆଶା କରିବା ବାଳକତ୍ୱ ମାତ୍ର । ଅନେକ ବ୍ୟକ୍ତି କହିବେ ଯେ, ଆମ୍ଭେମାନେ ଏହା ବୁଝିଅଛୁଁ— କିନ୍ତୁ ସେମାନଙ୍କ କାର୍ଯ୍ୟରୁ ଦେଖାଯାଏ, ସେମାନେ ଏହା ବୁଝି ଅବୁଝା । ସେମାନେ କେବଳ ବଳକ୍ଷେପରେ କହନ୍ତି ଯେ, ୩୦୦ ବର୍ଷ ପୂର୍ବେ ଯେଉଁ କବି ଜନ୍ମଗ୍ରହଣ କରିଥିଲେ, ସେ ଆମ୍ଭମାନଙ୍କର ମାର୍ଜିତ ରୁଚି ଅନୁଯାୟୀ କାବ୍ୟ ରଚନା କରିଥିଲେ ଭଲ ହୋଇଥାଆନ୍ତା ।

ସୁଲେଖକର ପ୍ରତିଭା ଈଶ୍ୱରଙ୍କ ଅଂଶ ମାତ୍ର । ଜଗଦୀଶ୍ୱର ସ୍ନେହମୟ- ସମସ୍ତ ସୌନ୍ଦର୍ଯ୍ୟର ଆଧାର । ଜଗତରେ ଯେତେ ସୌନ୍ଦର୍ଯ୍ୟ ଦେଖୁଅଛ, ସମୟ ସମୟରେ ଯେଉଁ କରୁଣା, ଅନୁକମ୍ପା, ସ୍ନେହ, ସହାନୁଭୂତି ପ୍ରଭୃତି ଲକ୍ଷିତ ହୁଏ, ତାହା ସେହି ଦୟାମୟଙ୍କର ପବିତ୍ର ଓ ସ୍ନେହମୟ ସୌନ୍ଦର୍ଯ୍ୟାଂଶୁରେ ରଞ୍ଜିତ । ଏହି କଥାଟି ହୃଦୟଙ୍ଗମ କଲେ ଆମ୍ଭେମାନେ ସୌନ୍ଦର୍ଯ୍ୟର ପରିମାପକ ( Standard) ନିର୍ଣ୍ଣୟ କରିପାରିବା । କାବ୍ୟ ପାଠ କରି ଈଶ୍ୱରପ୍ରଦତ୍ତ ଭାବସମୂହ ଯଦି ଆମ୍ଭମାନଙ୍କ ମନରେ ଉଦ୍ଭୂତ ନ ହୁଏ, ସେ କାବ୍ୟ କାବ୍ୟ ନୁହେଁ କି ସେ କବି କବି ନୁହନ୍ତି ।

ସାହିତ୍ୟକ୍ଷେତ୍ରରେ ସୌନ୍ଦର୍ଯ୍ୟ ପରିପାଳକ ମାନଙ୍କ ହୃଦୟରେ ଯେ ସମସ୍ତ ଭାବର ଉତ୍ଥାପନାନୁଯାୟୀ ଶାଠକ କର୍ଣ୍ଣସ୍ଥ କରାଇବାକୁ ସକ୍ଷମ ହୁଅନ୍ତି । ଏହା ସାହିତ୍ୟର ସାର ଓ ଶ୍ରେଷ୍ଠ ଉଦ୍ଦେଶ୍ୟ ଅଟେ । ସେହି କାବ୍ୟରେ ଦେଖିବ ଦାମ୍ପତ୍ୟ ଅନୁରାଗର ଅସୀମ ଆନନ୍ଦ ଓ ଏଣସ୍ଥ ବର୍ଣ୍ଣିତ ହୋଇଅଛି, ମାତା ପୁତ୍ର ସ୍ନେହ, ପୁତ୍ର ଜନନୀ ଭକ୍ତି, ମାତା ପିତୃ ପ୍ରୀତି, ପିତା ପରିବାର ପ୍ରତି ସ୍ୱାଭାବିକ ସ୍ନେହର ପରିଚୟ ଦେଉଅଛନ୍ତି, ଭକ୍ତି ଓ ଶ୍ରଦ୍ଧା ଜଗତରେ ଉଚ୍ଚାସନଯୋଗ୍ୟ, ଦୋଷର ଦଣ୍ଡ ଅଛି, ଗର୍ବର ପରାଭବ ଅଛି, ସ୍ନେହର ପୁରସ୍କାର ଅଛି, ପ୍ରକୃତି ଅପାର ସୌନ୍ଦର୍ଯ୍ୟମୟୀ ଜଗନ୍ନିୟନ୍ତାଙ୍କର ମନୋହର କିରଣ ପଡ଼ିବାରୁ ତାହାର ସୁନ୍ଦରୀକୃତ ଅଙ୍ଗର ବର୍ଣ୍ଣନା ଅଛି, ପ୍ରକୃତ ସାଧୁ ବ୍ୟକ୍ତିମାନଙ୍କର ଆଦର ଅଛି, କଳ୍ପନାଜଗତରେ ନରନାରୀ-ମାନଙ୍କର ନାନା ପ୍ରକାର ଅଗ୍ରହ, ସଂବଦ୍ଧାର ମଙ୍ଗଳର ପ୍ରତି ସ୍ୱାଭାବିକ ସ୍ନେହ, ଦୟା, ଘୃଣା, କ୍ରୋଧ ଅନୁକମ୍ପା ପ୍ରଭୃତି ଅତ୍ୟନ୍ତ ସ୍ପଷ୍ଟରୂପରେ ଚିତ୍ରିତ ହୋଇଅଛି, ନାନା ପ୍ରକାର ସଦୁପଦେଶ, କାବ୍ୟର ପ୍ରଧାନ ନବରସ ଉପଯୁକ୍ତ ସ୍ଥଳରେ ସନ୍ନିବିଷ୍ଟ ହୋଇଅଛି , ବିଶେଷତଃ ଯାହାର ଉଚ୍ଚ ଉଦାର କଳ୍ପନା ଆମ୍ଭମାନଙ୍କର ଦୈନିକ ଚିନ୍ତାକୁ ଉତ୍ତେଜିତ କରି ବିଶାଳ କଳ୍ପନାସମୁଦ୍ରର ସୁନ୍ଦର ଭାବତରଙ୍ଗର କାନ୍ତିଚ୍ଛଟା ପ୍ରଦର୍ଶନପୂର୍ବକ କିଛିକ୍ଷଣ ତହିଁରେ ଭାସମାନ କରୁଅଛି, ସୁତରାଂ ପାଠ୍ୟ ଚଳିଯାଉ ପାଠକ ଉନ୍ନତ ହୋଇଥିବାର ଅନୁଭବ କରନ୍ତି—ତାହାକୁ ଜାଣିବା ପ୍ରକୃତ ସତ୍‌କାବ୍ୟ । ଏକାଳରେ ଇଉରୋପରେ କାବ୍ୟର ଯଥାର୍ଥ ଉପକାରିତା ସମ୍ବନ୍ଧରେ ବିଦ୍ୱାନ୍ ବ୍ୟକ୍ତିମାନଙ୍କ ମଧ୍ୟରେ ପ୍ରବଳ ତର୍କ ବିତର୍କ ହେଉଅଛି । ଆମ୍ଭମାନଙ୍କ ଦେଶରେ ମଧ୍ୟ ପ୍ରାଚୀନ ପଣ୍ଡିତମାନେ ଏବିଷୟରେ ତର୍କ ବିତର୍କ କରିଥିଲେ ଏବଂ ଅଳଙ୍କାର ଓ କାବ୍ୟପ୍ରକାଶ ପ୍ରଭୃତି ଗ୍ରନ୍ଥରେ ସେମାନଙ୍କର ସିଦ୍ଧାନ୍ତ ଲକ୍ଷିତ ହୁଏ ।

ସୁତରାଂ ସେଥିରୁ ବୁଝିବାକୁ ହେବ ଯେ, ସମାଲୋଚକ ଅନେକ ବିଷୟ ଭାବି ଚିନ୍ତି ସମାଲୋଚନାରେ ପ୍ରବୃତ୍ତ ହୁଅନ୍ତି । ପୂର୍ବରୁ କହିଅଛୁଁ

ଯେ ସାହିତ୍ୟାନୁରାଗୀ ସତ୍ ସମାଲୋଚକେ କାବ୍ୟାଦି ସମାଲୋଚନା କରନ୍ତି । କେବଳ ସମାଲୋଚନା ନିମିତ୍ତ । ଏହି କାର୍ଯ୍ୟରେ ସେମାନଙ୍କର ଅତ୍ୟନ୍ତ ଆନନ୍ଦ ଜାତ ହୁଏ; ତେଣୁ ସେମାନେ ସର୍ବଦା ସୌନ୍ଦର୍ଯ୍ୟ ଉଦ୍ଦେଶ୍ୟରେ ସାହିତ୍ୟକୁଞ୍ଜରେ ଭ୍ରମଣ କରନ୍ତି । ସେମାନେ ଦୋଷୋଦ୍ଘାଟନ କରି ଲେଖକମାନଙ୍କର କୁତ୍ସାବାଦ କରିବାକୁ ସାହିତ୍ୟସେବା କରନ୍ତି ନାହିଁ । କେବଳ ଲେଖକଙ୍କର ପ୍ରତିଭାର ଗତି ଦେଖି ସେମାନଙ୍କ ମନରେ ଆନନ୍ଦ ଜାତ ହୁଏ । ସେମାନଙ୍କର ପ୍ରତିଭା କବିଙ୍କ ପ୍ରତିଭା ସଙ୍ଗେ ସଙ୍ଗେ ବୁଲେ, ଉଚ୍ଚକୁ ଉଠିଲେ ଉଚ୍ଚକୁ ଯାଏ, ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ବିଚରଣ କଲେ ସେମାନଙ୍କ ପ୍ରତିଭା ମଧ୍ୟ ସଙ୍ଗେ ସଙ୍ଗେ ଯାଏ—ଏହି ଉଚ୍ଚ ପ୍ରଦେଶରେ ଦଣ୍ଡାୟମାନ ହୋଇ ଚତୁର୍ଦ୍ଦିଗ ନିରୀକ୍ଷଣ କରି କବିଙ୍କର ପ୍ରତିଭାକୁ ନିରୀକ୍ଷଣ କରେ, ତୁଳନା କରେ, ଏଣୁ ସ୍ପଷ୍ଟରୂପେ ତାହା ଅବଲୋକନ କରି ଚତୁଃପାର୍ଶ୍ୱସ୍ଥ ବସ୍ତୁ ମଧ୍ୟରେ ଥାଇ ତାହାର ପ୍ରକୃତ ଔଜ୍ଜ୍ୱଲ୍ୟ ନିର୍ଣ୍ଣୟ କରିବାକୁ ଅଧିକ ଅଧିକ କୃତକାର୍ଯ୍ୟ ହୁଏ ।

ଯେହେତୁ ସମାଲୋଚନା କାର୍ଯ୍ୟ ଅତ୍ୟନ୍ତ ଗୁରୁତର । ସମାଲୋଚକ ଅନେକ ପୁସ୍ତକ ମନୋଯୋଗ ସହିତ ଅଧ୍ୟୟନ କରିବେ । ବିଶେଷତଃ ଯେଉଁ ପୁସ୍ତକ ସମାଲୋଚନା କରିବେ, କେବଳ ତାହାକୁ ଯେ ସମ୍ପୂର୍ଣ୍ଣରୂପେ ହୃଦୟଙ୍ଗମ କରିବା ଆବଶ୍ୟକ ତାହା ନୁହେଁ; ଏହା ଛଡ଼ା ନାନା ପ୍ରକାର ବିଷୟଜ୍ଞାନ ଥିବା ମଧ୍ୟ ଆବଶ୍ୟକ । ଅଳ୍ପବିଦ୍ୟା ଅଜ୍ଞତାଠାରୁ ନିକୃଷ୍ଟ । ଅଳ୍ପବିଦ୍ୟାରେ ମନୁଷ୍ୟମନରେ ବୃଥା ଅହଙ୍କାର ପରିପୁଷ୍ଟ ହୁଏ । କାହାରି କଥା ନ ଶୁଣିବାକୁ ଗୋଟିଏ ପ୍ରବୃତ୍ତି ଜନ୍ମେ । ବିବିଧ ପୁସ୍ତକ ଅଧ୍ୟୟନ କଲେ ନାନାବିଧ ବ୍ୟକ୍ତିଙ୍କ ସହିତ ମିଶିଲେ ମନ ପ୍ରସାରିତ ହୁଏ ଏବଂ କୂପମଣ୍ଡୂକତା ଭାଙ୍ଗିଯାଏ । ଆଜିକାଲି ଇଂରାଜୀ ସାହିତ୍ୟ ଅତ୍ୟନ୍ତ ଉନ୍ନତ । କେତେକ ଶିକ୍ଷିତ ଓ ଅଶିକ୍ଷିତ ବାବୁ ଇଂରାଜୀ ସାହିତ୍ୟକୁ ସଂସ୍କୃତ ସାହିତ୍ୟ ତୁଳନାରେ ଘୃଣା କରନ୍ତି । କିନ୍ତୁ ଦୁଃଖର ବିଷୟ ଯେ, ସେମାନେ ସଂସ୍କୃତ ଜାଣନ୍ତି ନାହିଁ କି ଇଂରାଜୀ ଜାଣନ୍ତି

ନାହିଁ । ବିଦ୍ୱାନ୍ ବ୍ୟକ୍ତି ଅର୍ଥାତ୍ ଯାହାଙ୍କର ବିଦ୍ୟାଧ୍ୟୟନର ଫଳଲାଭ ହୋଇଅଛି, ସେ କଦାପି ବିଦ୍ୟାକୁ ଘୃଣା କରନ୍ତି ନାହିଁ । ଅନ୍ୟର ମଧ୍ୟ ସ୍ୱୀକାର କରିବାକୁ ହେବ ଯେ, ଇଉରୋପୀୟ ବିଜ୍ଞାନ, ଦର୍ଶନ, ନ୍ୟାୟ, ସାହିତ୍ୟ, ରାଜନୀତି, ଧର୍ମନୀତି ପ୍ରଭୃତି ଅଳ୍ପକାଳ ଯେତେଦୂର ଉନ୍ନତା-ବସ୍ଥାକୁ ପ୍ରାପ୍ତ ହୋଇଅଛି, ସେହିପରି ସଂସ୍କୃତ ପୂର୍ବକାଳରେ ନ ଥିଲା । ତେବେ ପ୍ରାଚୀନକାଳରେ ପୃଥିବୀର ସମସ୍ତ ସାହିତ୍ୟ ଅପେକ୍ଷା ସଂସ୍କୃତ ସାହିତ୍ୟ ଉନ୍ନତ ଥିଲା । ଯାହାହେଉ, ଏ ସମସ୍ତ ବିଷୟରେ ମତ ପ୍ରକାଶ କରିବା ଆମ୍ଭମାନଙ୍କ ପରି ଅଜ୍ଞ ବ୍ୟକ୍ତି ପକ୍ଷରେ ଧୃଷ୍ଟତା ମାତ୍ର । କହିବାର ଉଦ୍ଦେଶ୍ୟ ଏହି ଯେ, ଇଂରାଜୀ ସାହିତ୍ୟ ଅତିଶୟ ଉନ୍ନତ ଓ ସହଜ ପାଠ୍ୟ । ଏଥିରେ ସମାଲୋଚନା ଅଛି, ଏମାନଙ୍କ କାବ୍ୟାଦିର ଟୀକା ଏକ ପ୍ରକାର ସମାଲୋଚନା । ବିଶେଷତଃ ଭିନ୍ନ ଭିନ୍ନ ଦେଶର ଭିନ୍ନ ଭିନ୍ନ ବ୍ୟକ୍ତିମାନଙ୍କର ମନୋଗତ ଭାବ ଜାଣିବା ଆବଶ୍ୟକ । ମନୁଷ୍ୟ କେତେ ପ୍ରକାର ଚିନ୍ତା କରିପାରେ, କେତେଦୂର କପଟୀ ହୋଇପାରେ, କେତେ ବୁଦ୍ଧିମାନ୍ ହୋଇପାରେ, କେତେ ସାଧୁକଥା କହିପାରେ, ଏ ସବୁ ଶିଖାକଲେ ବୋଧହୁଏ ଦୋଷ ହେବ ନାହିଁ । ଏହା ଦ୍ୱାରା ଫଳ ଏହି ଯେ ମାନସିକ ଶକ୍ତି ଅତିଶୟ ପରିମାର୍ଜିତ ହୁଏ, ବୁଦ୍ଧି ଉଜ୍ଜ୍ୱଳ ହୁଏ ଏବଂ ମନର ଯଥାର୍ଥ ଉନ୍ନତି ହୁଏ; ସୁତରାଂ ଆମ୍ଭେମାନେ ଇଉରୋପୀୟ ସହଜ-ପାଠ୍ୟ ସାହିତ୍ୟ ଆଲୋଚନା କଲେ ସମାଲୋଚନାର ମୂଲ୍ୟ ବୃଦ୍ଧିପାଇବା । ଇଉରୋପରେ ପ୍ରକୃତ ବିଦ୍ୱାନ୍ ସମାଲୋଚକ ଅନେକ ଅଛନ୍ତି । ସର୍ବାଂଶରେ ସେମାନେ ଉଚ୍ଚାସନାଧିକାରୀ । ସଂସ୍କୃତ ଭାଷାର ଉନ୍ନତି କାଳ ଶେଷ ହୋଇଅଛି । ବର୍ତ୍ତମାନ ଭାରତସନ୍ତାନ ନିଜ ଭାଷା ପ୍ରତି ଉଦାସୀନ ଓ ଅଧଃପତନର ଘୋର ଛାୟାଗ୍ରସ୍ତ । କିନ୍ତୁ ଏହି ଅନ୍ଧକାର ମଧ୍ୟକୁ କ୍ରମଶଃ ଆଲୋକ ଆସୁଅଛି । ଏହି ଆଲୋକଦାତା ଇଉରୋପୀୟ ସମାଲୋଚକ ମଣ୍ଡଳୀ । କିଛିଦିନ ପୂର୍ବେ ଭାରତର ଏପରି ଦୁର୍ଦ୍ଦଶା ହୋଇଥିଲା ଯେ, ସଂସ୍କୃତ ପ୍ରତି ଲୋକମାନଙ୍କର କେବଳ ଔଦାସୀନ୍ୟ ଥିଲା ତାହା ନୁହେଁ, ସେମାନେ ଏହାକୁ ପରିହାସ କରୁଥିଲେ । ବର୍ତ୍ତମାନ

ସେହି ଭାଷା ଇଉରୋପୀୟ ପଣ୍ଡିତମାନଙ୍କର ଉଦାର ମନରେ ସ୍ଥାନ ପାଇବାରୁ ସଂସ୍କୃତ ଭାଷା ପ୍ରତି ସାଧାରଣ ଜନସମାଜର କଣ୍ଠିତ୍ ଅଦର ଲକ୍ଷିତ ହୁଏ । କାଳିଦାସଙ୍କର ଶକୁନ୍ତଳା ବର୍ତ୍ତମାନ ପୃଥିବୀର ସମସ୍ତ ସାହିତ୍ୟବିଦ୍ ପଣ୍ଡିତମାନଙ୍କ ହୃଦୟରେ ଅଙ୍କିତ । ଯଥାର୍ଥ ସୌନ୍ଦର୍ଯ୍ୟ କଦାପି ନଷ୍ଟ ହୁଏ ନାହିଁ, ଯୁଗ ଯୁଗାନ୍ତରେ ତାହା ନିଶ୍ଚୟ ମାନବ ହୃଦୟରେ ପ୍ରତିଫଳିତ ହେବ । ଗୁଣଗ୍ରାହୀ ସମାଲୋଚକ ସାହିତ୍ୟର ପ୍ରକୃତ ପରିପୋଷକ । ଏମାନେ ଏହାର ନେତା, ଏମାନେ ଏହାର ପ୍ରକୃତ ଭୂଷଣ ଅଟନ୍ତି ।

ଯେ କୌଣସି ଭାଷାର ଯଥାର୍ଥ ବିଦ୍ୱାନ୍ ବ୍ୟକ୍ତିମାନେ ସୁନ୍ଦର ସମାଲୋଚନା କରି ପାରନ୍ତି । କିନ୍ତୁ ପ୍ରତିଭାଶାଳୀ ସମାଲୋଚକ ତାଙ୍କର ଅସୀମ ପୁସ୍ତକାଧ୍ୟୟନ ଫଳକୁ ନିଜର ଉଦ୍ଦେଶ୍ୟ ଆଡ଼କୁ ଆକର୍ଷଣ କରନ୍ତି । ବିବିଧ ଗ୍ରନ୍ଥାଧ୍ୟୟନରେ ଯୁକ୍ତିଶକ୍ତି (Reasoning faculty) ପ୍ରସାରିତ ହୁଏ । ଉଦାରଯୁକ୍ତି ମନୁଷ୍ୟର ଶେଷ ଶିକ୍ଷାଫଳ । ଏହି ଶକ୍ତି ଉତ୍ତମ ଉଜ୍ଜ୍ୱଳ ହେଲେ ଔଦ୍ଧତ୍ୟ ଭାଙ୍ଗିଯାଏ ଓ ନମ୍ରତା ଆପେ ଆପେ ଆସେ । ବିଦ୍ୱାନ୍ ବ୍ୟକ୍ତିମାନଙ୍କର ଯୁକ୍ତିଶକ୍ତିର ପ୍ରାବଲ୍ୟ ହେତୁ ନିଜ ମତକୁ ସେମାନେ ଧରି ବସନ୍ତି ନାହିଁ । ଯୁକ୍ତିଯୁକ୍ତ କଥା ସେମାନେ ନିଶ୍ଚୟ ଗ୍ରହଣ କରିବେ । ଅନ୍ୟ କେହି ଅଳ୍ପବିଦ୍ୟାସମ୍ପନ୍ନ ବ୍ୟକ୍ତି ସେମାନଙ୍କ ମତ ଉତ୍କୃଷ୍ଟ ଯୁକ୍ତିଦ୍ୱାରା ଖଣ୍ଡନ କଲେ ସେମାନେ କ୍ରୁଦ୍ଧ ନ ହୋଇ ତାହା ଆଦରପୂର୍ବକ ଗ୍ରହଣ କରନ୍ତି । କାରଣ ସେମାନେ ନିଜର ଯୁକ୍ତିଶକ୍ତିକୁ ଉଦାରଭାବରେ ସନ୍ତୁଷ୍ଟ କରିବାକୁ ସର୍ବଦା ଇଚ୍ଛୁକ ।

ଆଉ ଏକଦଳ ବିଦ୍ୱାନ୍ ଅଛନ୍ତି, ସେମାନେ ନିଜକୁ ବ୍ରହ୍ମା ବୋଲି ମନେ କରନ୍ତି । ସେମାନେ ଯାହା କହିବେ, ତାହା ବେଦବାକ୍ୟରେ ଗୃହୀତ ହେବା ଆବଶ୍ୟକ । ଅନ୍ୟାନ୍ୟ ବ୍ୟକ୍ତିମାନଙ୍କର ଯୁକ୍ତି ଅସାର, ନା—ଅସାରତା ନିରୂପଣ କରିବାକୁ ସେମାନଙ୍କର ଫୁରସତ ଥାଏ ନାହିଁ; ସେମାନେ ସେସବୁ ଶୁଣିବାକୁ ଘୃଣା କରନ୍ତି । ସେମାନେ

ଅନେକ ପୁସ୍ତକ ପଢ଼ିଅଛନ୍ତି ସତ, କିନ୍ତୁ ବିଦ୍ୟାର ଯଥାର୍ଥ ଫଳଲାଭ କରି ନାହାନ୍ତି । ଏଣୁ ଏମାନଙ୍କୁ "ଅପଢ଼ା ପଣ୍ଡିତ" କହିଲେ ଦୋଷ ନାହିଁ । ଆଉ ଏକଶ୍ରେଣୀର ବ୍ୟକ୍ତି ଅଛନ୍ତି, ଯେଉଁମାନଙ୍କର ବିଦ୍ୟା ଅଳ୍ପ, ତଥାପି ସେମାନେ ସମସ୍ତ ସମୟରେ ଅଧିକ ନମ୍ର ଓ ଯୁକ୍ତିସମ୍ପନ୍ନ । କେବେ କେବେ ଏମାନଙ୍କର ଯୁକ୍ତି ଅଧିକ ସଙ୍ଗତ ହୋଇଥାଏ । କିନ୍ତୁ ଏମାନଙ୍କର ବୃଥା ଗର୍ବ ଜାତ ହେଲେ ତାହା ଅସହ୍ୟ ବୋଧହୁଏ । ବରଂ ବୁଦ୍ଧିମାନ୍ ବ୍ୟକ୍ତିର ଅହଂକାର ସହ୍ୟ କରାଯାଇ ପାରେ ।

ସତ୍‌ସମାଲୋଚନାର ରାଜସିଂହାସନ ଚତୁଃପାର୍ଶ୍ୱରେ ନମ୍ରତା, ଯୁକ୍ତି, ନ୍ୟାୟପରାୟଣତା ଓ ସ୍ପଷ୍ଟବାଦିତା ଏ ଗୁଣଗୋଟି ସହଚର ସର୍ବଦା ବିଦ୍ୟମାନ ।

# ଯୌବନର ପ୍ରଭାବ ଓ ପ୍ରତିଷ୍ଠା

ଶ୍ରୀ ନୀଳକଣ୍ଠ ଦାସ

ଗୋଟିଏ ମତ ଅଛି, ଯୌବନ ବିଷମ କାଳ । ଏହି ଅର୍ଥରେ ଏହା ସତ୍ୟ । ଜୀବନର ସ୍ୱତନ୍ତ୍ରତାବିକାଶ ଯୌବନରେ ଆରମ୍ଭ ହୁଏ । ଏତେବେଳେ ଆଦର୍ଶର ବ୍ୟଞ୍ଜନା ଓ ଆଶାର ଉଦ୍ଦୀପନାରେ ତରଳ ସୁବପ୍ରାଣ ଘନଘନ ଉଦ୍‌ବେଳିତ ହୁଏ । ମାନବ ଯୌବନ ଦେଖିଲେ ଦେଖାଯାଏ ଯୌବନରେ ପ୍ରାଣ ଅନନ୍ତ ଭଙ୍ଗିରେ ବିସ୍ଫୁରିତ ହୁଏ । ପ୍ରାଣର ସାମର୍ଥ୍ୟ ଓ ଶୃଙ୍ଖଳ ଗଣନା ଯୁବକ ବୁଝେ ନାହିଁ । କର୍ମରେ ବିବେକ ନ ଥିଲେ ବି ଅନନ୍ତ ଶକ୍ତିର ପ୍ରେରଣାରେ ତାହାର ଅସ୍ଥି ତଥା କର୍ମେନ୍ଦ୍ରିୟମାନ ଚଳନ୍ତ ହୁଅନ୍ତି । ବେଳେ ବେଳେ ଆଦର୍ଶ ଅସ୍ଥିର ହୁଏ ଏବଂ ବିସ୍ତାର ମାର୍ଗ ମୁହୁର୍ମୁହୁଃ ପରିବର୍ତ୍ତିତ ହୁଏ । ପ୍ରାଣ ପକ୍ଷରେ ଏପରି ବିସ୍ତାର ପଥ ଓ ଆଦର୍ଶ ଅନିର୍ଦ୍ଦିଷ୍ଟତା ବିଷମ ଏବଂ ଯୌବନର ବହିର୍ମୁଖୀ କର୍ମପ୍ରବଣତା ଦୁଃଖ ହିଁର ଫଳ ।

ମାତ୍ର ଯୌବନ ଯେ ଏହି ଅର୍ଥରେ ସବୁବେଳେ ବିଷମ ବୋଲି କୁହାଯାଏ ତାହା ନୁହେଁ । କେତେକ ତତ୍ତ୍ୱଦର୍ଶନବାଦୀଙ୍କ ମତରେ ଜୀବନ ଗୋଟିଏ ସଂଯମର ପରୀକ୍ଷା ମାତ୍ର । ଅନନ୍ତ ନିରୋଧହିଁ ଜୀବନର ପରମ କର୍ତ୍ତବ୍ୟ । ସମସ୍ତ ନିର୍ବାଣ ହିଁ ନିରୋଧର ନାମାନ୍ତର ମାତ୍ର । ପାପ-

ପ୍ରବୃତ୍ତିମୟ ଜୀବନ ତୁଚ୍ଛ, ଜନ୍ମବନ୍ଧ କର୍ମମାୟା ଏ ସବୁ ଛିଣ୍ଡିବାକୁ ହେବ । ସତ୍ୟ, ଶିବ ବା ମୁକ୍ତି ଏ ସବୁର ମଧ୍ୟରେ ନାହିଁ । ତାହା ଜୀବନଠାରୁ ଭିନ୍ନ—ଜୀବନର ନିରୋଧରେ । ଜୀବନର କ୍ରିୟା କଳାପରେ ଉପଭୋଗର ସ୍ଥାନ ନାହିଁ—ସମସ୍ତ ଭୋଗହିଁ ବିଳାସ—କେବଳ ସ୍ୱାର୍ଥୀ କର୍ମେନ୍ଦ୍ରିୟର ସ୍ୱେଚ୍ଛାଚାରିତା ।

ଆପାତତଃ ପ୍ରକୃତିର ପ୍ରଭାବ ବଡ଼ ନିରଙ୍କୁଶ ଓ ବିଶୃଙ୍ଖଳ । ଆଦର୍ଶର ସାଧନାବେଳେ ଏ ପ୍ରବୃତ୍ତି-ଜନିତ କ୍ରିୟାରେ ସଂଯମ ଲୋଡ଼ା । କିନ୍ତୁ ଏ ସଂଯମର ସାଧନା ପାଇଁ ଏକାବେଳକେ ଅଧୀର ହେବା ଠିକ୍ ନୁହେଁ । ନିରୋଧରେ ବିଶୃଙ୍ଖଳ ପ୍ରବୃତ୍ତିର ବିନାଶ ହୋଇପାରେ, କିନ୍ତୁ ଜୀବନରେ ବିକାଶର ଶୃଙ୍ଖଳା ଫୁଟିବ କିପରି ? ପ୍ରବୃତ୍ତିର ବିଶୃଙ୍ଖଳା ହେୟ ହୋଇପାରେ, ମାତ୍ର ହେୟର ବର୍ଜନ ମାତ୍ରେ ଉପାଦେୟ ମିଳେ ନାହିଁ । ଉପାଦେୟର ଆହରଣ ନିମନ୍ତେ ସୃଷ୍ଟି ପ୍ରଯତ୍ନ ନ ଥିଲେ କେବଳ ନିରୋଧରେ ହେୟର ବିନାଶ ମଧ୍ୟ ସମ୍ଭବ ନୁହେଁ । ଆତ୍ମା ଗୋଟିଏ ବିକାଶପରାୟଣ ସ୍ଥାୟୀ ଶକ୍ତି । କେବଳ ପ୍ରବୃତ୍ତି ନିରୋଧରେ ତାହାକୁ ଶୂନ୍ୟ ଓ ଗୁଣହୀନ କରି ହେବ ନାହିଁ । ଜୀବନରେ ଆହରଣ ଓ ବିକାଶ ନିମନ୍ତେ ସ୍ଥାନ ରଖିବାକୁ ହେବ । ଆତ୍ମାରେ ବିକାଶର ବୀଜ ପ୍ରତି ଲକ୍ଷ୍ୟ ରଖିବା ଉଚିତ ।

ସେଥିପାଇଁ ଜୀବନରେ ଅସାରତାର ଅନ୍ଧକାର ନ ଦେଖି ସର୍ବଦା ଆଲୋକର ଇଙ୍ଗିତ ଅନୁଭବ କରିବାକୁ ହେବ । ପ୍ରବୃତ୍ତି ନିରଙ୍କୁଶ ଓ ବିଶୃଙ୍ଖଳ ହୋଇପାରେ, କିନ୍ତୁ ପ୍ରବୃତ୍ତିର ମୃତ୍ୟୁରେ ଜୀବନର ବିକାଶ ନୁହେଁ । ପ୍ରବୃତ୍ତିର ବ୍ୟାପ୍ତିରେହିଁ ଜୀବନର ମୁକ୍ତି । ପ୍ରବୃତ୍ତିର ସମସ୍ତ ବିଶୃଙ୍ଖଳା ଓ ନିରଙ୍କୁଶତା ମଧ୍ୟରେ ଆତ୍ମାର ଏହି ଅନନ୍ତ ବ୍ୟାପ୍ତି, ଏହି ବିଶାଳ ଉପଭୋଗ ମଧ୍ୟରେ ଜୀବନର ସାର ସତ୍ୟ କର୍ମେନ୍ଦ୍ରିୟମାନଙ୍କର ଘୋର ନିଷ୍ଫଳ ତୁଳନାରେ ଆଦର୍ଶର ସ୍ଥିରତା ଓ ବ୍ୟକ୍ତିତ୍ୱର ସତ୍ତା ।

ଏହି ବିଷମ ଯୌବନରେ ଅଛି ଆତ୍ମାର ଅସୀମ ସ୍ୱାଧୀନତା । ପ୍ରବୃତ୍ତିର ଉଚ୍ଛୃଙ୍ଖଳତା ତଥା କର୍ମର ଚପଳତା ମଧ୍ୟରେ ପ୍ରାଣର ଅନନ୍ତ ଉନ୍ମେଷ । ଯୁବକର ଉଦ୍ଦାମ ତେଜରେ ବିଶ୍ୱଶକ୍ତିର ପ୍ରେରଣା । ଆଶାର ନିରଙ୍କୁଶ ସରସତା ମଧ୍ୟରେ ଶ୍ରେୟ ଶ୍ରୀର ପ୍ରତିଷ୍ଠା । ମୂଳତଃ ବିଶୃଙ୍ଖଳ ଯୌବନ ମଧ୍ୟରେ ହିଁ ଆଦର୍ଶର ମହାଶୃଙ୍ଖଳା ।

ଯୌବନର ବିଶାଳ ସାଧନାରେ ଜୀବନର ଅମେୟ ସ୍ଫୂର୍ତ୍ତି ପ୍ରକଟିତ ହୁଏ । ବିଶ୍ୱସୃଷ୍ଟିର ପରମବୀଜ ଏହିଠାରେ । ଏହି ଯୌବନହିଁ ମହାଶକ୍ତିର ପୀଠ ଓ ପରମ ଆଦର୍ଶର ପ୍ରତିଷ୍ଠାନ । ଏହାହିଁ ଏକାବେଳକେ ଭୋଗ୍ୟ ଓ ଆରାଧ୍ୟ । ସମଗ୍ର ଜୀବଜଗତରେ ଏହାହିଁ ଅନନ୍ତର ଆଧାର, ଏହାହିଁ ସାର୍ବଭୌମ ଓ ନିତ୍ୟ । ଯୌବନର ପୂଜାହିଁ ଜୀବନର ସାଧନା, ଯୌବନର ବ୍ୟବହାର ଜୀବନର ସିଦ୍ଧି । ଜଗତର ପରମ ଆଦର୍ଶ ସର୍ବବ୍ୟାପୀ ବିଶ୍ୱାତ୍ମା ଏହିଠାରେ ପ୍ରାଣେ ପ୍ରାଣେ ପ୍ରତିଷ୍ଠିତ ହୁଅନ୍ତି । ଜଗତର ଅନନ୍ତ ବୈଷମ୍ୟ ଓ କର୍ମଲୀଳା ଏହିଠାରେ ଇଙ୍ଗିତରେ ପ୍ରତିଭାତ ହୁଏ । ଏହି ଯୌବନରେ ମରରାଜ୍ୟରେ ଦେବତାଙ୍କର ଆବିର୍ଭାବ । ଏହା ହିଁ ଅନନ୍ତର ବିଳାସଭୂମି ଏବଂ ସାର ସତ୍ୟର ନିଦାନ ।

ଅନନ୍ତ ମହିମାମୟ ବିଶ୍ୱଶକ୍ତି ଜୀବନ ରୂପ ଦର୍ପଣରେ ପ୍ରତିବିମ୍ବିତ ହୁଏ । ଜୀବନ ପରି ଗୋଟିଏ ଶକ୍ତି ଆମ୍ଭେମାନେ ବିଶ୍ୱାତ୍ମାର ଧାରଣା କରିବାକୁ ସମର୍ଥ ହେଉଁ । ଏହି ଜୀବନ ହିଁ ବିଶ୍ୱଶକ୍ତିର ଇଙ୍ଗିତ—ଏହା ଗୋଟିଏ ବିକାଶମୟ ଶକ୍ତି । ଆତ୍ମବିକାଶ ଏହାର ଧର୍ମ । ଆତ୍ମବୋଧ ଏହାର ସିଦ୍ଧି । ନିରୋଧ ଫଳରେ ନିର୍ବାଣ ଆସି ଜଗତଜଞ୍ଜାଳରେ, କିନ୍ତୁ ଭୋଗର ବିଶୃଙ୍ଖଳାରେ ଆତ୍ମବୋଧର ପ୍ରତିଷ୍ଠା ନ ହେଲେ ଜୀବନର ଭୂତ୍ୟୁତ୍‌ବିକାଶରେ ପ୍ରବୃତ୍ତି ସୃଷ୍ଟ ନ ହେଲେ ଆଦର୍ଶ ସ୍ଥିର ହୁଏ ନାହିଁ । ଏହି ଆଦର୍ଶ ସ୍ଥିର ହେଲେ ଶଙ୍କରଙ୍କ ଭାଷାରେ କୁହାଯାଇ ପାରେ "ତତ୍ତ୍ୱମସି" । ସେଥିପାଇଁ ଏହି ଅନନ୍ତ ବିଶୃଙ୍ଖଳ ବିଷମ ପ୍ରବୃତ୍ତିବହ୍ନିର ଯଥାର୍ଥ ଉପଭୋଗରେ ଅନନ୍ତ ନାମ ରୂପମୟ ବିଶ୍ୱଜଗତ ଆତ୍ମବୋଧରେ

ଆଣିବାକୁ ହେବ । ବାସ୍ତବିକ ଅନୁଭବ କରିବାକୁ ହେବ । 'ସୋଽହଂ' ଯୌବନହିଁ ଏ ସମସ୍ତ ଅନୁଭୂତିର ମୂଳାଧାର; ତେଣୁ କୁହାଯାଇଛି ସେହିଠାରେ ବିଶ୍ୱଦେବତାଙ୍କର ଆବିର୍ଭାବ ।

ଶିଶୁର ଆତ୍ମପ୍ରକାଶରେ ଅଧିକାର ନାହିଁ । କେବଳ ମନୁଷ୍ୟ କଥା ନୁହେଁ; ସମସ୍ତ ସ୍ଥାବର ଜଙ୍ଗମ ଜୀବଜଗତରେ ଏହି ନୀତି ଭିତର ବିଶେଷ ଅନୁସରଣୀୟ । ପଶୁପକ୍ଷୀର ଶିଶୁ ଅଲକ୍ଷଣ ପର୍ଯ୍ୟନ୍ତ ଆଶ୍ରୟ ଲୋଡ଼େ । ବୃକ୍ଷ ବୀଜରେ ଶିଶୁ ଖାଦ୍ୟ ସଞ୍ଚୟ କରି ତାହାର ପ୍ରତୀକ୍ଷା କରେ । ମନୁଷ୍ୟ ଜାତିରେ ମଧ୍ୟ ନିରାଶ୍ରୟ ଶିଶୁ ପିତା ମାତା ସ୍ୱଜନାଦିଙ୍କର ଅନନ୍ତ ଦୟା ଓ ଅନନ୍ତ ପ୍ରୀତିରେ ବିକାଶଲାଭ କରେ । ବିଶ୍ୱଶକ୍ତିର କି ମହାଇଙ୍ଗିତରେ ମାତା ପ୍ରାଣଦାନ କରି ପିତା ସର୍ବସ୍ୱାର୍ଥ ଭୁଲି ଆତ୍ମୀୟ ସ୍ୱଜନମାନେ ପ୍ରାଣର ଅନନ୍ତ ଆଗ୍ରହରେ ଶିକ୍ଷକ ଓ ଗୁରୁଜନମାନେ କି ସଂଯତ ସମର୍ପଣରେ ଶିଶୁକୁ ସୃଜନ କରନ୍ତି, ତାହା କିଏ କହିବ କି ? ଜଗତରେ ଏହି ନିଃସ୍ୱାର୍ଥ ପ୍ରୀତିର ଲୀଳା କେହି ବିଶ୍ଳେଷଣ କରି ପ୍ରବୀଣ-ମୂଳକ ହିସାବ କିତାବ ଦେଖାଇ ବୁଝାଇ ପାରିବ କି ?

ନିଶ୍ଚୟ ଶିଶୁର ବିକାଶ ପାଇଁ ଏହି ବିଶ୍ୱପ୍ରୀତି ଓ ଅନନ୍ତ ଉଦାରତାରେ ଆତ୍ମାର ମହାଶକ୍ତି ଦେଖିବାକୁ ହେବ । ଶଷମ ଚେତନ ଜଗତ ଏହି ମହାପ୍ରୀତିର ଲୀଳାଭୂମି । ଏହି ମହାପ୍ରୀତି ବଳରେ ଜଗତର ସମସ୍ତ ବିଷମତା ମଧ୍ୟରେ ସମତା ପ୍ରତିଷ୍ଠିତ ହୋଇଅଛି । ଜଗତର ବସ୍ତୁରାଶି ପରସ୍ପରର ଅପେକ୍ଷାରେ ମହାବିଶ୍ୱର ଏକତ୍ୱ ରଖିଅଛନ୍ତି ! ଏହି ଅପେକ୍ଷା ଏହି ପ୍ରୀତି ଲୀଳା ମୁହୂର୍ତ୍ତକ ପାଇଁ ଅବରୁଦ୍ଧ ହେଲେ ସମସ୍ତ ବିଶ୍ୱଜଗତ ବାସ୍ତବରେ ବିଶୃଙ୍ଖଳ ହେବ । ଜଗତର ସମସ୍ତ ଆପାତ ବିଶୃଙ୍ଖଳତା ମଧ୍ୟରେ ଏହି ବିଶ୍ୱମୈତ୍ରୀ ଆଦର୍ଶର ସଂଯମ ରକ୍ଷିଅଛି । ଶିଶୁ-ପ୍ରାଣ ଏହି ଅପେକ୍ଷାର ସମ୍ବନ୍ଧ ଓ ଏହି ବିଶ୍ୱମୈତ୍ରୀର ଲୀଳାରେ ବିକାଶ ଲଭିଅଛି । ଫଳରେ ଏହି ଅନନ୍ତ ବିଶ୍ୱର ମହାଶକ୍ତି ଅନନ୍ତ ପ୍ରୀତିରୂପରେ ଶିଶୁର ବିକାଶରେ କ୍ରମଶଃ ପ୍ରକଟିତ ହେଉଅଛି । ଯୌବନ ଶିଶୁର ଏହି

ବିକାଶର ଚରମ ସୀମା । ଏହିଠାରେ ଆତ୍ମବିକାଶର ଆରମ୍ଭ ଏବଂ ବିଶ୍ୱ-ମୈତ୍ରୀର ସ୍ୱଚେଷ୍ଟା ବିକାଶ । ନବପ୍ରସୂତ ମାନବଶିଶୁ ଯେତେବେଳେ ଯୌବନରେ ପଦାର୍ପଣ କରେ, ତାହାର ଅଙ୍ଗପ୍ରତ୍ୟଙ୍ଗ ସୌଷ୍ଠବମୟ, ପୁଷ୍ଟ ଓ କର୍ମକ୍ଷମ ହୁଏ ଏବଂ ଯେତେବେଳେ ତାହାର ଅନନ୍ତ ପ୍ରବୃତ୍ତି ଏକାବେଳକେ ଜାଗି ଉଠେ । କେବଳ ମନୁଷ୍ୟର ନୁହେଁ, ସମସ୍ତ ଜୀବ ଜଗତରେ ଏହି ଶାରୀର ସ୍ୱଭାବ ସ୍ପଷ୍ଟ । ମୈତ୍ରୀର ପ୍ରସାର କରିବା ପାଇଁ ବିଶ୍ୱବିକାଶର ଅଜ୍ଞାତ କାମନାରେ ତାହାର ଶାରୀରିକ ଆତ୍ମବିକାଶ । ଏହି ଆତ୍ମବିକାଶରେ ସେ ନିଜକୁ ଅପୂର୍ଣ୍ଣ ମନେ କରେ । ଶିଶୁ ବୃକ୍ଷ ଯୁବକ ହୋଇ ଆଉ ପତ୍ର ବାହାର ନ କରି ଫୁଲ ଫୁଟାଇ ଦିଏ । କିଏ କହିବ କି ଅନନ୍ତ ଉନ୍ମାଦନାରେ ପୁଷ୍ପର ଗର୍ଭକୋଷ ପରାଗ ସଙ୍ଗମ ପାଇଁ ଚାହିଁ ବସିଥାଏ । ପରୀକ୍ଷା କରି ଦେଖାଯାଇଅଛି, ପରାଗ ପ୍ରତୀକ୍ଷାରେ ନବପୁଷ୍ପର ଉତ୍ତପ୍ତତା ମାନବର ଶରୀର ଉତ୍ତାପଠାରୁ ଅଧିକ । ସମସ୍ତ ଶରୀରକୁ ଉଷ୍ଣ କରି ମଧୁକୋଷ ଖୋଲି ପୁଷ୍ପ କି ଆବେଗରେ ଛଅ ଘଣ୍ଟାରୁ ଅଧିକ କାଳ ଭ୍ରମରର ପଦରେଣୁ ପ୍ରତୀକ୍ଷାରେ ଚାହିଁ ବସିଥାଏ । ଗୋଟିଏ ରେଣୁ କଦାଚିତ ପାଇଲେ ତାହା ସଙ୍ଗେ ସଙ୍ଗେ ଗର୍ଭରେ ସଞ୍ଚୟ କରି ଆବେଗ ଛାଡ଼ି ଦିଏ । ଜୀବନର ସମସ୍ତ ଶୋଭା ସମ୍ପଦ ଦାନ କରି ଆହା ସତେ କି ଫୁଲଟି ପରାଗ ସଙ୍ଗମରେ ଆତ୍ମକୁ ପୂର୍ଣ୍ଣ ମନେକରେ ।

ମନୁଷ୍ୟ ଜଗତରେ ଏ କଥା ବୁଝାଇବା ନିଷ୍ପ୍ରୟୋଜନ । ଯୌବନର ପ୍ରାରମ୍ଭ ମାତ୍ରେ ଶରୀରର କି ଉନ୍ମାଦନାରେ କାହିଁକି ଅନ୍ୟ ସଙ୍ଗରେ ମିଶିବାକୁ ଚାହେଁ, ଯେଉଁ ମୈତ୍ରୀ ଲୀଳାରେ ଶିଶୁ ବଢ଼ି ଯୁବକ ହୋଇଅଛି ସେହି ମୈତ୍ରୀର କି ଅପୂର୍ବ ଉନ୍ମାଦରେ ରମଣୀ ପୁରୁଷର ସଂଗମ ହୁଏ, ତାହା ଦର୍ଶନ ତର୍କର ସୀମାତୀତ । ସ୍ୱୟଂ ବିଧାତାଙ୍କ ସୃଷ୍ଟିର ପ୍ରାଣର ଏ ଚାଞ୍ଚଲ୍ୟ ଦେଖି ବିସ୍ମିତ । ଏହି ଲୀଳାରେ ବିଧାତାଙ୍କୁ ଯେ ଦେଖି ନାହିଁ ଦର୍ଶନର ତର୍କଜାଲରେ ତାହା ପ୍ରତି ସେ ଦ୍ୱାର ମୁକ୍ତ ନୁହେଁ ।

ମାନବ ଯୁବକର ଏ କ୍ଷେତ୍ରରେ ସ୍ୱାତନ୍ତ୍ର୍ୟ ନାହିଁ । ଏହି ଯୌବନରେ ଅଙ୍ଗପ୍ରତ୍ୟଙ୍ଗର ସମ ସୌଷ୍ଠବ ଏବଂ ଏହି ସୌଷ୍ଠବରେ ପ୍ରୀତିର ପ୍ରବାହ ଉଚ୍ଛଳ ଉଠେ । କିନ୍ତୁ ସାମାନ୍ୟରେ ତାହାର ରମଣୀ-ପ୍ରୀତି ସ୍ୱାଭାବିକ । ସେହି ପ୍ରୀତିର ଅନ୍ତରାଳରେ ପ୍ରାଣର ଯେ ବହ୍ନି ଜଳି ଉଠେ, ସେ ଦୀପ୍ତିରେ ବିଶ୍ୱସଂସାର ଉଦ୍ଭାସିତ ହୁଏ । ସେ ପ୍ରୀତିରେ କେତେକ ପରିମାଣରେ ଶାରୀର ବୃତ୍ତି ଓ ପଶୁଧର୍ମ ଅଛି; କିନ୍ତୁ ଏଠାରେ ଯୁବକର ଅନନ୍ତମୁଖୀ ଅନ୍ତରାତ୍ମାର ଆଭାସ ମିଳେ । ସ୍ପଷ୍ଟ କରି କହିବାକୁ ଗଲେ ବୁଝାଯିବ, ପ୍ରାଣର ଏହି ପ୍ରୀତିଦାନରେ ଅପର ସଙ୍ଗେ ପ୍ରାଣ ମିଶାଇ ଅମୃତକଣା ଲାଭ କରିବାରେ ଯୁବକହିଁ କେବଳ ନଦୀ ପହଁରି ପାରେ—ଅଲଙ୍ଘ୍ୟ ପ୍ରତିବନ୍ଧକ ଲଙ୍ଘିପାରେ । ଏପରି କି ପ୍ରାଣ ପର୍ଯ୍ୟନ୍ତ ବିସର୍ଜ୍ଜନ କରିବାରେ ତିଳେ ମାତ୍ର କୁଣ୍ଠିତ ହୁଏ ନାହିଁ । ଏହି ଶାରୀର ଧର୍ମ ଓ ପଶୁ-ପ୍ରବୃତ୍ତିରେ ମଧ୍ୟ ଯୁବକର ଆତ୍ମକ୍ରିୟାରେ ବିଶୃଙ୍ଖଳତା ନାହିଁ । ଅନନ୍ତ ଶକ୍ତି ଓ ଅନନ୍ତ ପ୍ରୀତି ଅନନ୍ତ ଉନ୍ମାଦନାରେ ଯୁବକକୁ ଭସାଇ ଦିଏ । ଏହି ଇନ୍ଦ୍ରିୟପରତନ୍ତ୍ରତା କେବଳ ଯୁବକର ସ୍ୱତନ୍ତ୍ର ଅଧିକାର ନୁହେଁ । ପ୍ରବୀଣ ମଧ୍ୟ ଇନ୍ଦ୍ରିୟପରିତନ୍ତ୍ର ହୁଏ । କିନ୍ତୁ ପ୍ରବୀଣ ପ୍ରାଣରେ ସେ ଉନ୍ମାଦନା ନାହିଁ । ଅନନ୍ତର ସେ ଇଙ୍ଗିତ ନାହିଁ । ପ୍ରାଣର ସେ ବିଶାଳତା ନାହିଁ । ପର ପାଇଁ ପ୍ରାଣ ଦେବାର ସେ ସାମର୍ଥ୍ୟ ନାହିଁ । ପ୍ରବୀଣ ଇନ୍ଦ୍ରିୟାସକ୍ତ ହେଲେ ହିସାବ କରି ସୁଯୋଗ ଖୋଜି ବୁଲେ; ମାତ୍ର ଯୁବକ ଅନନ୍ତ ଉନ୍ମାଦନାରେ—ବିଶ୍ୱପ୍ରୀତିର ପ୍ରେରଣାରେ ପ୍ରାଣ ଭସାଇଦିଏ । ବିଳାସୀ ପ୍ରବୀଣର କାର୍ଯ୍ୟ ଭୋଗ—ପରମସିଦ୍ଧ ବିଶ୍ୱପ୍ରାଣ ଯୁବକର କାର୍ଯ୍ୟ ଦାନ । ପ୍ରବୀଣ ଭୋଗରେ ପ୍ରବୃତ୍ତି ଚରିତାର୍ଥ କରି ଆତ୍ମ-ରକ୍ଷା କରେ—ପ୍ରବୃତ୍ତିର ବିଶାଳ ଇଙ୍ଗିତରେ ପ୍ରାଣଦାନ କରିବାକୁ ଯୁବକହିଁ ସମର୍ଥ ।

ଏତ ସାମାନ୍ୟ ଜୀବଧର୍ମ । ଯେ କୌଣସି ଦେହୀ ଏହି ଧର୍ମରେ ବିକାଶ ଲଭିବ । ମାତ୍ର ମନୁଷ୍ୟ କେବଳ ଶରୀରଧର୍ମରେ ଆବଦ୍ଧ ନୁହେଁ ।

ସମସ୍ତ ଶରୀରରୁ ଧର୍ମ ମଧ୍ୟରେ ଅଗ୍ରବର୍ତ୍ତୀ ମନୁଷ୍ୟର ବିଶେଷ: ଜୀବମାନଙ୍କର ଆଦର୍ଶ ଈଶ୍ୱରଙ୍କର ଅନନ୍ତ ଧ୍ୟାନରେ ସର୍ବଦା ଲକ୍ଷ ସମ୍ମୁଖରେ ଧରି ହୋଇ ରହିଅଛି । ଭୂମି ଓଦା ହେଲେ ଜଳ ବାହାରି ପଡ଼ନ୍ତି । ଡିମ୍ବ ଦେବାର ସମୟ ହେଲେ ପକ୍ଷୀ ବସା ତିଆରି କରିବା ପାଇଁ କୁଟା କାଠି ଖୋଜି ବୁଲେ । ମରଣଭୟରେ ଆତୁର ହେଲେ ମଧ୍ୟ ପଶୁ ତ୍ରାସ ଦେଖି ଜିଘାଂସୁର ଅନୁସରଣ କରେ । ମାତ୍ର ମନୁଷ୍ୟ ସମସ୍ତ ଶରୀରବନ୍ଧ ମଧ୍ୟରେ ସର୍ବଦା ଚିନ୍ତା ଓ କଳ୍ପନାରେ ଆଦର୍ଶ ଦେଖୁଅଛି । ଇନ୍ଦ୍ରିୟଭୋଗରେ ମାନବ ସୁଖ ପାଏ ନାହିଁ । ସେ ସୁଖ ପାଏ ତୃପ୍ତିର ଆଶାରେ—ଭୋଗର କଳ୍ପନାରେ । ତାହାର ଶରୀର—ଧର୍ମ ଏହି କଳ୍ପନାରେ ଆଦର୍ଶରେ ନିୟମିତ ହୁଏ—ସୁନ୍ଦର ଚିନ୍ତାରେ ତାହାର ଲୋକ ସଂଯତ ହୁଏ । ସଂଯମର ଦୁଃଖରେ ସେ ଆଦର୍ଶଙ୍କର ସନ୍ତୋଷ ଲାଭ କରେ । ସେଥିପାଇଁ ମାନବ ଜୀବନରେ ଜୀବଧର୍ମର ଅପାର ବନ୍ଧନ ଓ ଭୋଗର ନିର୍ଦ୍ଦିଷ୍ଟତା ସବୁବେଳେ ଭାଙ୍ଗି ଯାଉଅଛି । ସେ ଆଶାର ଇଙ୍ଗିତରେ ଅପାର ସୁଖ ବଳିଦାନ କରି ସଂଯମର କ୍ଲେଶ ଓ ସାହସର ବିଶ୍ୱାସରେ ପୁଲକିତ ହେଉଅଛି । ଯାହା କରିବାକୁ ପ୍ରବୃତ୍ତି ହେଉଅଛି, ତାହା ଭିତରେ ମନୁଷ୍ୟ ସର୍ବଦା ଗୋଟିଏ କରିବାର ଇଚ୍ଛା ଖୋଜୁଅଛି ।

ସେଥିପାଇଁ ଯୁବକ ପ୍ରାଣର ରମଣୀ—ବିଳାସରେ ଅନନ୍ତ ମାଦକ ଆସ୍ୱାଦର ଇଙ୍ଗିତ ଥିଲେ ମଧ୍ୟ ଇତର ଜନ୍ତୁ ପରି ମନୁଷ୍ୟର ସେ ବିଳାସ ଭୋଗ୍ୟ ନୁହେଁ । ସେ ବିଳାସ ମଧ୍ୟରେ କେବଳ ଅନନ୍ତର ଇଙ୍ଗିତହିଁ ମନୁଷ୍ୟର ସ୍ପୃହଣୀୟ ଓ ଶ୍ରେୟ । ଶରୀରତତ୍ତ୍ୱର ଜ୍ଞାନ ଓ ଜଗତର ଭୂୟୋଦର୍ଶନରେ ମାନବର ଏ ବିଳାସ ବାସନା ସଂଯତ ହେବା ଉଚିତ । ସ୍ପଷ୍ଟତଃ କୁହାଯାଇ ପାରେ ଯେ, ବୟସରେ ମାନବର ଏ ଶାରୀରିକ ବିଳାସର ବାସନା ଜାଗ୍ରତ ହୁଏ, ସେତେବେଳେ ତାହା ଭୋଗ୍ୟ ନୁହେଁ । ସେ ଜାଣେ ସେତେବେଳେ ସେ ଭୋଗର ପ୍ରଶ୍ରୟ ଦେଲେ ଶରୀର ଧ୍ୱଂସ

ହେବ । ସେଥିପାଇଁ ବ୍ରହ୍ମଚର୍ଯ୍ୟର ବିଧି ପ୍ରାଚୀନ ଓ ନବୀନ ଉଭୟ ମତରେ ୨୪ ବର୍ଷ ବୟସ ପୂର୍ବରୁ ଶରୀରସଙ୍ଗମ ବାସନା ଚରିତାର୍ଥ କଲେ ଶରୀରର ଗଠନ ଓ କର୍ମୀଣ ଭ୍ରଷ୍ଟ ହୁଏ । ସେ ବିଳାସରେ ଯେଉଁ ଦ୍ରବ୍ୟର ଅପଚୟ ହୁଏ ତାହା ବାସ୍ତବରେ ସୃଷ୍ଟି ଓ ଏକ ପ୍ରକାରରେ ବ୍ୟକ୍ତିର ଅପରାଧ ନିମନ୍ତେ କଳ୍ପିତ ହୋଇଥିଲେ ହେଁ ଚବିଶି ବର୍ଷ ବା ପୂର୍ଣ୍ଣ ଶାରୀର ଯୌବନ ପୂର୍ବରୁ ତାହା ଶରୀରର ଗଠନ ଓ ଦୃଢ଼ତା ନିମନ୍ତେ ଅଭିପ୍ରେତ ।

ବ୍ରହ୍ମଚର୍ଯ୍ୟ ଓ ବୀର୍ଯ୍ୟଧାରଣ ସମ୍ବନ୍ଧରେ ଏଠାରେ ବିଶେଷ କହିବା ନିଷ୍ପ୍ରୟୋଜନ । ତରୁଣର ଅନ୍ତରରେ କି ମହାକ୍ଷତି ହୁଏ, ତାହା ସମସ୍ତେ ଜଣାଧିକେ ଜାଣନ୍ତି । ବିଳାସରେ ସଂଯମର ପ୍ରୟୋଜନୀୟତା ସର୍ବବାଦୀ-ସମ୍ମତ । ଅନନ୍ତ ଚଳ ଜଗତ ନିୟମର ଲୀଳାଭୂମି । ଜଗତରେ ଯେତେ ଦ୍ରବ୍ୟ ହୁଏ ସବୁ ବ୍ୟବହାରରେ ଲାଗେ ନାହିଁ । ସବୁ ମଞ୍ଜି ଗଛ ହୁଏ ନାହିଁ, ସବୁ ଜଳ କ୍ଷେତରେ ବର୍ଷେ ନାହିଁ । ଅନନ୍ତ ସୌରରଶ୍ମି ନିରବକାଶ ଶୂନ୍ୟରେ ବିକ୍ଷିପ୍ତ ହୁଏ । ସେଥିରୁ ଅଳ୍ପମାନ ଗ୍ରହଜଗତ ଭୋଗ କରନ୍ତି । ଜନ୍ମରେ ମୃତ୍ୟୁ, ବୃଦ୍ଧିରେ କ୍ଷୟ, ସାହସରେ ଭୟ, ସ୍ପୃହାରେ ଅଭାବ, ଚିନ୍ତାରେ ଚଞ୍ଚଳତା, ବିକାଶରେ ଆଦର୍ଶ, ସମସ୍ତେ ସଂଯମର ଇଙ୍ଗିତ ଦେଉଅଛନ୍ତି । ସୃଷ୍ଟିରେ ଆପେ ଆପେ ଯାହା ଘଟୁଅଛି ମାନବ ଇଚ୍ଛା କରି ତାହାର ଅନୁବର୍ତ୍ତନ କରେ । ସୃଷ୍ଟି ଯେପରି ଅନନ୍ତ ବିଚିତ୍ର ଓ ବିଷମ ମାନବାତ୍ମା ସେହିପରି । ଅନନ୍ତ ହିଁ ଯେପରି ସୃଷ୍ଟିର ସୀମା, ବିଚିତ୍ର ହିଁ ତାହାର ସେହିପରି ଚିରଶିଳ୍ପ ଓ ବିଷମ ଯେପରି ସମବିଭବ, ମାନବପ୍ରାଣର ଅନନ୍ତ ବିକାଶ ସେହିପରି ତାହାର ବ୍ୟକ୍ତିତ୍ୱର ମାନଦଣ୍ଡ—କର୍ମର ବିଶୃଙ୍ଖଳତା ପ୍ରାଣର ଶୃଙ୍ଖଳାମୟ ଓ ପ୍ରବୃତ୍ତିର ବିଷମତା ତା'ର ବିଶ୍ୱତୋମୁଖ ସାମ୍ୟଭାବର ସୂଚନା ।

ମାନବପ୍ରାଣର ଏହି ନିତ୍ୟ ବିଶାଳ ଭାବ ପ୍ରବୀଣତାରେ ଅବରୁଦ୍ଧ ହୁଏ । ସ୍ୱାର୍ଥସମ୍ବଳିତ ହିସାବ କିତାବରେ, ପୁରୁଷକାରର ଅତର୍କିତ

ବିବେଚନାରେ ପ୍ରାଣର ଏ ସ୍ୱତନ୍ତ୍ର ବିକାଶ ସଙ୍କୁଚିତ ହୁଏ । ଯୌବନର ଏ ବିଶ୍ୱବିକାଶ ଯେଉଁମାନେ ଅବାଞ୍ଛନୀୟ ହୋଇ ସଂକୁଚିତ କରନ୍ତି ସେମାନେ ସୃଷ୍ଟିତତ୍ତ୍ୱରେ ଯୌବନର ପଲ୍ଲବ ଓ ପ୍ରତିଷ୍ଠା ବୁଝନ୍ତି ନାହିଁ । ଯେଉଁ ଶାସ୍ତ୍ରର ବିଳାସ ଶାସନାରେ ପୁରୁଷ ସୃଷ୍ଟି ଉଦ୍‌ବୁଦ୍ଧ ହୁଏ, ସେଠାରେ ମଧ୍ୟ ପ୍ରାଣରେ ଏ ଅନନ୍ତ ଇଙ୍ଗିତ ଲକ୍ଷ୍ୟ କରିବାକୁ ହେବ । ଯୁବକ ସେତେବେଳେ ପ୍ରଥମେ ନିଜ ଭିତରୁ ବାହାରିଙ୍କ ମହା ଆଦର୍ଶରେ ଅନୁପ୍ରାଣିତ ହୋଇ ପର ପାଇଁ ପ୍ରାଣ ଉତ୍ସର୍ଗ କରିବାକୁ ବ୍ୟାକୁଳ ହୁଏ । ଏ ବ୍ୟାକୁଳତା ତ ହୃଦା ପ୍ରାଣରେ ଏୀଶ । ଏହା କାହାର ଶିକ୍ଷା ନୁହେଁ । ଯୁବକପ୍ରାଣରେ ଏ ଅନନ୍ତର ବିକାଶ ଯେ ବୁଝି ନାହିଁ—ଏ ବିଧାତ୍ର-ବାଣୀର ସଙ୍ଗୀତ ଯେ ଶୁଣି ନାହିଁ—ପ୍ରବେଶର ଏ ମହାଯ୍ତାନ ଦେବ ଯେ ଅନ୍ୱେଷଣ କରି ନାହିଁ, ସଂସାରରେ ସେ କିଛି ଦେଖି ନାହିଁ । ସଂସାର ମନୁଷ୍ୟର ସ୍ୱଭାବରେ ପୁରୁଷକାରର କଳନାରେ ଚଳୁନାହିଁ । ଅପୌରୁଷେୟ ନିତ ପ୍ରାଣରେ ଖୋଜିବାକୁ ହେବ । ତାହାର ଅନୁବର୍ତ୍ତିନୀରେ ଜୀବନ ସାର୍ଥକ ହୁଏ । ଯୁବକ ପ୍ରାଣରେ ସେହି ଅପୌରୁଷେୟ ବାଣୀ ଫୁଟିଉଠେ । ସେଥିରେ ଅଯଥା ବାଧା ଦେଇ ଯେଉଁମାନେ ଯୁବକକୁ ମନୁଷ୍ୟ କରିବେ ବୋଲି ଗୃହାନ୍ତି, ସେମାନେ ପୁରୁଷକାରରେ ଭ୍ରଷ୍ଟ ହୁଅନ୍ତି—ପାପ କରନ୍ତି ।

ତରଳ ଯୁବକପ୍ରାଣରେ ବିଶ୍ୱଶକ୍ତିର ଅବତାର ହୁଏ । କେବଳ ପ୍ରୀତି ଏହାର ଲକ୍ଷଣ ନୁହେଁ, ଯୁବକ ବାସ୍ତବିକ ପ୍ରାଣରୁ ଅନନ୍ତ ବୋଧ କରେ, ନିଶ୍ଚୟ ସମ୍ମୁଖରେ ଉନ୍ମୁକ୍ତ ଦେଖେ । ଅନନ୍ତ ସାଧନା ନିମନ୍ତେ ଅନନ୍ତ ଶକ୍ତି ଅନୁଭବ କରେ । ସମସ୍ତେ ଜାଣିଥିବେ, ଅତି କ୍ଷୁଦ୍ର କ୍ଷୁଦ୍ର କର୍ମରେ ମଧ୍ୟ ଯୁବକର ସଂକଳ୍ପ, ଅଳ୍ପକ ପାଇଁ ଯୁବକର ବିଶାଳ ଅପ୍ରୋତ୍ସର୍ଗର ସ୍ପୃହା—ଏପରି କି ପ୍ରତ୍ୟେକ ଅବରୋଧରେ ବିଶାଳ କରନ୍ତି ଦେଖିଲେ ବୋଧହୁଏ ଯୁବକହିଁ ଈଶ୍ୱରଙ୍କର ଦୂତ; ମୃତ୍ୟୁ ସେ ଦେଖି ନାହିଁ । ସିଦ୍ଧିର ପନ୍ଥାରେ ବାଧା ସେ କଳନା କରି ନାହିଁ, ପ୍ରାଣ ତାହାର

ଦାତବ୍ୟ—ପ୍ରୀତି ତାହାର ପ୍ରକୃତି—ବିଶ୍ୱ ତାହାର ପରିବାର—ଅନନ୍ତ ତାହାର ଉପାସ୍ୟ—ଘଟଣା ତାହାର କଲ୍ୟାଣ—ସାଧନା ତାହାର ସିଦ୍ଧି—ଇଚ୍ଛା ତାହାର ଆଶା ଓ ଆଶା ବିଶ୍ୱାସ। ଯେଉଁମାନେ ଜୀବନକୁ ଶୂନ୍ୟ ଅସାର ବୋଲି ଯୁବକକୁ ସଂଯମରେ ଦୀକ୍ଷିତ କରନ୍ତି, ପଦେ ପଦେ ମୃତ୍ୟୁର ଭୟ ଦେଖାଇ ଯୁବକକୁ ସଂଯମ ଶିଖାନ୍ତି, ସେମାନେ ଯୁବକ ଆତ୍ମାର ବିକାଶ କରନ୍ତି ନାହିଁ—ବିନାଶ କରନ୍ତି। ମୃତ୍ୟୁ ପ୍ରବୀଣର ଆଦର୍ଶ ହୋଇପାରେ। କାରଣ ସେ ଜୀବନର ପଶ୍ଚିମରେ ରହି ମୃତ୍ୟୁ ନିକଟରେ ଦେଖେ। କିନ୍ତୁ ଯୁବକ ଜୀବନର ପୂର୍ବରେ ଅଛି। ପୂର୍ଣ୍ଣତା ତାହାର କାମନା—ବିକାଶ ତା'ର ପ୍ରକୃତି।

ବାଧ୍ୟତା ବୋଲି ଗୋଟିଏ କଥା ଅଛି। ମାତ୍ର ଜଗତରେ ତାର ବହୁ ଅପବ୍ୟବହାର ହୁଏ। ମନୁଷ୍ୟର ଗୋଟିଏ ପ୍ରକୃତି, ସେ ଅତୀତ ଅନୁଭବ ଅନୁମାନରେ ଅବିକଳ ଠିକ କରି ପାରେ ନାହିଁ—ଏଥିପାଇଁକି ଘୋର ଶୀତ ଋତୁରେ ଗ୍ରୀଷ୍ମକାଳର ସ୍ନାନବିଳାସ କଳ୍ପନାରେ ସତ ବୋଲି ଜାଣିଲେ ଅନୁମାନରେ ଅନୁଭବ କରିବାକୁ ସେ କୁଣ୍ଠିତ ହୁଏ। ପ୍ରୌଢ଼ ପ୍ରବୀଣ ଦିନେ ଯୌବନର ବିଶାଳତା ଓ ଅନନ୍ତ ସ୍ଥିତିସ୍ଥାପକତା ଅନୁଭବ କରିଥିଲା ସନ୍ଦେହ ନାହିଁ; କିନ୍ତୁ ପ୍ରୌଢ଼ ତାର ଫଳ ଗଣନା ବେଳେ ସେ ଯୁବକପ୍ରାଣର ସେ ଅନନ୍ତ ପ୍ରସାର—ଅନ୍ତରାତ୍ମାର ଆଜି ଏ ଶୁଦ୍ଧ ବିକାଶ ମାନବ ଜୀବନର ସେ ବିଶ୍ୱପ୍ରାଣତା ଅନୁମାନ ସେ ବୁଝେ ନାହିଁ। କଥା କଥାକେ ଯୁବକଠାରୁ ପ୍ରବୀଣର ସତର୍କତା ପ୍ରୌଢ଼ର ଫଳ-ତୃଷ୍ଣା ଲୋଡ଼େ। ଅବଶ୍ୟ ଯୁବକ—ଆତ୍ମାର ଅନନ୍ତ ବିଳାସରେ ନିୟମ ଏକାବେଳେକେ ଅଗ୍ରାହ୍ୟ ନୁହେଁ। ମାତ୍ର ସେ ନିୟମର ପଦେ ପଦେ ଫଳତୃଷ୍ଣା ଓ ଲାଭଗଣନାର ଆଦର୍ଶ ରଖି ଯୁବକକୁ ବାଧ୍ୟ କରିବା ଉଚିତ ନୁହେଁ। କୌଣସି ନିୟମରେ ଅଶାନ୍ତି ଯୁବକର ଅନ୍ତରାତ୍ମାର ଅନନ୍ତ ବିକାଶ ପଥପ୍ରାଣରେ ସ୍ଥାନ ରଖିବାକୁ ହେବ। ଯୁବକର ବିଶାଳ ଆଶାରେ ସହାନୁଭୂତି କରିବାକୁ ହେବ ଏବଂ ଯୁବକପ୍ରାଣର ବିକାଶ

ପାଇଁ ପନ୍ଥା ଉନ୍ମୁକ୍ତ ରଖିବାକୁ ହେବ । ଯୁବକ ପ୍ରାଣର ବିଶ୍ୱ ଇଙ୍ଗିତ—ବିଧାତାଙ୍କର ଶୁଭ ଅବତାର, ଏକଥା ଜାଣି ଅତି ସନ୍ତର୍ପଣରେ ଯୁବକକୁ ଶାସନ କଲାବେଳେ ମଧ୍ୟ ପୂଜା କରିବାକୁ ହେବ ।

ଯେଉଁମାନେ ଆଜି ପିତା ବା ଶିକ୍ଷକ ଆସନରେ ବସି ଯୁବକକୁ ଶାସନ କରୁଅଛନ୍ତି, ସେମାନେ ଆଉ କିଛି ନ ବୁଝିଲେ ମଧ୍ୟ ଏତିକି ମାତ୍ର ମନେ ରଖିବା ଉଚିତ ଯେ, ସେମାନଙ୍କର ନିଜ ନିଜର ଆତ୍ମଶକ୍ତିର ସୀମା ଏକ ପ୍ରକାର ସ୍ଥିର ହୋଇଅଛି । ସେମାନଙ୍କର ନିଜର ବ୍ୟକ୍ତିତ୍ୱ ପରିଣତ ଓ ପ୍ରକାଶିତ ହୋଇଅଛି । ସେମାନେ ଏକ ପ୍ରକାର ଯାହା ହେବାର ହୋଇଅଛନ୍ତି । ଯେଉଁ ଯୁବକକୁ ସେ ଶାସନ କରୁଅଛନ୍ତି, କିଏ ଜାଣେ—ସେହି ଯୁବକ ଦିନେ ବୁଦ୍ଧ ଶଙ୍କର ଚୈତନ୍ୟ ପରି ନ ହୋଇ ପାରେ । ଅତଏବ ନିଜର ପ୍ରତିଷ୍ଠିତ ଆତ୍ମଶକ୍ତି ଓ ବ୍ୟକ୍ତିତ୍ୱର ମାନରେ ତରଳ ତରଙ୍ଗିତ ମହୋନ୍ମେଷପରାୟଣ ଯୁବକଠାରୁ ବାଧ୍ୟତା ଦାବି କରିବା ଏକପ୍ରକାର ପାପ । ବସ୍ତୁତଃ ଯୁବକଭିତରେ ଯେ ସୃଷ୍ଟି-ବିକାଶର ମୂଳତତ୍ତ୍ୱ ଦେଖି ନାହିଁ, ଅନନ୍ତ ଅଗ୍ରସରର ମହୋଲ୍ଲାସ ବୁଝି ନାହିଁ, ମାନବ ଜୀବନର ବିକାଶକ୍ରିୟା ତାହାର କର୍ମ ନୁହେଁ । ଶାସନ ଦଣ୍ଡରେ ବ୍ୟାକୁଳ ପ୍ରାଣର ତୀବ୍ରତା ଥଇପାରେ, ମାତ୍ର ଅହଙ୍କାରର ନୀରସତା ଶାସିତର ଜୀବନ ଶୁଷ୍କ କରେ । ନୀରସ ଆତ୍ମସର୍ବସ୍ୱ ଶାସକହିଁ ଏ ଜଗତରେ ପ୍ରକୃତ ସ୍ୱେଚ୍ଛାଚାରୀ । ବାଧ୍ୟତାରେ ସେ ଦାସତ୍ୱ ଗଢ଼େ; ମାତ୍ର ପ୍ରକୃତ ଶାସନ ପ୍ରାଣର ସ୍ୱାଧୀନ ଲୀଳାପ୍ରତି ବାଟ ଫିଟାଇ ସରସ ବ୍ୟାକୁଳ ପ୍ରାଣରେ ଗ୍ରନ୍ଥି ବସିଥାଏ ମାତ୍ର ।

ଜଗତ ଅତି ପ୍ରାଚୀନ ହେଲେହେଁ ସ୍ଥିର ନୁହେଁ । ଏହା ନିତ୍ୟ-ନୂତନ । ଏହାହିଁ ବିଧାତାଙ୍କର ବିଶ୍ୱଲୀଳା—ଏହାକୁହିଁ ସାଧାରଣ ଭାଷାରେ ଉନ୍ନତି କହନ୍ତି । କାଲି ଯାହା ଥିଲା ଆଜି ତାହାଠାରୁ ଭିନ୍ନ କିଛି ହେବ । ଏହା କେବଳ ବିଶ୍ୱାସର କଥା ନୁହେଁ । ଏହା ମାନବର ଦୈନନ୍ଦିନ ଅନୁଭବ । ଏହାହିଁ ଜଗତର ଏକମାତ୍ର ସିଦ୍ଧାନ୍ତ । ଏ

ନୂତନତା ଏ ଉନ୍ନତି ଆଣି ଦିଏ । ଏଥିରେ ନିନ୍ଦିବ କିଏ ? ପ୍ରୌଢ଼ ପ୍ରବୀଣ କ୍ରିୟାର ଫଳ ଗଣନା କଲାବେଳେ ଅହଙ୍କାରରେ ଏକପ୍ରକାର ବିଧାତାଙ୍କୁ ଭୁଲିଯାଏ । ସେ ଯାହା ଦେଖି ଆସିଛି, ସେତିକରେ ରହି ସେହି କ୍ଷୁଦ୍ର ଗଣ୍ଡି ମଧ୍ୟରେ ତାହାର ନିଜର ପୁରୁଷାକାର ମାନର ଫଳ ଭୋଗ କରିବାକୁ ବ୍ୟାକୁଳ । ନୂତନରେ ପ୍ରାଣ ଢାଳିବାକୁ ଅକଳ୍ପିତ ଅନାଗତରେ ପ୍ରଯତ୍ନ କରିବାକୁ ସାହସିକତା ବୋଲି ମଣେ । ସେଥିପାଇଁ ଜଗତରେ ନିତ୍ୟନୂତନତା ରଖିବା ପାଇଁ ସୃଷ୍ଟିର ଉନ୍ନତି ସମ୍ପାଦିବା ପାଇଁ ବିଧାତା ଯୁବକର ସୃଷ୍ଟି କରିଅଛନ୍ତି । ପ୍ରୌଢ଼ମାନେ ଯାହା କହନ୍ତୁ ପଛକେ, ଯୁବକ ନ ଥିଲେ ଉନ୍ନତି ନ ଥାନ୍ତା—ସ୍ୱାଧୀନତା ନ ଥାନ୍ତା—ସାମର୍ଥ୍ୟ ନ ଥାନ୍ତା, ସାହସ ନ ଥାନ୍ତା, ବିଶ୍ୱାସ ନ ଥାନ୍ତା । ଫଳତଃ ଯୁବକ ବିନା ଜଗତରେ ଈଶ୍ୱରଙ୍କର ସତ୍ତା ରହନ୍ତା କି ନାହିଁ ସନ୍ଦେହ । ଯୌବନହିଁ ବିଧାତାଙ୍କର ଲୀଳାଭୂମି । ଏହି ଯୌବନ ପ୍ରଭାବରେ ନିତ୍ୟନୂତନ ବିଶ୍ୱ ବିଧାତାଙ୍କର ଅନନ୍ତ ନିର୍ଦ୍ଦେଶରେ ଗଢି ଚାଲିଅଛି । ସାହିତ୍ୟ ବୋଲ, ରାଜନୀତି ବୋଲ, ଧର୍ମ ବୋଲ, ବିଜ୍ଞର-ବୋଲ ସର୍ବତ୍ର ଏହି ଯୁବକ-ଶକ୍ତି କାଳେ କାଳେ ସ୍ୱାଧୀନତା ଦେଇଅଛି । ନୂତନ ସ୍ୱର ଫୁଟାଇଅଛି; ବିଶ୍ୱସଂସାର ଅନନ୍ତ ଉନ୍ନତି ପ୍ରୟାସ କରି ଅଛି—ସାହସରେ ସେଥିପାଇଁ ପ୍ରଯତ୍ନ କରିଅଛି । ସେ କର୍ମରେ ଫଳର ଗଣନା କରି ନାହିଁ, ସାଧନାରେ ସିଦ୍ଧି ଦେଖିଅଛି । ଆଶାମାନଙ୍କରେ ବିଶ୍ୱାସ ଦେଖି ସାହସରେ ନିର୍ଭର କରି ଆତ୍ମାର ବିକାଶ ନିମନ୍ତେ ସାରା ଜଗତକୁ କର୍ମକ୍ଷେତ୍ର କରିଅଛି ।

ପ୍ରୌଢ଼ ପକ୍ଷରେ ଯୁବକ ଅବାଧ୍ୟ । କିନ୍ତୁ ଏହି ଅବାଧ୍ୟତା ତାହାର ପ୍ରକୃତ ଯୁବକତା । ମାନବର ଗଣନା ପାଖେ ବିଶ୍ୱକ୍ରିୟା ସର୍ବଦା ଅବାଧ୍ୟ । ପ୍ରତ୍ୟାଶିତ ଫଳ ମାନବ କଦାଚିତ୍ ପାଇଥାଏ । ଯୁବକର ପ୍ରାଣରେ ଶୁଦ୍ଧ ବିଶ୍ୱର ପ୍ରତିବିମ୍ବ; ତେଣୁ ଏହା ଅବାଧ୍ୟତା ମଧ୍ୟରେ ଯୁବପ୍ରାଣର ବିଶ୍ୱ ବିସ୍ତାର ଓ ଅନନ୍ତ ଆଶା ଦେଖି ପାରିଲେ ଅବାଧ୍ୟତା

ବାଧ୍ୟତା ହେବ । ଯୌବନ ବାସ୍ତବଙ୍କ ଶିଷ୍ୟ ନ ହୋଇ ଉପାସ୍ୟ ହେବ । ଯୁବକକୁ ଚଞ୍ଚଳ ଦେଖିଲେ ପ୍ରାଣରେ କୌତୂହଳ ଉଠିବ । ବାସ୍ତବଙ୍କ ଯୁବକ କୁମାର୍ଗଗାମୀ ହେବାର ଆଶଙ୍କା ହେଲେ ସହାନୁଭୂତି ବଳରେ ଶାସନ ସୁଗମ ହେବ । ଯୌବନର ଏହି ବିଶ୍ୱରୂପ ପ୍ରାଣରେ ଥରେ ଧାରଣା କରି ପାରିଲେ ସମସ୍ତ ଦର୍ଶନଶାସ୍ତ୍ର ମୁକ୍ତ ହେବ । ଈଶ୍ୱର ବ୍ୟାଖ୍ୟା ସୁଗମ ହେବ—ଧର୍ମ ଧାରଣା ଦୃଢ଼ ହେବ, ଇହ ସଂସାରରେ ଏହି ବିଶ୍ୱରୂପ ଦର୍ଶନହିଁ ମୁକ୍ତିର ଶ୍ରେଷ୍ଠ ନିଦର୍ଶନ, ମନୁଷ୍ୟତ୍ୱର ଏକମାତ୍ର ଆଦର୍ଶ ।

ଦ୍ରଷ୍ଟବ୍ୟ:—ଏ ପ୍ରବନ୍ଧରେ ଯୌବନ ଶବ୍ଦକୁ ଲକ୍ଷ୍ୟ କରି ଅନେକ ସ୍ଥଳରେ ଯୁବକ ଶବ୍ଦର ବ୍ୟବହାର କରାଯାଇ ଅଛି । ସେ ପଦ ସ୍ଥଳରେ ଯୁବକ ଓ ଯୁବତୀ ଦୁଇ କଥା ବୁଝିବାକୁ ହେବ ।

( ୧୯ )

# ଭାଷା ଓ ଜାତୀୟତା

ଉତ୍କଳମଣି ଗୋପବନ୍ଧୁ ଦାଶ

ଆଜି ସମସ୍ତେ ଭାରତୀୟ ଜାତୀୟତା ନିମନ୍ତେ ବ୍ୟାକୁଳ । ସମ୍ବାଦ ପତ୍ରରେ ଆଲୋଚନା ହେଉଛି, ସଭା ସମିତିରେ ବକ୍ତୃତା ହେଉଛି, କାବ୍ୟ ନାଟକ ଉପନ୍ୟାସାଦିରେ ରୂପକ ଛଳରେ ସୂଚନା ଦିଆଯାଉଛି—କିପରି ଭାରତ ଜାତୀୟତା ପ୍ରତିଷ୍ଠିତ ହେବ । ଅନେକ ଭାରତ ଜାତୀୟତା ଏକାବେଳକେ ଅସମ୍ଭବ ବୋଲି ହତାଶ । କେହି କେହି କେବଳ ଅତୀତ ଆଡ଼କୁ ଚାହିଁଛନ୍ତି—ପ୍ରେରଣା ପାଇବା ଲାଗି ଅନ୍ୟ କେତେକଙ୍କର କେବଳ ଭବିଷ୍ୟତ ଉପରେ ଆଶା । କେହି ନିଜ ଭିତରକୁ ଚାହିଁ ପ୍ରାଚୀନ ସଭ୍ୟତାକୁ ମନ୍ଥୁଛନ୍ତି । କେହି ପୁଣି ପର ମୁହଁକୁ ଚାହିଁଛନ୍ତି ଏବଂ କେବଳ ପଶ୍ଚିମ ଉପରେ ଭରସା ରଖିଛନ୍ତି । ପ୍ରକୃତରେ ଏ ଜାତୀୟ ସମସ୍ୟା ଭାରତ ପକ୍ଷେ ବଡ଼ ଗୁରୁତର । କେତେ ପ୍ରଦେଶ—ପ୍ରତି ପ୍ରଦେଶରେ ପୁଣି କେତେ ବ୍ୟବହାରଗତ ପାର୍ଥକ୍ୟ । ତହିଁରେ ପୁଣି ଅସଂଖ୍ୟ ପ୍ରକାର ଶ୍ରେଣୀ ସ୍ୱାର୍ଥର ବିବାଦ । ଏପରି ସ୍ଥଳେ କୁମାରିକାର ହିମାଳୟ ସହିତ କିଛି ସମ୍ପର୍କ ଅଛି ବୋଲି ଭାବିବାକୁ ବେଳେ ବେଳେ ସାହସ ପାଏ ନାହିଁ । ପୂର୍ବେ ଭାରତର ପ୍ରତ୍ୟେକ ପ୍ରଦେଶର ଅନେକ ବିଷୟରେ ସ୍ୱାତନ୍ତ୍ର୍ୟ ଥିଲା, ଯାତାୟାତର ତେତେ ସୁବିଧା ନଥିଲା; ଗୋଟିଏ ଗୋଟିଏ ପ୍ରଦେଶ ବଣ, ଜଙ୍ଗଲ, ନଦୀ ଆଦି ସ୍ୱାଭାବିକ ସୀମା-ଦ୍ୱାରା ଅବଦ୍ଧ ଥିଲା; ତେଣୁ କାଳକ୍ରମେ ସେ ପ୍ରତ୍ୟେକ ପ୍ରଦେଶର

ଇତିହାସ, ସାହିତ୍ୟ, ଭାଷା, ଲୋକବ୍ୟବହାର ଆଦି ସ୍ୱତନ୍ତ୍ର ହେବା ସ୍ୱାଭାବିକ । କିନ୍ତୁ ବିଶେଷତ୍ୱ ଏହି ଯେ ମୂଳ ଆର୍ଯ୍ୟସଭ୍ୟତା ମେରୁଦଣ୍ଡ ରୂପେ ରହିଥିଲା । ଆର୍ଯ୍ୟ ଋଷିମାନେ ବୁଝିଥିଲେ ଭାବ ଏବଂ ତେଣୁ ଭାଷାର ଏକତା ମାନବପ୍ରାଣର ମିଳନ ପକ୍ଷେ ଏକମାତ୍ର ପନ୍ଥା । ମାନବ ଆକୃତି ପ୍ରକୃତିରେ ଭିନ୍ନ ହୋଇ ପାରେ; ଭିନ୍ନ ଜଳବାୟୁରେ ବଢ଼ି ପାରେ । ତେବେ ତାର ଅନ୍ୟ ମାନବ ସହିତ ମିଳନ କେଉଁଠାରେ ? ଭାବରେ, ଚିନ୍ତାରେ, ମୂଳତଃ ସଭ୍ୟତାରେ ଭାରତରେ ଆର୍ଯ୍ୟ ଉପନିବେଶ ବଢ଼ିଲା । କ୍ରମେ ଶୂରସେନ ବା ମହାରାଷ୍ଟ୍ରର ଆର୍ଯ୍ୟ ସହିତ ମଗଧ ଆର୍ଯ୍ୟର ପାର୍ଥକ୍ୟ ଜନ୍ମିଲା । ପ୍ରାଦେଶିକ ସ୍ୱାତନ୍ତ୍ର୍ୟ ବଢ଼ିଲା । ମାତ୍ର ସଂସ୍କୃତ ଭାଷା ଓ ବୈଦିକ ଭାବ ଏ ବହୁଳ ସ୍ୱାତନ୍ତ୍ର୍ୟ ମଧ୍ୟରେ ସୁନ୍ଦର ସୁଦୃଢ଼ ଏକତା ରକ୍ଷିଥିଲା ଏବଂ ଆଜଯାଏ ରକ୍ଷିଅଛି । ଦ୍ରାବିଡ଼ ସଙ୍ଗେ ଆର୍ଯ୍ୟର ସଂଘର୍ଷ ହେଲା । ସେ କ୍ରମେ ଆର୍ଯ୍ୟଭାଷା, ଆର୍ଯ୍ୟଭାବ ଏବଂ ଆର୍ଯ୍ୟସଭ୍ୟତା ଗ୍ରହଣ କଲେ । ପରିଣାମରେ ଦ୍ରାବିଡ଼ ଆର୍ଯ୍ୟ ସଙ୍ଗେ ଏକାବେଳକେ ମିଶିଗଲେ ।

ଆଜି ଭାରତର ପ୍ରାଦେଶିକ ସ୍ୱାତନ୍ତ୍ର୍ୟ କ୍ରମେ ନଷ୍ଟ ହୋଇ ଯାଉଅଛି । ନଷ୍ଟ ହୋଇ କି ଭାରତର ମହାଜାତୀୟ ଏକତା ଆଡ଼କୁ ଯାଉଛି ? ନା । ବରଂ ପ୍ରତ୍ୟେକ ପ୍ରଦେଶରେ ଶତ ନୂତନ ସ୍ୱାର୍ଥ ଓ ସ୍ୱାତନ୍ତ୍ର୍ୟର ସୃଷ୍ଟି ହେଉଅଛି । ଯାତାୟାତର ସୁବିଧା ହୋଇଅଛି । ପ୍ରଦେଶମାନଙ୍କର ପରସ୍ପର ସହିତ ସମ୍ପର୍କ ବଢ଼ୁଅଛି । ଏକ ପ୍ରଦେଶରେ କେବଳ ଏକ ଜାତୀୟ ଲୋକ ଆଉ ଏବେ ନାହାନ୍ତି । ନାନା ବର୍ଣ୍ଣ, ଧର୍ମ ସମାଜର ଲୋକେ ଏକ ସ୍ଥାନରେ ଅଧିବାସ କରୁଛନ୍ତି । ସେମାନେ ନିଜ ନିଜର ଭାଷା, ଭାବ, ବ୍ୟବହାର, ରୀତି, ନୀତି, ସମାଜ, ସାହିତ୍ୟ, ଇତିହାସ ସବୁକୁ ସଙ୍ଗେ ନେଇ ଆସୁଅଛନ୍ତି । ତାହା ସବୁ ଛାଡ଼ିବାକୁ ଆଦୌ ପ୍ରସ୍ତୁତ ନୁହନ୍ତି । ଭାଗ୍ୟୋଦୟଲକ୍ଷେ ବା ଘଟଣାସୂତ୍ରେ ଯେଉଁ ସ୍ଥାନ ବା ପ୍ରଦେଶରେ ଆସି ବାସକଲେ ସେଠାର ସଭ୍ୟତା, ସାହିତ୍ୟ, ଭାଷା ଆଦିକୁ ନିଜର ବୋଲି ଗ୍ରହଣ କରିବାକୁ କୁଣ୍ଠିତ । ତେବେ ଆଉ ପ୍ରାଦେଶିକ ଏକତା ସମ୍ଭବ

କିପରି ? ଭାରତ ଜାତୀୟତା ତ ଦୂରର କଥା । ଯେଉଁ ଭାଷା, ଭାବ ଓ ସଭ୍ୟତାର ଏକତାରେ ପ୍ରାଦେଶିକ ସ୍ୱାତନ୍ତ୍ର୍ୟ ମଧ୍ୟରେ ଭାରତୀୟ ସଭ୍ୟତା ଅଦ୍ୟାପି ଜୀବିତ ରହିଅଛି, ଉକ୍ତ ଦେଶରେ ପ୍ରାଦେଶିକ ସଭ୍ୟତାର ବ୍ୟକ୍ତିତ୍ୱ ରକ୍ଷା ନିମନ୍ତେ ସେହି ପନ୍ଥା ଅବଲମ୍ବନ କରିବାକୁ ହେବ । ଟିକିଏ ତଳେଇ ଦେଖିଲେ ଦେଖାଯିବ, ଭାବ ଓ ସଭ୍ୟତାର ମୂଳରେ ଭାଷା । ଭାଷାର ଏକତା ଥିଲେ ଭାବର ଏକତା ସୁନିଶ୍ଚିତ । ସୁତରାଂ ସଭ୍ୟତା ଏକ ନ ହୋଇ ଅନ୍ୟଥା ହୋଇ ନ ପାରେ । ପୃଥିବୀର ଆଧୁନିକ ସମସ୍ତ ସଭ୍ୟଦେଶ ଏହି ନୀତି ଗ୍ରହଣ କରିଅଛନ୍ତି । ଆମେରିକାର ଯୁକ୍ତ ପ୍ରଦେଶରେ ନାନା ଜାତିର ଲୋକେ ବାସ କରନ୍ତି । ଇଂରେଜ, ଜର୍ମାନ, ପର୍ତ୍ତୁଗିଜ ସବୁ ଜାତିର ଲୋକେ ଅଛନ୍ତି । ପ୍ରତ୍ୟେକ ପ୍ରଦେଶର ଆଇନ କାନୁନ ବିଧି ବ୍ୟବସ୍ଥା ପୃଥକ୍ । କିନ୍ତୁ ସେ ସମସ୍ତେ ଇଂରାଜୀ ଭାଷାକୁ ରାଷ୍ଟ୍ରର ଭାଷା ରୂପେ ଗ୍ରହଣ କରିଅଛନ୍ତି । ଇଂରାଜୀ ଭାଷା ସ୍ୱୀକାର ନ କରିବା ଯାଏ କାହାରିକୁ ଯୁକ୍ତରାଜ୍ୟ ପ୍ରଜାର ଅଧିକାର ଦିଆଯାଏ ନାହିଁ । ସମସ୍ତ ରାଜ୍ୟରେ ଏକ ଭାଷା ପ୍ରଚଳିତ ହେବାରୁ ପ୍ରାଦେଶିକ ନାନା ପାର୍ଥକ୍ୟ ଥିଲେ ସୁଦ୍ଧା ସମଗ୍ର ରାଜ୍ୟରେ ଗୋଟିଏ ଜାତୀୟ ଭାବ ନିରନ୍ତର ଜାଗ୍ରତ ରହିଅଛି । ଅଧିକାନ୍ତ ଭାରତର ଏକ ଏକ ପ୍ରଦେଶରେ ନାନାବିଧ ଲୋକ ଅଛନ୍ତି । କେତେ ଆଉ ନୂତନ ସମ୍ପ୍ରଦାୟ ଓ ସମାଜର ଲୋକ ମିଶୁଛନ୍ତି । କୌଣସି ସ୍ଥାନରେ ପୂର୍ବର ଅବିମିଶ୍ରତା ନାହିଁ । ଏହି ନାନାବିଧ ଲୋକଙ୍କ ମଧ୍ୟରେ ଏକତା ରକ୍ଷା କରିବାକୁ ହେଲେ ସେ ସମସ୍ତଙ୍କର ସେହି ଦେଶ ଭାଷା ଗ୍ରହଣ କରିବା ଉଚିତ । ତାହାହେଲେ ସେମାନଙ୍କର ଭାବ ଓ ଚିନ୍ତାରେ ସାମଞ୍ଜସ୍ୟ ଆସିବ । ସେ ପ୍ରଦେଶର ସ୍ମୃତି, ସାହିତ୍ୟ, ଇତିହାସ ଆଦିକୁ ସେମାନେ ନିଜର କରିନେବେ ଏବଂ ସେ ପ୍ରଦେଶ ଓ ତାହାର ଅତୀତ ଓ ଭବିଷ୍ୟତରେ ସେ ସମସ୍ତଙ୍କର ଆସ୍ଥା ଓ ମମତା ଜନ୍ମିବ । ଯେତେଦୂର ସମ୍ଭବ, ଏକ ଭାଷା ପ୍ରଚଳିତ ସ୍ଥାନମାନ ଏକ ଶାସନାଧୀନରେ ନ ଆସିଲେ ଏ ଉଦ୍ଦେଶ୍ୟ ସିଦ୍ଧ ହୋଇ ପାରିବ ନାହିଁ ।

( ୨୦ )

# ଘରଣୀ

ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ

୧ । ଘରଣୀ କେତେ ପ୍ରକାର ? ଏ ବିଷୟରେ କେତେ ଉପମା, କେତେ ତୁଳନା, କେତେ ଚଳନା, କେତେ କଳନା ଅଛି; ସବୁ-ଲେଖିଲେ ଗୋଟାଏ ବାରିସ୍ତମ୍ଭ ହେବାର ଭୟ; ତେବେ ଠିକେ ଠିକେ କେତେଟା କଥାରେ କଲମ ବନ୍ଦ କଲି । ଆପଣମାନେ ସ୍ୱତହାଣ୍ଡିରୁ ଗୋଟିଏ ଟିପି ଲୁଣର ଛଟା ଠଉରାଇ ନେବେ ।

(କ) ପ୍ରଥମ ଶ୍ରେଣୀର—ଦିନମାନ ପାଟିରେ ବିରାମ ନାହିଁ, ଶୀଘ୍ର ଲାଗିଛନ୍ତି ଗୃହକାର୍ଯ୍ୟରେ, ନିଜର ଦେହକୁ ଦୃଷ୍ଟି ନାହିଁ, କିପରି ସ୍ୱାମୀ, ପୁତ୍ର କନ୍ୟା ଭୃତ୍ୟ ଭୃତ୍ୟାଦି ଭୋଜନ କରିବେ ଓ ସୁସ୍ଥ ରହିବେ, ଏହି ଚିନ୍ତାରେ ସର୍ବଦା ବ୍ୟସ୍ତ । ଏମାନଙ୍କୁ ପାଠ ଡାକୁଛି 'ଘରଣୀ ଚେତାଳ'; ଏମାନେ ପୃଥିବୀକୁ ଦୁଇଭାଗରେ ବିଭକ୍ତ କରିଥାନ୍ତି, ଏକ—ଆପଣା ଗୃହର ସୀମା, ଯହିଁକୁ କି ଆମ୍ଭେମାନେ ଅନ୍ତର୍ଗତ ବୋଲି ନାମକରଣ କରିଛୁଁ । ଦୁଇ—ଗୃହର ସୀମାର ବାହାରେ—ବହିର୍ଗତ । ଏମାନେ ଅନ୍ତର୍ଗତକୁ ବହିର୍ଗତର ଆକ୍ରମଣରୁ ରକ୍ଷା କରିବାରେ ସର୍ବଦା ବ୍ୟସ୍ତ ଏମାନେ ଗୃହର ବଣ୍ଡୀ; କେଉଁଠି କାର୍ଯ୍ୟ ଅସମ୍ପୂର୍ଣ୍ଣ ରହିଲା, କେଉଁଠି ଅଭାବ ଅପୂର୍ଣ୍ଣ ରହିଲା, କେଉଁ ବସ୍ତୁ ଅପରିଷ୍କୃତ ହେଲା, କେଉଁ ଯୋଗାଡ଼ପାଣିଦାଣ୍ଡି ଅପୂର୍ଣ୍ଣ ରହିଲା, କେଉଁ କାମ ଅଧା ରହିଲା, ଏହି ଭାବନା ସେମାନଙ୍କ ଜାଗରଣ ଓ ସ୍ୱପ୍ନରେ ଲାଗିଥାଏ । ବହିର୍ଗତର ଦାଉରୁ ଅନ୍ତର୍ଗତକୁ ରକ୍ଷା

ହରିବାକୁ ହେଲେ ପ୍ରଥମେ ଅନ୍ତର୍ଜଗତ୍ ସୁଶାସିତ ହେବା ଅବଶ୍ୟକ । ଅନ୍ତର୍ଜଗତ୍ ସୁଶାସିତ ହେଲେ ସମସ୍ତେ ଏକ ପ୍ରଭୁଙ୍କ ଅଧୀନ ହୋଇ ରହିବା ଏକାନ୍ତ ଅବଶ୍ୟକ । ଏଠାରେ ଯଥେଚ୍ଛାଚାରର ରାଜତ୍ୱ ଅମୋଘ । ଉଦାହରଣ ସ୍ୱରୂପ, ଗୃହିଣୀଙ୍କର ହସ୍ତର ମୁଷ୍ଟି, ଚଟ୍ଟି, ଚପେଟ ଓ ବର୍ଦ୍ଧନୀ ସଙ୍ଗେ ଗୃହର ପୁତ୍ର କନ୍ୟାମାନଙ୍କର ଗୋଟାଏ ଅନବଚ୍ଛିନ୍ନ ସମ୍ପର୍କ ଦିନ ମାନରୁ ଏକୋଇଶି ଘଣ୍ଟା ଲାଗିଛି । ତେବେ ବହିର୍ଜଗତର ଲୁଣା ଟିକିଏ ପବନରେ ହୋଇଥିଲେ ସେ ପିଲାଙ୍କ ସୁକୁମାର ଅବୟବରେ ଲାଗିଗଲେ ଲୁଣା ତ ସହଜେ କର୍ଷିବ, କିନ୍ତୁ ଜୀବଜଗତର ପ୍ରଧାନତମ ମନୁଷ୍ୟ ସୁଦ୍ଧା ଲୁକ୍ତଭୁକ୍ତରେ ଧର୍ଷିତ ହୋଇଯିବେ । ପୂର୍ବରେ ଲେଖା ଅଛି—ସ୍ୱାମୀ ଭୃତ୍ୟ ଓ ସନ୍ତାନ ସନ୍ତତି ଉପର ଭୋଜନ କରିବେ ଓ ସୁସ୍ଥ ରହିବେ, ଏ ଶ୍ରେଣୀର ଗୃହିଣୀମାନେ ସର୍ବଦା ସେହି ଚିନ୍ତାରେ ବ୍ୟସ୍ତ; କିନ୍ତୁ ଦୈବଦୁର୍ବିପାକ ଉପରେ ମନୁଷ୍ୟର କୃଷ ନାହିଁ । ଉକ୍ତ ଗୃହର ସ୍ୱାମୀ ଓ ଭୃତ୍ୟ ଅଧିକାଂଶ ସମୟ ଉପବାସ ଓ ଅସୁସ୍ଥତାରେ କଟାନ୍ତି । ଗୃହର ସମସ୍ତେ ଏ ଅଧିଷ୍ଠାତ୍ରୀ ଦେବୀଙ୍କର କିଙ୍କର । ଏମାନେ ନକ୍ଷେତ୍ରବନ୍ଧା; ପ୍ରକୃତର ବିକୃତ ବୈପରୀତ୍ୟ ବା ବହିର୍ଜଗତର କୌଣସି ବିଘ୍ନ ପ୍ରତି ଏମାନେ ବଧିର । ଉଦାହରଣ ଦେଖିବେ,—ସ୍ୱାମୀ ଭଲ ଖାଇବେ ବୋଲି ଘରେ ନବ ପରିବାରରେ ପିଠାପଣା ହେବା ଦରକାର; ମନେ କରନ୍ତୁ, ସ୍ୱାମୀଙ୍କ ଗ୍ରହବୈଗୁଣ୍ୟରୁ ସ୍ୱାମୀ ନିର୍ଦ୍ଦିଷ୍ଟ ପରିଚ୍ଛଦ ବସ୍ତ୍ରାଦି ଉପକରଣମାନ ଆଣି ହାଜର କରାଇ ନ ପାରିଲେ ଓ ସଙ୍ଗେ ସଙ୍ଗେ ଖୋଷଣିଫିଟା ପିଣ୍ଡାଶନର ଆଶାରେ ଜଳାଞ୍ଜଳି ଦେଇ ଘରକୁ ଫେରିଲେ । ତୁମେ ଆଣିଲେ ଖାଆନ୍ତି, ନ ଆଣିଲେ ନ ଖାଇବ, ଏ ହେଲା ସାଧାରଣ ନିୟମ । କିନ୍ତୁ ଏକଥା କହିଲେ ଛାଡ଼ୁଛି କିଏ ? ତୁମେ କାହିଁକି ନ ଖାଇବ ? ନାହିଁ ? ତୁମ୍ଭଙ୍କୁ ଅଲବତ୍ ଖାଇବାକୁ ହେବ, ଅତଏବ ଜିନିଷ ପଦାର୍ଥଗୁଡ଼ିକ ଆଣିବାକୁ ହେବ । ତୁମେ ଖାଆନ୍ତ, ଆମେ ଦେଖି ଖୁସି ହୁଅନ୍ତେଇଁ, ଏଥି ମଧ୍ୟରେ ଆଉ ଏଡ଼େ କି ନିଃସ୍ୱାର୍ଥ ଲାଭ, ତାହା ମୁଦ୍ଧା ତୁମ ଆଖିରେ ପାଉ ନାହଁ ? ତୁମ ହାତରେ ଧାନ ଗୁଡ଼ିଲ, ଟଙ୍କାଟୋଙ୍କର ଓ ବହିର୍ଜଗତର ସମସ୍ତ

ଅଧିକାର ରହିବ ବୋଲି ତୁମେ ସ୍ଥିର ତୁମ ମନକୁ ସ୍ପଷ୍ଟ କାର୍ଯ୍ୟ କର; ଆମ ହାତରେ ମଧ୍ୟ ଦଦବ୍ରହ୍ମାଣ୍ଡି, ଝଣ୍ଡିଆ ଛଅ ଗୁଣି ଓ ସା ରେ ଗା ମା ପ ଧା ନୀ ସ୍ୱର ଅଛି, ଆମ ପାଦରେ ଓ ହାତରେ ଯାହା ହେବାର, ତାହା ବି ଘଟୁଏ ପରଖି ନିଅ । ତୁମର ଖୋଡ଼ ହେଲେ ତୁମେ ସହି ନିବ, ଯାଅ; କିନ୍ତୁ ସେ କଥା ଆମ ଦଦ୍ଦରେ ପିବ ନାହିଁ ।

୨ । ପଦ୍ମାବତୀ—ତ୍ରୀ ଲାବଣ୍ୟରେ ଜଗତ ଏମାନଙ୍କ ପଦତଳେ ବିକା, ରୂପ ସଙ୍ଗେ ଗୁଣ, ସ୍ୱର, ବନସ୍ତୁ, ଛଟକ, ଠାଣି, ସମସ୍ତ ଏମାନଙ୍କ ନିକଟରେ ଏକାଧାରରେ ଦେଖିଲେ କାପଟ ଅରସିକ ମଧ୍ୟ ଦଣ୍ଡେ ପ୍ରଶଂସା ନ କରି ରହିପାରିବ ନାହିଁ । ଏମାନଙ୍କ ପ୍ରସାଦରୁ ମୂକ ବାଗ୍ମୀ ହୁଏ, ପଙ୍ଗୁ ଗିରି ଲଙ୍ଘନ କରେ, ସାଧାରଣ ମନୁଷ୍ୟ ପାଣ୍ଡିତ୍ୟ ଦର୍ପ, ଦରପାଠୁଆ ଧୁରନ୍ଧର ଶାସ୍ତ୍ରୀ ଲେଖେ । କୋବି (ଦ) କବି ବନେ; ଏମାନେ ନିଜର ରୂପ ପସରା ଛାଡ଼ି, ସିନ୍ଦୂରପରୁଆ, କଜଳପାତି ଛାଡ଼ି ସଂସାରକାର୍ଯ୍ୟରେ ମନ ଦେବାକୁ ସମୟ ପାଆନ୍ତି ନାହିଁ । 'ପାଳିଙ୍କି ଉପରେ ପାଠଛଡ଼ା ପ୍ରବଚନର ସାରବତ୍ତା ଏହିମାନଙ୍କ ନିକଟରେ । ଏମାନଙ୍କଠାରେ ଈଶ୍ୱର ପ୍ରସଙ୍ଗ, ସମାଜ ପ୍ରସଙ୍ଗ, ସ୍ୱାମୀ ପ୍ରସଙ୍ଗ, ବୃଦ୍ଧ ପ୍ରସଙ୍ଗ, ଯୁବକ ପ୍ରସଙ୍ଗ । ଏମାନେ ନିଜକୁ ଭାରି ଛପଟଗୁଣ ଦେଖାଆନ୍ତି. ସ୍ୱାମୀ ଏମାନଙ୍କ ପଦତଳେ ବିକେ । ଏମାନଙ୍କୁ ପାଇବା ବଡ଼ ଭାଗ୍ୟ । ଘର ଚଳିଲେ ନ ଚଳିଲେ ଏମାନଙ୍କର ବିଶେଷ ଖୋଡ଼ ବୃଦ୍ଧି ନ ଥାଏ । ଈଶ୍ୱର ଏହିଠାରେ ମଧ୍ୟ ରସିକତା ପର୍ଣ୍ଣମାତ୍ରାରେ ଛାଡ଼ି ଦେଇଥାନ୍ତି । ଜଗତ ଏମାନଙ୍କ ଗୁଣକୁ କେବଳ ଦେଖୁଥାଏ । ଦୋଷ ଦେଖିବାକୁ ପାଏ ନାହିଁ । ଏମାନଙ୍କୁ 'ସୁନାଖଣ୍ଡିକା' କହିଲେ ଚଳେ । ଏମାନେ ସଂସାରର କଠୋର ବ୍ୟବହାର କମନ୍ତ୍ରେ ଅଭିପ୍ରେତ ନୁହନ୍ତି । ଏମାନେ କବିମାନଙ୍କ ପାଇଁ ସୃଷ୍ଟ । ଏମାନେ ନ ଥିଲେ କବିଜଗତରେ ଘୋର ଦୁର୍ଭିକ୍ଷ ଉପସ୍ଥିତ ହୁଅନ୍ତା । ଯେ ଏମାନଙ୍କର ଦୋଷ ଦେଖିବାକୁ ଆସେ, ସେ ମଧ୍ୟ ରୂପ ଦେଖି ଘଡ଼ିଏ ମୁଣ୍ଡରେ ହାତ ଦେଇ ବସିଯାଏ ।

ଏମାନେ 'ପିକ୍ନିକ୍ରେ ଦିନ କାଳ କଟାନ୍ତି । ସବୁଠାରେ ଶତ୍ରୁ ଅଛନ୍ତି । ଏମାନଙ୍କ ଶତ୍ରୁ ନିଷ୍ଠୁର କାଳ । ଯେ ହେଉ, ଏମାନେ ସମାଜର ସମ୍ପତ୍ତି । ସର୍ବଦା ଆପଣା ବେଶଭୂଷା, ଭଙ୍ଗୀ ଇତ୍ୟାଦିକୁ ସୁପରିଷ୍କୃତ କରିବାରେ ଏମାନେ ବ୍ୟସ୍ତ । ଏପରି ସ୍ତ୍ରୀ ଭାଗ୍ୟକୁ ମିଳେ । କବି କହୁଛନ୍ତି, 'ଯସ୍ୟାସି ଚିତ୍ତେ ନିମଗ୍ନ' ।

ମା ବାଇ ମହାନ୍ତିଙ୍କର ଗ୍ରାମର ଏକାଦଶିଆ ବର୍ଣ୍ଣୀଷ୍ଟ କରୁଥିବା 'ମୋ ସ୍ତ୍ରୀ ଏକା ସତୀ' । କଥାଟା କିନ୍ତୁ ସମସ୍ତଙ୍କ ମନକୁ ମାନିଥିଲା । କାରଣ, ଟାଆଁର ପିଲାଟିଏ ପର୍ଯ୍ୟନ୍ତ ତାର ସତୀତ୍ୱ ଉପରେ ସନ୍ଦେହ କରୁ ନ ଥିଲେ । ତାହାର ସ୍ତ୍ରୀ ଅତି କୁରୂପା । ସତକୁ ସତ ଏକାଦଶୀ ବାଲକ ସେ ସ୍ତ୍ରୀକୁ ପାଇ ଜୀବନଟା ସୁଖରେ କଟାଇ ଦେଲା । ତା ରୂପର କେହି ପ୍ରଶଂସା କରିବାକୁ ନାହିଁ, ତାକୁ କେହି ଅଳ୍ପ ଅଖିରେ ଗୃହିଁ ସ୍ୱାମୀ ସମସ୍ୟ ନଷ୍ଟ କରିବାକୁ ଇଚ୍ଛା କରିବ ନାହିଁ । ସେ ବରଂ ଘରର ସଂସାର ଶତ୍ରୁ । ବାହାରେ କେଉଁଠାରେ ପ୍ରଶଂସା ପାଇବ ନାହିଁ ବୋଲି ଘରକାର୍ଯ୍ୟରେ ଦକ୍ଷତା ଲଗିଥାଏ । ଯାହାର 'କେପାର ସଉଦା' କିଛି ନାହିଁ, ସେ ପସରା ନେଇ ବାହାରକୁ ବାହାରିବ କାହିଁକି ? ସ୍ୱାମୀ ପ୍ରଥମେ ପ୍ରଥମେ ଆପଣାକୁ ଅଭାଗା ବୋଲି ମନେ କରି ଆପଣା କର୍ମକୁ ଅଦରି ରହେ, କିନ୍ତୁ ଏ ଅକ୍ଷେପ ଅଳ୍ପ କ୍ଷଣସ୍ଥାୟୀ । ସେ ସ୍ୱାମୀର ନିଜସ୍ୱ, ଅନ୍ୟର ତାହାଠାରେ ଅଧିକାର ନାହିଁ, କି ଲୋଭ ନାହିଁ । ଏ ଜାତୀୟା ସ୍ତ୍ରୀଠାରେ ସଦ୍‌ଗୁଣର ପାଳା ଢେର ବେଶି । ଯାହାକୁ ସାଧାରଣ ପ୍ରଶଂସା କରିବେ ନାହିଁ, ଏ କଥା ନିଶ୍ଚିତ, ଦଶାକେତେ ପରେ ସେ ମଧ୍ୟ ସାଧାରଣଙ୍କ ପ୍ରଶଂସାକୁ ଗୃହିଁବ କିଆଁ ? ସେ ଜାଣେ ଯେ, ଦକ୍ଷତା ପରିଶ୍ରମର ପ୍ରମାଣ, ସଦ୍-ଗୁଣର ପରିଚୟ ଓ ଯୋଗ୍ୟତାର ନିଦର୍ଶନ ନ ଦେଲେ ଚଳିବ ନାହିଁ, ମୁଁ ଥିବାରେ ମତେ ପାଇ ଯେଉଁ ଆପଣାକୁ ଅଭାଗା ବୋଲି ମନେ କରୁଛି, ତାକୁ ଯେବେ ମୁଁ ଭାଗ୍ୟବାନ୍ ବୋଲି ମନେ କରାଇ ପାରିବି, ତେବେ ମୋ ବ୍ରତ, ସମ୍ପୂର୍ଣ୍ଣ, ମୋ ଜୀବନ ସାର୍ଥକ । ଫଳତଃ ମଧ୍ୟ ସେହିପରି ହୁଏ । ରୂପର 'ହାଟପାଳି' ଟପିଗଲେ ଏ ଶ୍ରେଣୀର ସ୍ତ୍ରୀଙ୍କ ସ୍ୱାମୀମାନେ

ବାସ୍ତବିକ ସର୍ବାପେକ୍ଷା ସୁଖୀ ବୋଲି ଆପଣାକୁ ମନେ କରନ୍ତି ଓ ତାଙ୍କ ବାହ୍ମୁଡ଼ା ଦଦରା ପଦ୍ମାବତୀମାନଙ୍କୁ ଦେଖି ମୁରୁକିହସା ମାରନ୍ତି ।

୪ । ପୂର୍ବରୁ ଯେ ଶାସ୍ତ୍ରକାରମାନେ ନାରୀଜାତିଙ୍କୁ ହସ୍ତିନୀ, ପଦ୍ମିନୀ, ଚିତ୍ରିଣୀ, ଶଙ୍ଖିନୀ ବୋଲି ବିଭକ୍ତ କରି ଯାଇଛନ୍ତି, ଏ ସମ୍ବାଦସୂଚକ ପତ୍ରରେ ସେ ଜାତିବିଭାଗ ମଧ୍ୟ ସଂସ୍କୃତ ହେବା ଆବଶ୍ୟକ । ତାହି ମହାତ୍ମାଙ୍କ ବିଭାଗ—୧ । ଇଚ୍ଛାଗତପ୍ରାଣା, ୨ । ସୌନ୍ଦର୍ଯ୍ୟଗତପ୍ରାଣା, ୩ । କର୍ତ୍ତବ୍ୟଗତପ୍ରାଣା, ୪ । ପଠଗତପ୍ରାଣା, ୫ । ପରଗତପ୍ରାଣା, ୬ । ଜଳଖିଆଗତପ୍ରାଣା, ୭ । ପିତୃଗତପ୍ରାଣା, ୮ । ଆଡମ୍ବରଗତପ୍ରାଣା, ୯ । ସ୍ନେହଗତପ୍ରାଣା, ୧୦ । ସ୍ୱାର୍ଥଗତପ୍ରାଣା, ୧୧ । ଜାମାତୃଗତପ୍ରାଣା, ୧୨ । ଧର୍ମପୁନଃଗତପ୍ରାଣା । (ଏ ସବୁର ଅର୍ଥ ଆମ୍ଭେମାନେ ବୁଝିବାକୁ ଏକାନ୍ତ ଅକ୍ଷମ, ତାହି ମହାତ୍ମାଙ୍କୁ ଦରଖାସ୍ତ କରି ସାରିଲୁଣି, ଅତଏବ ଏ ଗୂଢ଼ କଥାର ଅର୍ଥ ଓ ଉଦାହରଣ ଭବିଷ୍ୟତରେ ପ୍ରତ୍ନତତ୍ତ୍ୱବିତ୍‌ମାନେ ସ୍ଥିର କରିବେ ବୋଲି ଛାଡ଼ି ଗଲୁଁ ।)

୫ । ମନୁଆ—ଅଜ ଏକ ଜାତୀୟ ଘରଣୀ ଅଛନ୍ତି, ସେମାନଙ୍କୁ ପ୍ରଶଂସା କଲେ ସେମାନେ ବିରକ୍ତ ହୁଅନ୍ତି; ନିନ୍ଦା କଲେ ମଧ୍ୟ ବିରକ୍ତ ହୁଅନ୍ତି । ଯେଉଁଦିନ ଟିଅଣ ଅଲଣା ହୋଇଥିବ, ସେ ଦିନ ଯେବେ ଟିଅଣ ଅଲଣା ହୋଇଛି କହିଦେବ; ତହିଁ ଆରଦିନ କଷ୍ଟେ ଲୁଣିଆ ହେବ । ଲୁଣିଆ ବୋଲି କହିଦେଲେ ପରଦିନ ଜାଣିଶୁଣି ଅଲଣା ହୋଇଥିବ । ଅତଏବ ଏମନ୍ତ ଘରଣୀଙ୍କୁ କିଛି ନ କହିଲେ ସେମାନେ ଆପେ ଆପେ ସୁଧୁରି ଯାଆନ୍ତି । ଯେ ପ୍ରଶଂସା ବା ନିନ୍ଦା ଶୁଣିବାକୁ ଅନିଚ୍ଛୁକ, ତାଙ୍କ ଇଚ୍ଛାବିରୁଦ୍ଧ କାର୍ଯ୍ୟ କଲେ ସେ ବିରକ୍ତ ହେବେ, ଏଥିରେ ସନ୍ଦେହ ନାହିଁ । ତାଙ୍କ କାର୍ଯ୍ୟରେ ଯାହା ଦୋଷ ଓ ଭଲ ଏ ବଳିପଡ଼ିଯାଏ, ସେ ମନକୁ ସୁଧୁରିଯାଏ । କିଣି ଶୁଣି ସୁଧାରିବାକୁ ବସିଲେ କଷ୍ଟେ ବିଗିଡ଼ିବ, ଏଥିରେ ସନ୍ଦେହ ନାହିଁ । ଏମାନଙ୍କୁ ଆନନ୍ଦିତ କରିବାକୁ ବସିଲେ ଏମାନେ ବିରକ୍ତ ହୁଅନ୍ତି, ବିରକ୍ତ କରିବାକୁ

ବସିଲେ ଏମାନେ ଅନନ୍ଦିତ ହୁଅନ୍ତି । ସଜ୍ଜିଭୂଣୀ ଦେହରେ ମଇଳା ପଡ଼ିବା ଉଦ୍ଦେଶ୍ୟରେ ଏମାନେ ଅସ୍ପୃଶ୍ୟ ବସ୍ତୁ ହିଁ ହୁଅନ୍ତି କରିବାକୁ ଛାଡ଼ନ୍ତି ନାହିଁ ।

୫ । କଳହନ୍ତରୀ—ଏମାନେ ଗୃହଗନ୍ଧ ଶଗଡ଼ରେ ହାତ ପୁଟରେଇଙ୍କ ବାଲ୍ଲ । ଖୋଦ୍ ଈଶ୍ୱର ସୁଦ୍ଧା ଏମାନଙ୍କ ନିକଟରେ "ଜବାବ—ଦେହି" ନ ହୋଇ ଯିବେ କୁଆଡ଼େ ? ସଂସାରରେ ଜାବନଗତ୍ ଏମାନଙ୍କ ପଦତଳେ ଅନତ । ବାଘ ପଶୁ ଜୀବ ଏମାନଙ୍କୁ ବାଟ ଛାଡ଼ି ଦେଇ ପାଟେଣ ଯିବ । ଛୁଞ୍ଚି ଯିବ ପାଞ୍ଚ, କାନ୍ଥ ନଳିବା ଏମାନଙ୍କ ଜାତକରେ ନାହିଁ । ରୂପ ନାହିଁ, ଗୁଣ ନାହିଁ, ଅଥଚ ଜଗତ ବଶ୍ୟ । ଅଛି ସେହି କଳହଂସ କୂଜନ—ଅଛି ସେହି ମେଘ ଗର୍ଜନ । ଏମାନେ ଗୃହକର୍ତ୍ତା ବା ସେବକାପିଅରଙ୍କୁ ମାନିବା ଲୋକ ନୁହନ୍ତି । ପୃଥକ୍ ଶଯ୍ୟା ହେଲେ ଏମାନଙ୍କର ମୁକ୍ତି, ଉପବାସ କଲେ ଏମାନଙ୍କର ମନଃପ୍ରସାଦ ।

୭ । ରସିକା—ଏମାନଙ୍କର ସବୁଠାରେ ପ୍ରଶଂସା । କେବଳ ଏକ-ସ୍ଥାନରେ ଏମାନଙ୍କ ପ୍ରଶଂସା ଶୁଣାଯାଏ ନାହିଁ । ଯେଉଁମାନେ ଦୂରରୁ ଦେଖନ୍ତି, ସେମାନେ ପ୍ରଶଂସା ନ କରି ରହି ପାରନ୍ତି ନାହିଁ । ଯେ ଥରେ ଦେଖିଛନ୍ତି ବା ଥରେ ଯେଉଁ ଅମୃତ ବଚନ ଶୁଣିଛନ୍ତି, ସେମାନେ ଆଜୀବନ ସବୁଠାରେ ପ୍ରଶଂସା କରୁଅଛନ୍ତି । କିନ୍ତୁ ଯେ ପ୍ରତିଦିନ ପ୍ରତି ମୁହୂର୍ତ୍ତରେ ଦେଖୁଛି, ତାକୁ ସେ ରୂପ, ସେ ବଚନ, ସେ ରସିକତା ସବୁ ପିତା ଲାଗୁଛି, ସେ ସ୍ୱାମୀ ଯେଉଁଠାରେ ସ୍ତ୍ରୀ ବିଷୟରେ ଖରୁ ମନ୍ତବ୍ୟ ପ୍ରକାଶ କରନ୍ତି, ସେହିଠାରେ ତାହାର ତୀବ୍ରତର ପ୍ରତିବାଦ ହୁଏ । ଏପରି ସ୍ୱାମୀମାନେ ନିକଟ ଚକ୍ଷୁଶ ହେବା ଅବଶ୍ୟକ । ନଚେତ୍ ଭାବୀ ଫଳ ଆତ୍ମହତ୍ୟାରେ ପରିଣତ ହୁଏ । ଏମାନଙ୍କ ସ୍ୱାମୀମାନେ ସାଧାରଣତଃ ବିକୃତମସ୍ତିଷ୍କ ହୁଅନ୍ତି । ହେବା ମଧ୍ୟ ଅନିବାର୍ଯ୍ୟ । ହେଲେ ମଧ୍ୟ ତଳେ ।

୮ । କୁହୁକିନୀ—ସମସ୍ତଙ୍କୁ ମୋହିଧୂଳିରେ ବଶୀଭୂତ କରି ପାରନ୍ତି । "ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂ ସ୍ତଥୈବ ଭଜାମ୍ୟହଂ ।" ଯେ କହିବେ

ସତୀ, ସେ ଫଳତଃ ତାହା ଦେଖିବେ । ଯେ ବହୁରୂପବେ ଚତୁରା, ସେ ଫଳତଃ ମଧ୍ୟ ସେହିତା ଦେଖିବେ । ଏମାନଙ୍କଠାରେ ବାଲ୍ୟକାଳସୁଲଭ କୋମଳତା, ଯୁବତୀସୁଲଭ ଉତ୍ସୁକତା, ପ୍ରୌଢ଼ାସୁଲଭ ଚରିତ୍ର ଓ ବୃଦ୍ଧାସୁଲଭ ସହିଷ୍ଣୁତା ସବୁ ରହିଅଛି । ଦେଖି ଜାଣିଲେ ହେଲା ।

୯ । ସ୍ନେହମୟୀ—ଏ ଶ୍ରେଣୀର ସ୍ତ୍ରୀମାନେ ଅସ୍ତ୍ରତ୍ୟାଗ ଜନମନ୍ତ୍ରେ ଜନ୍ମଗ୍ରହଣ କରିଥାଆନ୍ତି । ବାଲ୍ୟକାଳରେ ସଙ୍ଗୀ ସଙ୍ଗିନୀଠାରେ ପ୍ରାଣ ଢାଳି ଦିଅନ୍ତି । ବିବାହ ହେବା ପୂର୍ବରୁ ପିତୃମାତୃ ସେବାରେ ମନଃ ପ୍ରାଣ ଢ଼ାଳି ଦିଅନ୍ତି । ବିବାହିତା ହେଲାରୁ ସ୍ୱାମୀ ଚରଣରେ ଜୀବନ ଉତ୍ସର୍ଗ କରି ଦିଅନ୍ତି । ଅପତ୍ୟାଦ ହେଲାରୁ ସନ୍ତାନଙ୍କ ଲାଳନ ପାଳନ ଏମାନଙ୍କର ପ୍ରଥମ କର୍ତ୍ତବ୍ୟ ଓ ବୃଦ୍ଧ ବୟସରେ ପରୋପକାର ଓ ପରର ଦୁଃଖମୋଚନ ଏମାନଙ୍କର ମହାବ୍ରତ । ଆପଣର ସହସ୍ର ଅଭାବ ଥାଉ, ପରର ଅଭାବ ମୋଚନ କରି ପାରିଲେ ଜୀବନକୁ ଧନ୍ୟ ମନେ କରନ୍ତି । ହୃଦୟରେ ସ୍ନେହକୁମ୍ଭ ଲାଗିଥାଉ, କିନ୍ତୁ ମୋ ଆଳସ୍ୟରୁ ଅନ୍ୟ କେହି ଯେପରି କଷ୍ଟ ନ ପାଉ । ଜଣେ ଯେବେ ପୋଡ଼ିଲା ଗାଳି ଦେଇ ସୁଖୀ ହେଉ, ହେଉ, ତାହା ସୁଖରେ ମୁଁ ବାଧା ଦେବି ନାହିଁ ।

୧୦ । ଚତୁରା—ଏମାନେ ନିଜେ ଆପଣାକୁ ଚତୁରା ବୋଲି ଜାଣନ୍ତି, ଦେଖନ୍ତି ଓ କହି ବୁଲନ୍ତି । ଆଜି ଏପରି ବୁଦ୍ଧି ଖଟେଇ କଲି, ସେ ଦିନ ସ୍ୱାମୀଙ୍କୁ ଏପରି ପରାସ୍ତ କଲି, ଏହାହିଁ ଏମାନଙ୍କ ଜୀବନର ପ୍ରଧାନ ଅବଲମ୍ବନ । ଶ୍ରେତା 'ହଁ' କହିଦିଏ ସତ, ମହାରାଣୀଙ୍କର ସୁଯନ୍ତ୍ରଣା ଭାଙ୍ଗେ ନାହିଁ ସତ, କେହି ମଧ୍ୟ ଭାଙ୍ଗାଇବାକୁ ଚେଷ୍ଟା କରେ ନାହିଁ । ଚେଷ୍ଟା କଲେ, ପହଞ୍ଚ ଭଙ୍ଗାଇ ଦେଲେ ତୁମେ ଶତ୍ରୁ ମଧ୍ୟରେ ଗଣ୍ୟ ହେବ ଓ ତୁମ ନାମରେ ସମାଜରେ ମଧ୍ୟ କଳଙ୍କ ରଟିବାକୁ ବେଶି ଡେରି ଲାଗିବ ନାହିଁ । ଯେଉଁଦିନ ମହାରାଣୀଙ୍କର ସୁଯନ୍ତ୍ରଣା ମନରୁ ଭାଙ୍ଗିଯାଏ, ସେ ଦିନ "ଘର ବୁଡ଼ ପାଣି ଅଣ୍ଟୁଏ ହୁଏ" ।

୧୧ । ଏ ଶ୍ରେଣୀର ସ୍ତ୍ରୀମାନେ ସୌଭାଗ୍ୟବତୀ ଓ ସ୍ୱାମୀମାନେ ଏମାନଙ୍କର କଙ୍କର ବୋଲି ଜଗତ ଜାଣନ୍ତି, ଏମାନେ ନିଜେ ମଧ୍ୟ ଜାଣନ୍ତି । କିନ୍ତୁ ସ୍ୱାମୀ କେଉଁ ଗୁଣରେ ମୁଗ୍ଧ ହୋଇଅଛନ୍ତି, ତାହା ଅନ୍ୟମାନେ ଯେତେ ଚେଷ୍ଟା କଲେ ସୁଦ୍ଧା ବୁଝିବାକୁ ଏକାନ୍ତ ଅକ୍ଷମ । କିନ୍ତୁ ଏଥିକି ବୁଝା ଯାଇଅଛି ଯେ, ଏମାନଙ୍କର ତିନିଗୋଟି ଫଟୋଗ୍ରାଫ୍ ଅଛି । ଗୋଟିଏ ଏମାନେ ଦେଖନ୍ତି, ଗୋଟିଏ ସ୍ୱାମୀମାନେ ଦେଖନ୍ତି ଓ ଅନ୍ୟଟି ସର୍ବସାଧାରଣଙ୍କର ଦୃଷ୍ଟିଗୋଚର ହୁଏ । ବାହାରର ସମସ୍ତେ ନିନ୍ଦା କରୁଥାଆନ୍ତି, କିନ୍ତୁ ସ୍ୱାମୀଙ୍କଠାରେ ଏମାନେ ଦେବପୂଜା ପାଉଥାଆନ୍ତି । ସୂର୍ଯ୍ୟ ପଶ୍ଚିମରେ ଉଦୟ ହୋଇ ପାରନ୍ତି, କିନ୍ତୁ ଏ ସ୍ତ୍ରୀ ଯେ ଗୋଟିକ ଯାକ ତୁଳସୀ, ଏଥିରେ ସ୍ୱାମୀଙ୍କର ସନ୍ଦେହ ଜନ୍ମେ ନାହିଁ । ଏ ସ୍ୱାମୀଙ୍କ ଚକ୍ଷୁରେ ଦୁନିଆ ଯାକ ଅନ୍ଧ ଓ ନିନ୍ଦକ । ଏପରି ସ୍ତ୍ରୀଙ୍କର ସ୍ୱାମୀଙ୍କ ସଙ୍ଗେ ଧନେ ସୁଦ୍ଧା ମତାନ୍ତର ଘଟେ ନାହିଁ । ଏ ଶ୍ରେଣୀର ସ୍ତ୍ରୀମାନେ ଅଧିକାଂଶ ସ୍ଥଳରେ ଦ୍ୱିତୀୟ ପକ୍ଷୀୟା । ଏଥିରେ ମଧ୍ୟ ଗୋଟିଏ ନ୍ୟାୟସିଦ୍ଧ କାରଣ ଅଛି:—କୌଣସି ବସ୍ତୁ ନ ହଜିବା ପର୍ଯ୍ୟନ୍ତ ମନୁଷ୍ୟ ତହିଁର ମୂଲ୍ୟ ଜାଣି ପାରି ନ ଥାଏ । ଯେତେବେଳେ ହାତରୁ ହଜିଯାଏ, ସେତେବେଳେ ନିଦ୍ରା ଭାଙ୍ଗିଯାଏ । ମୁହଁକ ଯେ ଶବ୍ଦ କହା ଥିଲା, ତାହା ଅନ୍ନପ୍ରଶ୍ନିତରେ ମାଠରେ ପରିଣତ ହୁଏ । "ଥିଲାବେଳେ ଶଙ୍ଖ କହା ହଜିଗଲେ ମାଠ" । ଙ୍କୁର ଙ୍କୁର ପୁନର୍ବାର ଯେତେବେଳେ ମିଳେ, ସେତେବେଳେ ସାଧାରଣଙ୍କ ଚକ୍ଷୁରେ ତାହା ଶଙ୍ଖ କହା ଦିଶିଲେ ମଧ୍ୟ ସ୍ୱାମୀଙ୍କ ଚକ୍ଷୁରେ ମଠ ବୋଲି ପ୍ରତୀୟମାନ ହୁଏ ଓ ହେବା ନ୍ୟାୟସଙ୍ଗତ ।

୧୨ । ଓଜମୀ—ପ୍ରକୃତ କଥା ବୁଝିବାର ଚତୁରତା ଏମାନଙ୍କର ନାହିଁ । ଏମାନେ ସବୁଠାରେ ନିର୍ଯ୍ୟାତନା ଭୋଗ କରନ୍ତି । ଦୁଷ୍ଟସ୍ତ୍ରୀମାନଙ୍କ ଅତ୍ୟାଚାର ଏହିମାନଙ୍କ ଉପରେ । ଘରେ ବାହାରେ ଯେ ଯାଏ, ସେ ଏମାନଙ୍କରେ ଗୋଟିଏ ହାଣିଦିଏ । ଗୃହକୁଳ ଏମାନେ ସହ୍ୟ କରନ୍ତି । ଅପଣାର ଦୁଃଖ ପର ନିକଟରେ ପ୍ରକାଶ କରିବାର ସାମର୍ଥ୍ୟ ମଧ୍ୟ ଏମାନେ ପାଇ ନ ଥାନ୍ତି । ଏମାନେ ବାଲ୍ୟସଙ୍ଗୀ ସଙ୍ଗିନୀଙ୍କଠାରୁ

ଆରମ୍ଭ କରି ବୁଢ଼ୀ ହେବା ପର୍ଯ୍ୟନ୍ତ ଏହିମାନେ କାଳ କାଟିଥାନ୍ତି । ନିଜେ ଦୁଃଖ ପାଉଛନ୍ତି, ଏକଥା ଏମାନେ ବୁଝିପାରନ୍ତି । ସ୍ୱାମୀଙ୍କୁ ସେବା ନିମି ଆଦର ସୋହାଗ କରିବା ଏମାନଙ୍କ ଭାଗ୍ୟରେ ଘଟେ ନାହିଁ । ବିଶେଷ ପ୍ରକାର ଆଦର ପାଇବା ମଧ୍ୟ ଏମାନଙ୍କ ଭାଗ୍ୟରେ ଲେଖା ନାହିଁ । ବାଇ ମହାନ୍ତଙ୍କ ମତରେ ଏହିମାନେ ପ୍ରକୃତ ସୁଖୀ । ଦୁଃଖ ସହିବାକୁ କଷ୍ଟସହ୍ୟ ହୁଏନି, ତାହାର ଦୁଃଖ ଦୁଃଖ ହୁଏନି । ମଥାରେ ସିନ୍ଦୂର ଟୋପାଏ ଓ ହାତରେ ଶଙ୍ଖା ପଟେ ହେଲେ ଏମାନେ ଆଉ ଅଧିକ କିଛି ଆଶା କରନ୍ତି ନାହିଁ ଓ ଅଧିକ କଷ୍ଟ ପାଆନ୍ତି ବି ନାହିଁ ।

୧୩ । ତେଜସ୍ୱିନୀ—ଯଦି ପଦେକେ କହିଁ ଦେବ, ଦଶ ପଦରେ ଉତ୍ତର—ମୁଁ ଫାଶି ଲଗେଇ ଦେବି, ପାଣିକି ଡେଇଁ ପଡ଼ିବି । କିନ୍ତୁ ଏ ଶ୍ରେଣୀର ଘରଣୀମାନେ କେତେଥର ଏ କାର୍ଯ୍ୟ କରନ୍ତି, ତାହା ଈଶ୍ୱରଙ୍କୁ ଜଣା । ବାଇ ମହାନ୍ତ କହନ୍ତି, 'କହେ ଯେ କରେ ନାହିଁ, କରେ ଯେ କହେ ନାହିଁ' ।

ଏମାନଙ୍କ ସମ୍ବନ୍ଧରେ ଯୋଡ଼ାଏ ଗଳ୍ପ ଅଛି—ବୁଢ଼ା ମରିବାକୁ ଯାଉଛି, ଅଲୁଅ ଦେଖା, କାଳେ କଣ୍ଟା ମାଡ଼ିବ । ବୁଅଟେର ବୁଢ଼ା ମରିବାକୁ ନାହିଁ ଡରାଏ, ଦିନେ ସ୍ୱାମୀ ବୁଅ ମୁହଁକୁ ନେଇ ମାଡ଼ ଧରି କହିଲା, ମର୍ । ସେହିଠାରେ ଘରଣୀ କବୁଲ କଲେ, ଆଉ ଦିନେ ଯେପରି କହିବେ ନାହିଁ ।

୧୪ । ଅନ୍ଧଲେମ୍ବୁ—ସ୍ନେହ କଲାବେଳେ ସ୍ନେହର ପରାକାଷ୍ଠା, ଅଭିମାନ ବେଳେ ଅଭିମାନର ପରାକାଷ୍ଠା, ଥଟ୍ଟା, କଳହ, ବର୍ଜନ, ପ୍ରଣୟ ଇତ୍ୟାଦି ସବୁଥିରେ ସୀମାଶେଷ ପର୍ଯ୍ୟନ୍ତ ଗୁଳିଯାଆନ୍ତି; ପଛରେ ପସ୍ତାନ୍ତି, ଦୋଷ ସ୍ୱୀକାର କରନ୍ତି ଓ ସୀମା ଲଙ୍ଘନ କରିଥିବାର ମଧ୍ୟ ସ୍ୱୀକାର କରନ୍ତି, ବିବେକଶୂନ୍ୟ ପାପିଷ୍ଠଙ୍କ ହାତରେ ପଡ଼ିଲେ ଏମାନଙ୍କ ଜୀବନ ମରଣରେ ପରିଣତ ହୁଏ । ଏମାନେ ଯାହା ଇଚ୍ଛା ତାହା ହାତକୁ ବାଢ଼

ଦୁଆର ଗଳି କବାଟରେ ଗୁବ ବଡ଼େଇ ଦଅନ୍ତି । ଏଣେ ଚେଢଙ୍କ ବେଳକୁ ଦାଣ୍ଡଦୁଆରରେ ପହରିବାଙ୍କ ରଙ୍ଗି ଗୁଣ୍ଡା ବିପଣ୍ଡା ହୁଅନ୍ତି ।

୧୫ । ଅଉ ଏକ ଶ୍ରେଣୀର ଘରଣୀ ଅଛନ୍ତି, ସେମାନେ 'କୁସୁମ ପରଶେ ପଟ ନପ୍ତରେ' ପ୍ରବାଦର ସାର୍ଥକତା କରନ୍ତି । ନଜର କଛି ରୂପ ଗୁଣ ନାହିଁ, କିନ୍ତୁ ଅମୁକଙ୍କ ଝିଅ ବା ବୋହୂ ଅବା ସ୍ତ୍ରୀ ବୋଲି ଜୀବନଯାକ ପୂଜା ପାଇ ଗୃଳି ଥାଆନ୍ତି । ରଜା ହାତରେ ପିତଳ ମୁଦଟାଏ ଭବିଲେ ସମସ୍ତେ କହନ୍ତି ସୁନା—କାରଣ ରଜାଙ୍କ ହାତରେ ଅଛି ପର ।

ଉପରେ ଯେଉଁ ଶ୍ରେଣୀର ଘରଣୀମାନଙ୍କ ବିଷୟ ବୋଲିଗଲି, ଏମାନେ ସେ ଶ୍ରେଣୀର ବାହାରିତ—ଏମାନେ ବାଉଁଶ ପାଇରେ ମାଣିକ । ବାଉଁଶ ପାଇରେ ମାଣିକର ଯେଉଁ ଦଶା ହୁଏ, ଏମାନଙ୍କର ମଧ ସେହି ଦଶା ହୁଏ । କାରଣ, ଏମାନେ ପଶୁ ଗହଳ ମାଇପ । ଇତର ସମାଜରେ ଅନେକ ସ୍ଥାନରେ ଏପରି ସୁଲକ୍ଷଣା ଘରଣୀ ମିଳନ୍ତି । କିନ୍ତୁ ଜଗତ୍ ତାଙ୍କୁ ଗୋରୁହାଙ୍କ ଭେଳ ପାଶ ଗୋଡ଼ାଏ । କିନ୍ତୁ ଯାହା ହେବାର ହେଉ, ଯଥୈବାସ୍ତେ ଉଥୈବାସ୍ତାଂ କାଚଃ କାଚଃ ମଣିର୍ମଣିଃ' ।

ପାଠକ ମହୋଦୟ ! ଦେଖିଲେ ତ, କୁଦିର ଦଉଡ଼ାଟା କେତେ ? ନିରୀହ ପ୍ରାଣୀଙ୍କ ଉପରେ କଟାକ୍ଷ କରି ଅମ ବାଇ ମହାନ୍ତି ଭକ୍ତ ଅସରଗା ଉପରେ କାଣୀ ବସିଡ଼ ବନଛନ୍ତି ।

# ବିନ୍ଦୁସାର

ଓ

## (ଇତିହାସ ପ୍ରସଙ୍ଗ)

ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ, ଏମ୍. ଏ., ଏଲ୍. ଏଲ୍. ବି.

ମୌର୍ଯ୍ୟବଂଶ-ପ୍ରତିଷ୍ଠାତା ମହାରାଜ ଚନ୍ଦ୍ରଗୁପ୍ତ ଖ୍ରୀଃପୂଃ ୨୯୭ ଅବ୍ଦରେ ମାନବଲୀଳା ସମ୍ବରଣ କଲେ । ତଦନନ୍ତର ତଦୀୟ ପୁତ୍ର ବିନ୍ଦୁସାର ସୁବିସ୍ତୀର୍ଣ୍ଣ ମୌର୍ଯ୍ୟ ସାମ୍ରାଜ୍ୟର ଶାସନାଧିପରୂପେ ପ୍ରତିଷ୍ଠିତ ହେଲେ । ମହାରାଜ ଚନ୍ଦ୍ରଗୁପ୍ତଙ୍କର ଏକାଧିକ ମହିଷୀ ଥିଲେ ସତ୍ୟ, କିନ୍ତୁ ସେହି ମହିଷୀବୃନ୍ଦଙ୍କ ଗର୍ଭସମ୍ଭୂତ ଅନ୍ୟ କୌଣସି ରାଜକୁମାର ବିନ୍ଦୁସାରଙ୍କର ରାଜ୍ୟକାଳରେ ପ୍ରତିଦ୍ୱନ୍ଦ୍ୱିତାଚରଣ କରିଥିଲେ କି ନାହିଁ, ସେ ବିଷୟରେ ପ୍ରାଚୀନ ଭାରତ ଇତିହାସ ନୀରବ । ଅଧୁନାତନ ଇତିହାସପ୍ରଣେତାମାନଙ୍କ ମଧ୍ୟରୁ କେହି କେହି ବିନ୍ଦୁସାରଙ୍କୁ ବାହ୍ଲୀକ ପ୍ରଦେଶାଧିପତି ଗ୍ରୀକ୍ ନରପତି ସେଲିଉକସଙ୍କର ଦୌହିତ୍ର ବୋଲି ନିର୍ଦ୍ଦେଶ କରନ୍ତି । ସମ୍ଭବତଃ ଚନ୍ଦ୍ରଗୁପ୍ତଙ୍କୁ ଏକପତ୍ନୀକ ବୋଲି ପ୍ରଥମେ କଳ୍ପନା କରି, ତାହାଙ୍କ ସହିତ ସମ୍ବନ୍ଧସୂତ୍ରରେ ଯେଉଁ ଗ୍ରୀକ୍ ରାଜକନ୍ୟାର ଶୁଭପରିଣୟ ସମ୍ପନ୍ନ ହୋଇଥିଲା, ବିନ୍ଦୁସାରଙ୍କୁ ସେହି କନ୍ୟା ଗର୍ଭସମ୍ଭୂତ ବୋଲି ସେମାନେ ମୀମାଂସା କରିଅଛନ୍ତି । ପ୍ରାଚୀନ ଭାରତ ଇତିବୃତ୍ତର ଉପାଦାନୀଭୂତ ବୌଦ୍ଧ ଗ୍ରନ୍ଥସମୂହ ଓ ଗ୍ରୀକ୍‌ଗଣଙ୍କ ଲିଖିତ ଲିପିଗୁଡ଼ିକରୁ ଆଧୁନିକ ଇତିହାସପ୍ରଣେତାମାନଙ୍କ ମତର ବିରୋଧୀ ପ୍ରମାଣ ପାଇବା ଦୁଃସାଧ୍ୟ ହେଲେହେଁ, ସେଗୁଡ଼ିକ ସମ୍ୟକ୍ ପର୍ଯ୍ୟାଲୋଚନା କରି ଦେଖିଲେ ଜଣାପିବ ଯେ, ଅଧୁନାତନ ଐତିହାସିକମାନଙ୍କ ମତ ଅନୁମୋଦନ କରିବା ଲାଗି ସେଥିରେ ସେପରି କୌଣସି ବିଶିଷ୍ଟ ପ୍ରମାଣ ଲକ୍ଷିତ ହୁଏ ନାହିଁ ।

ଯେପର୍ଯ୍ୟନ୍ତ ବିନ୍ଦୁସାର ହିନ୍ଦୁରମଣୀଗର୍ଭଜାତ କି ଗ୍ରୀକ୍‌କନ୍ୟାଗର୍ଭସମ୍ଭୂତ, ଏ ବିଷୟରେ ଆମ୍ଭେମାନେ କୌଣସି ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇ ନ ପାରୁଁ, ସେପର୍ଯ୍ୟନ୍ତ ଆମ୍ଭମାନଙ୍କର ବିଶ୍ୱାସ ଯେ, ବିନ୍ଦୁସାର ଚନ୍ଦ୍ରଗୁପ୍ତଙ୍କର ହିନ୍ଦୁନାରୀଗର୍ଭଜାତ ସନ୍ତାନ ଏବଂ ସେହି ବିଶ୍ୱାସର ବଶବର୍ତ୍ତୀ ହୋଇ ଆମ୍ଭେମାନେ ଉପକ୍ରାନ୍ତ ବିଷୟର ଆଲୋଚନାରେ ପ୍ରବୃତ୍ତ ହୋଇଅଛୁଁ ।

ଏହି ବିଶ୍ୱାସର ପ୍ରତିପାଦକ ପ୍ରମାଣସ୍ୱରୂପ ପ୍ରଥମତଃ ଆମ୍ଭେମାନେ ପ୍ରାଚୀନ ବୌଦ୍ଧଗ୍ରନ୍ଥରେ ବିନ୍ଦୁସାରଙ୍କ ଜନନୀଙ୍କର ନାମ 'ଧର୍ମ୍ମା' ବୋଲି ଉଲ୍ଲେଖ ଦେଖୁଁ । ଏହି ନାମ କୌଣସି ଗ୍ରୀକ୍ ରମଣୀର ନାମର ରୂପାନ୍ତର ବା ଅପଭ୍ରଂଶ ବୋଲି ବୋଧ ହେଉ ନାହିଁ । ବରଂ ଏପରି ନାମ ବିଶୁଦ୍ଧ ସଂସ୍କୃତ ଶବ୍ଦ ବୋଲି ଅନୁମିତ ହୁଏ । ଦ୍ୱିତୀୟତଃ ଗ୍ରୀକ୍ ନରପତି ଉଇମାକସ୍ ବିନ୍ଦୁସାରଙ୍କ ପାଖକୁ ଯେଉଁ ଦୂତ ପ୍ରେରଣ କରିଥିଲେ, ସେ ଦୀର୍ଘକାଳ ଭାରତରେ ଅବସ୍ଥାନ କରି ବିନ୍ଦୁସାରଙ୍କ ସହିତ ସ୍ୱୀୟ ପ୍ରଭୁପ୍ରାର୍ଥିତ ସନ୍ଧିସମ୍ପାଦନପୂର୍ବକ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ବିନ୍ଦୁସାର ଯଦି ଗ୍ରୀକ୍‌ରମଣୀଗର୍ଭଜାତ ହୋଇଥାନ୍ତେ, ତେବେ ଗ୍ରୀକ୍‌ଦୂତକୁ ଏତାବତ୍‌କାଳ ଭାରତରେ ଅବସ୍ଥାନ କରି ସନ୍ଧି ନିମନ୍ତେ ଏତାଦୃଶ କଷ୍ଟ ସହ୍ୟ କରିବାକୁ ପଡ଼ି ନ ଥାନ୍ତା; କାରଣ କୌଣସି ଅସ୍ୱାଭାବିକ କଳହ ବିଦ୍ୟମାନ ନ ଥିଲେ ମାତୁଳକୁଳ ସହିତ ସଦ୍ଭାବ-ରକ୍ଷା ମନୁଷ୍ୟର ସ୍ୱତଃସିଦ୍ଧ ଧର୍ମ । ସେଥିପାଇଁ ଏତେ ଆୟାସ ଓ ଆଡ଼ମ୍ବର ନିଷ୍ପ୍ରୟୋଜନ । ପକ୍ଷାନ୍ତରେ ଗ୍ରୀକ୍‌ଗଣଙ୍କ ସହିତ ଚନ୍ଦ୍ରଗୁପ୍ତଙ୍କର ଯେ ସନ୍ଧି ସମ୍ବନ୍ଧ ଥିଲା, ଏ ବିଷୟରେ ମତଦ୍ୱୈଧ ଲକ୍ଷିତ ହୁଏ ନାହିଁ । ଏପରି ଅବସ୍ଥାରେ ପ୍ରାଚୀନ ସନ୍ଧିର ଦୃଢ଼ତା କାମନାପୂର୍ବକ ନୂତନ ସନ୍ଧି ଲାଗି ଦୂତପ୍ରେରଣରୁ ଅନୁମିତ ହୁଏ ଯେ, ସମ୍ଭବତଃ ବିନ୍ଦୁସାରଙ୍କ କର୍ତ୍ତୃକ ସନ୍ଧିଭଙ୍ଗର କୌଣସି କାରଣ ଉପସ୍ଥିତ ହୋଇଥିଲା । ବିନ୍ଦୁସାର ଯଦି ଗ୍ରୀକ୍‌ରମଣୀଗର୍ଭସମ୍ଭୂତ ହୋଇଥାନ୍ତେ, ତେବେ ଏପରି ସନ୍ଧିବିଗ୍ରହର ସମ୍ଭାବନା ନ ଥାନ୍ତା; ସମ୍ଭାବନା ଥିଲେ ମଧ୍ୟ ଏତେ ଆୟୋଜନ ଅନାବଶ୍ୟକ ହୋଇଥାନ୍ତା ।

ପ୍ରାଚୀନ ଭାରତରେ ଇତିହାସର ଉପକରଣସମ୍ବନ୍ଧ ବାଳର ଅନ୍ଧତମସାଚ୍ଛନ୍ନ ଗର୍ଭରେ ନିବଦ୍ଧ ହୋଇଅଛି । କଳ୍ପନାବଳରେ ସୁନିଷ୍ଠିତ ପ୍ରମାଣାବଳୀର ଅଭାବ ପୂରଣ କରି ଐତିହାସିକ ତଥ୍ୟସମୂହ ନିର୍ଣ୍ଣୟ କରିବା ସହଜ ନୁହେଁ । ଏପରି ଅବସ୍ଥାରେ ଆମ୍ଭେମାନେ ଗୋଟିଏ ଦୁଇଟି ମାତ୍ର ଯୁକ୍ତି ଉପନ୍ୟସ୍ତ କରି ଏବଂ ମହାରାଜ ବନ୍ଦୁସାରଙ୍କ ରାଜତ୍ୱର ଇତିହାସର ଅସମ୍ପୂର୍ଣ୍ଣ ଉପକରଣ ଉପରେ ନିର୍ଭର କରି ତାହାର ଯେଉଁ ବିବରଣ ସଂଗ୍ରହ କରିବାକୁ କ୍ଷମ ହୋଇଅଛୁଁ, ତାହା ନିମ୍ନରେ ପ୍ରକାଶ କଲୁଁ; ମାତ୍ର ଯଥାର୍ଥ ସତ୍ୟ ଆବିଷ୍କାରର ଭାର ଭବିଷ୍ୟ ଗବେଷଣାକାରୀଗଣଙ୍କ ଉପରେ ନ୍ୟସ୍ତ । ଡାଇମାକସ୍‌ଙ୍କ ସଦୃଶ ଗ୍ରୀକ୍‌ନରପତି ଆଣ୍ଟିଓକସ୍ ସୋଟର୍ ମଧ୍ୟ ଭାରତ ସହିତ ସଦ୍‌ଭାବ ରକ୍ଷା କରିବାରେ ବିଶେଷ ମନୋଯୋଗୀ ଥିଲେ । କଥିତ ହୁଏ, ରାଜଦୂତର ଆଦାନ-ପ୍ରଦାନ ଉପଲକ୍ଷରେ ବନ୍ଦୁସାର ବନ୍ଧୁକ ସ୍ୱଦେଶାଧିପତି ଆଣ୍ଟିଓକସଙ୍କୁ ସୁମିଷ୍ଟ ଉଦୁମ୍ବରଜାତୀୟ ଫଳ (ଅଞ୍ଜୀର) ଦ୍ରାକ୍ଷାରସଜାତ ମଦ୍ୟ ଓ ଜଣେ ସୁବିଜ୍ଞ ଅଧ୍ୟାପକ ପ୍ରେରଣ କରିବାକୁ ପ୍ରାର୍ଥନା କରିଥିଲେ; କିନ୍ତୁ ଆଣ୍ଟିଓକସ୍ ଅଞ୍ଜୀର ଓ ମଦ୍ୟ ପ୍ରେରଣ କରି ଅଧ୍ୟାପକ ପ୍ରେରଣ ସମ୍ବନ୍ଧରେ ବିନୀତଭାବରେ ଜଣାଇଥିଲେ ଯେ, ଗ୍ରୀସ୍‌ଦେଶୀୟ ନିୟମାନୁସାରେ ଦାସତ୍ୱପ୍ରଥାର ଅପ୍ରଚଳନ ହେତୁରୁ ଆପଣଙ୍କ ଇଚ୍ଛା ଥିଲେ ସୁଦ୍ଧା କୌଣସି ଅଧ୍ୟାପକ ପ୍ରେରଣ କରିବାରେ ତାଙ୍କର ରାଜଶକ୍ତି ଅସମର୍ଥ । ଏବମ୍ଭୂତ ସମୀଚୀନ ଉତ୍ତରରେ ବନ୍ଦୁସାର କୌଣସି ପ୍ରକାରବିରକ୍ତି ବା ଅସନ୍ତୋଷ ପ୍ରକାଶ କରିଥିବାର କୌଣସି ପ୍ରମାଣ ମିଳେ ନାହିଁ । ଏଥିରୁ ସ୍ପଷ୍ଟ ପ୍ରତୀତ ହୋଇଅଛି ଯେ, ସେ ବୈଦେଶିକ ନରପତିମାନଙ୍କ ସହିତ ସୌହାର୍ଦ୍ଦ୍ୟ ବୃଦ୍ଧି ସାଧନରେ ବିଶେଷ ମନୋଯୋଗୀ ଥିଲେ । ଏତଦ୍‌ବ୍ୟତୀତ ଟଲେମୀ ଫିଲାଡେଲଫସ୍ ମୌର୍ଯ୍ୟ ରାଜସଭାକୁ ଡିଓନିସିୟସ୍ (Dionysios)ନାମକ ଜନୈକ ଦୂତ ପ୍ରେରଣ କରିଥିଲେ ବୋଲି କଥିତ ଅଛି । ସମ୍ଭବତଃ ବନ୍ଦୁସାରଙ୍କ ରାଜତ୍ୱର ଶେଷ ଭାଗରେ ଅଥବା ତତ୍ପୁତ୍ର ଅଶୋକଙ୍କର ରାଜ୍ୟଲାଭ ଉତ୍ତାରୁ ସୁଦୂର ଆଫ୍ରିକାଖଣ୍ଡରୁ

ପ୍ରତ୍ୟାବର୍ତ୍ତନ କରି ଟଲେମୀଙ୍କର ଦୂତ ଭାରତରେ ପଦାର୍ପଣପୂର୍ବକ ପାଟଳୀପୁତ୍ର ନଗରରେ ଉପସ୍ଥିତ ହୋଇଥିଲେ । *

ଇଜିପ୍ଟର ପ୍ରାଚୀନ ଇତିବୃତ୍ତ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, ଟଲେମୀ ଫିଲାଡେଲଫସ୍ ଖ୍ରୀଃ ପୂଃ ୨୮୫ ରୁ ୨୪୭ ଅବ୍ଦ ପର୍ଯ୍ୟନ୍ତ ମିଶର ଦେଶରେ ରାଜସିଂହାସନାରୋହଣ କରିଥିଲେ । ଏହି ଦୂତସମୂହ ଅମୂଲ୍ୟ ଅଭିଜ୍ଞତା-ଉପଲବ୍ଧ ଭାରତବିଷୟକ ବିବରଣୀ ଲିପିବଦ୍ଧ କରି ଯାଇଅଛନ୍ତି । ଖ୍ରୀଷ୍ଟୀୟ ସମ୍ବତ୍ସରର ପ୍ରଥମ ଶତାବ୍ଦୀରେ ରୋମକ ତତ୍ତ୍ୱବିତ୍ ପ୍ଲିନିଙ୍କ ଅଭ୍ୟୁଦୟ ସମୟରେ ସେଗୁଡ଼ିକ ଜନସାଧାରଣଙ୍କ କଣ୍ଠରେ ପ୍ରଚଳିତ ଥିଲା । ସେ ମହାତ୍ମା ସେହି ବିବରଣ ସମୂହରୁ ଅନେକାନେକ ତତ୍ତ୍ୱ ସଂକଳନପୂର୍ବକ ସ୍ୱୀୟ "ଜୀବତତ୍ତ୍ୱ" ନାମକ ଗ୍ରନ୍ଥ ପ୍ରଣୟନ କରି ଯାଇଅଛନ୍ତି ।

ଗ୍ରୀକବାସୀଙ୍କ ବୃତ୍ତାନ୍ତରୁ ଜଣାଯାଏ ଯେ, ସେମାନେ ବିନ୍ଦୁସାରଙ୍କୁ ଅମିତ୍ରକେଟସ୍ (Amitrachates) ବୋଲି ଉଲ୍ଲେଖ କରିଅଛନ୍ତି । 'ଅମିତ୍ରକେଟସ୍' ଏହି ଶବ୍ଦ 'ଅମିତ୍ରାଘାତ' ବା 'ମିତ୍ରଗୁପ୍ତ' ଏହି ସଂସ୍କୃତ ଶବ୍ଦର ଅନୁରୂପ ବୋଲି ବୋଧହୁଏ । ଏପରି ସ୍ଥଳରେ ବିନ୍ଦୁସାରଙ୍କର ଯେ ଏହି ଜାତୀୟ ନାମାନ୍ତର ବା ଉପାଧି ଥିଲା, ପ୍ରସଙ୍ଗତଃ ଏପରି ଯୁକ୍ତିବାଦ କଳ୍ପନା କରିବା ବୋଧହୁଏ ଦୁଃସାହସ ନୁହେ । ଗ୍ରୀକ୍ ଲେଖକମାନଙ୍କର ଅବିସାରିସ୍ (Abisaris) ଓ ମୌର୍ଯ୍ୟ ନରପତି ବିନ୍ଦୁସାର ଏକ ବ୍ୟକ୍ତି କି ନାହିଁ, ତାହା ପୁରାତନ ତତ୍ତ୍ୱବିଦ୍ କର୍ଣ୍ଣେଲ ଟଡ଼ ମଧ୍ୟ ମୀମାଂସା କରି ପାରି ନାହାନ୍ତି ⁂ । ସେ ମହାତ୍ମା 'ବିନ୍ଦୁସାର' ଶବ୍ଦର

---

*V.A. Smith's Asoka (Rulers of India Series) P. 19.

⁂"In this asode of the sons of Puru [ i,e. Hastinapur] resided Parus, one of the two princes of that name, Opponent of Alezander and probably
Berusar, the son of Chandragupta surmised to be the Abisares and Sandracoptas of Grecian authorities." Todda's Rajasqan Vol I. p 38. S. K. Lahiri's edition.

ଉଚ୍ଚାରଣ କରି 'ବେରୁସାର' ବୋଲି ନିର୍ଦ୍ଦେଶ କଲେ, ସେଥିର କୌଣସି କାରଣ ଉଲ୍ଲେଖ କରି ନାହାନ୍ତି ।

ବିନ୍ଦୁସାରଙ୍କର ସାମ୍ରାଜ୍ୟବିସ୍ତାର ସମ୍ବନ୍ଧରେ ଆଲୋଚନା କଲେ ଜଣାଯାଏ ଯେ ତାଙ୍କର ପଞ୍ଚବିଂଶତି ବର୍ଷବ୍ୟାପୀ ରାଜତ୍ୱକାଳ ମଧ୍ୟରେ ତାହାଙ୍କର ରାଜ୍ୟସୀମା ହିମାଳୟର ପାଦଦେଶରୁ ଆଧୁନିକ ମାନ୍ଦ୍ରାଜ ପ୍ରଦେଶ ପର୍ଯ୍ୟନ୍ତ ବିସ୍ତୃତ ଥିଲା, କେବଳ କଳିଙ୍ଗ ଓ ଉତ୍କଳ ସେତେବେଳେ ସ୍ୱାଧୀନ ଥିଲା । ବିନ୍ଦୁସାରତନୟ ଧର୍ମପ୍ରାଣ ମହାତ୍ମା ଅଶୋକଙ୍କ ରାଜ୍ୟଶାସନ ସମୟରେ ଏହି ଭୂଖଣ୍ଡଦ୍ୱୟ ବିଜିତ ଓ ମୌର୍ଯ୍ୟରାଜ୍ୟାନ୍ତର୍ଭୁକ୍ତ ହୋଇ ମୌର୍ଯ୍ୟ ରାଜଗଣଙ୍କ ସାମ୍ରାଜ୍ୟର ଓ ବିଜୟଲକ୍ଷ୍ମୀର ପରିସମାପ୍ତି କରି ଦେଇଥିଲା । ବିନ୍ଦୁସାରଙ୍କର ବିଶାଳ ରାଜ୍ୟ ହିମାଳୟଠାରୁ ନର୍ମଦା ନଦୀ ଓ ଆଧୁନିକ କାବୁଲଠାରୁ ବଙ୍ଗୋପସାଗର ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲେ ମଧ୍ୟ ଶାସନକାର୍ଯ୍ୟ ଏରୂପ ଦକ୍ଷତାସହକାରେ ସମ୍ପନ୍ନ ହେଉଥିଲା ଯେ, ପ୍ରକୃତିପୁଞ୍ଜ ସହଜରେ ଅରାଜକତା ବା କୁଶାସନର ଅଭିଯୋଗ ଉତ୍ଥାପନ କରି ପାରୁ ନ ଥିଲେ । ପାଟଳିପୁତ୍ର ନଗରୀ ମୌର୍ଯ୍ୟ ରାଜାମାନଙ୍କର ପ୍ରଧାନ ରାଜଧାନୀ ଥିଲା; କିନ୍ତୁ ତକ୍ଷଶିଳା, ଉଜ୍ଜୟିନୀ ପ୍ରଭୃତି ସୁପ୍ରସିଦ୍ଧ ସମୃଦ୍ଧ ପ୍ରାଚୀନ ନଗରମାନ ପ୍ରାଦେଶିକ ରାଜଧାନୀରୂପେ ପରିଗଣିତ ହେଉଥିଲା ଏବଂ ରାଜସିଂହାସନର ଭାବୀ ଅଧିକାରୀ ରାଜକୁମାରମାନଙ୍କ ମଧ୍ୟରୁ ଜଣେ ଜଣେ ଅଥବା ରାଜାଙ୍କର କୌଣସି ଘନିଷ୍ଠ ଆତ୍ମୀୟ ରାଜପ୍ରତିନିଧି ନିର୍ବାଚିତ ହୋଇ ଗୋଟିଏ ଗୋଟିଏ ପ୍ରଦେଶର ଶାସନକର୍ତ୍ତା ନିଯୁକ୍ତ ହେଉଥିଲେ । ଏତଦ୍ୱାରା ରାଜାଙ୍କର ଜୀବିତାବସ୍ଥାରେ ମଧ୍ୟ ରାଜକୁମାରମାନେ ରାଜକାର୍ଯ୍ୟରେ ବିଶେଷ ପାରଦର୍ଶିତା ଲାଭ କରୁଥିଲେ । ଅଶୋକଙ୍କର ସିଂହାସନାରୋହଣର ଅବ୍ୟବହିତ ପରେ ସେ ଯେ ଏତେଦୂର ରାଜ୍ୟଶାସନକୁଶଳତା ଓ ସାମର୍ଥ୍ୟ ପ୍ରଦର୍ଶନ କରିଥିଲେ, ରାଜନୀତିଶାରଦ ବିନ୍ଦୁସାରଙ୍କର ଏହି ପ୍ରଥା ହିଁ ତାହାର ମୂଳ କାରଣ ବୋଲି ଅନୁମିତ ହୁଏ । ବିନ୍ଦୁସାରଙ୍କର ପ୍ରଧାନ ସଚିବ ରାଧାଗୁପ୍ତ ଚନ୍ଦ୍ରଗୁପ୍ତଙ୍କର ରାଜ୍ୟଲାଭର ପ୍ରଧାନ ସହାୟ ଓ ମୁଖ୍ୟ ମନ୍ତ୍ରୀ ଚାଣକ୍ୟ ବା

ବସ୍ତୁ, ଗୁପ୍ତଙ୍କଠାରୁ ଦୂରଦର୍ଶିତା ଓ କୂଟନୀତିଜ୍ଞତାରେ ହୀନ ନ ଥିଲେ ରାଜା ବିନ୍ଦୁସାର ସର୍ବଦା ତାହାଙ୍କର ମନ୍ତ୍ରଣା ଗ୍ରହଣ କରୁଥିଲେ ଏବଂ ଚାଣକ୍ୟ ମଧ୍ୟ ଅତ୍ୟନ୍ତ ବିଶ୍ୱସ୍ତଭାବରେ ରାଜକାର୍ଯ୍ୟ ଆଲୋଚନା କରୁଥିଲେ ।

ବିହାର ପ୍ରଦେଶରେ ଭାଗଲପୁର ନିକଟରେ ପ୍ରାଚୀନ ଚମ୍ପାପୁରୀ ଅବସ୍ଥିତ ଥିଲା; ସେହି ଚମ୍ପାପୁରୀରେ ଜଣେକ ଦରିଦ୍ର ବ୍ରାହ୍ମଣ ବାସ କରୁଥିଲେ । ତାହାଙ୍କର ଗୋଟିଏ ସର୍ବସୁଲକ୍ଷଣସମ୍ପନ୍ନା କନ୍ୟା ପ୍ରସୂତ ହୋଇଥିଲା । ସେ ଅପଣା କନ୍ୟାର, ସୁଗଠନ ଅଙ୍ଗ ଓ ଅବୟବାନୁରୂପ ତାହାର ନାମ 'ସୁଭଦ୍ରାଙ୍ଗୀ' ରଖିଥିଲେ । ଦିନେ ଜଣେ ଦୈବଜ୍ଞ କନ୍ୟାର ଭାଗ୍ୟ ପରୀକ୍ଷା କରି କହିଥିଲେ, "ଏହି କନ୍ୟାରତ୍ନ ନିଶ୍ଚୟ ରାଜମହିଷୀ ହେବ, ଏଥିରେ ସନ୍ଦେହ ନାହିଁ ।" ବାଳିକା କ୍ରମେ ବୟଃପ୍ରାପ୍ତ ହେବାକୁ ଲାଗିଲା । ବ୍ରାହ୍ମଣର ଦୈବଜ୍ଞବାକ୍ୟରେ ଦୃଢ଼ ବିଶ୍ୱାସ ଜନ୍ମିଥିଲା । କନ୍ୟାର ବିବାହକାଳ ଉପସ୍ଥିତ ହୁଅନ୍ତେ ସେ ତାହାକୁ ସଙ୍ଗରେ ନେଇ ପାଟଳୀପୁତ୍ର ରାଜଧାନୀକୁ ଗମନ କରିଥିଲା । ସ୍ୱଜାତି ମଧ୍ୟରେ ତନୟାର ଭାଗ୍ୟଲିପିର ସାଫଲ୍ୟୋଦୟର କିଛି ମାତ୍ର ସମ୍ଭାବନା ନାହିଁ ବୋଲି ବିବେଚନା କରି ସେ ଆପଣାର ଅସାମାନ୍ୟ ରୂପଲାବଣ୍ୟସମ୍ପନ୍ନା କନ୍ୟାକୁ ମହାରାଜ ବିନ୍ଦୁସାରଙ୍କୁ ପ୍ରଦାନ କରିଥିଲା । ମୌର୍ଯ୍ୟନରପତି ବିନ୍ଦୁସାର ଶୂଦ୍ର ହେଲେ ମଧ୍ୟ ବ୍ରାହ୍ମଣର ଏହି ଅସାମାନ୍ୟ ଦାନ ଗ୍ରହଣ କରିବାକୁ କୁଣ୍ଠିତ ହୋଇ ନ ଥିଲେ । ସୁତରାଂ ରାଜାଜ୍ଞାରେ ସୁଭଦ୍ରାଙ୍ଗୀ ରାଜାନ୍ତଃପୁରରେ ସ୍ଥାପିତ ହେଲେ । ଅନ୍ତଃପୁରରକ୍ଷିଣୀ ଅନ୍ୟାନ୍ୟ ରମଣୀମାନଙ୍କ ପରି ରାଜା ଓ ଅବରୋଧବାସିନୀ ମହିଷୀମାନଙ୍କର କେଶ ସେବାର ଭାର ଏହି ନବ ଗଠା ସୁନ୍ଦରୀ ଉପରେ ନ୍ୟସ୍ତ ହେବ, ଏହି ବିଷୟର ନିର୍ବାଚନ ଅବସରରେ ରାଜ୍ଞୀମାନେ ବିଚାର କଲେ, "ଏହି ପରମ ରୂପଲାବଣ୍ୟସମ୍ପନ୍ନା ବାଳା ସହଜରେ ପ୍ରକୃତ କର୍ଯ୍ୟରେ ନିଯୁକ୍ତ ହେଲେ ସର୍ବଦା ରାଜସଦନରେ ଉପସ୍ଥିତ ହେବାର ସୁଯୋଗ ପାଇବ; ସେ ସ୍ୱୀୟ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ

ଗୁଣରେ ଅନ୍ୟେଣରେ ରାଜାଙ୍କର ହୃଦୟବିନୋଦକାରିଣୀ ହୋଇ ପାରିବ । ସୁତରାଂ ଯେଉଁ ମହର୍ଷୀମାନେ ରାଜହୃଦୟାଧିକାରିଣୀ ବୋଲି ଅତ୍ୟନ୍ତ ଅଭିମାନିନୀ, ସେମାନଙ୍କର ଗୌରବ ଅଚିରେ ବିନଷ୍ଟ ହୋଇଯିବ । ଏହା ଉପରେ ନାପିତର ହୀନକାର୍ଯ୍ୟର ଭାର ନ୍ୟସ୍ତ ହେଲେ ରାଜା ତାହାକୁ ନୀଚ ଜାତି ବୋଧ କରି ଘୃଣାଚକ୍ଷୁରେ ଦେଖିବେ; ତେଣୁ ସେ ରାଜାଙ୍କର ପ୍ରଣୟଭାଗିନୀ ହୋଇ ପାରିବ ନାହିଁ ।" ଏପରି ମୀମାଂସା କରି ଅସୂୟାପରତନ୍ତ୍ରା ମହର୍ଷୀଗଣ ଅସହାୟା ବ୍ରାହ୍ମଣକନ୍ୟାକୁ ନାପିତକନ୍ୟାର ଉପଯୋଗୀ କର୍ମରେ ନିଯୁକ୍ତ କଲେ । ବିନ୍ଦୁଷାର ମଧ୍ୟ ସର୍ବଦା ରାଜକାର୍ଯ୍ୟନିରତ ରହି ସୁଭଦ୍ରାଙ୍ଗୀ ବିଷୟ ଏକାବେଳକେ ବିସ୍ମୃତ ହୋଇଥିଲେ ।

ଅପ୍ରୀତିପ୍ରଦଜନବରିହୃତା କରୁଣାସ୍ପଦା ସୁଭଦ୍ରାଙ୍ଗୀ ଏତାଦୃଶ ହୀନଜନୋଚିତ କାର୍ଯ୍ୟର ଭାର ଅଗତ୍ୟା ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲେ । ସେଥିରେ ସେ ଏପରି ବିସ୍ମୟଜନକ ନୈପୁଣ୍ୟଲାଭ କରିଥିଲେ ଯେ, ଅବଶେଷରେ ଦିନେ ସେ ରାଜାଙ୍କର କ୍ଷୌରକାର୍ଯ୍ୟ ସମାପନ କରିବାକୁ ଅଦକ୍ଷ ହୋଇଥିଲେ । ରାଜା ତାଙ୍କର ପରିଚର୍ଯ୍ୟା ଓ କାର୍ଯ୍ୟକୁଶଳତାରେ ଏପରି ସନ୍ତୁଷ୍ଟ ହୋଇଥିଲେ ଯେ, ତାଙ୍କର ଅଭୀଷ୍ଟ ପୁରସ୍କାର ପ୍ରାର୍ଥନା କରିବାକୁ ଆଦେଶ କରିଥିଲେ । ସୁଭଦ୍ରାଙ୍ଗୀ ଅବସର ବୁଝି ଲଜ୍ଜାବିନତବଦନରେ ପିତାଙ୍କର ଅଭିପ୍ରାୟ ଜ୍ଞାପନ କରିଥିଲେ । ମୌର୍ଯ୍ୟନରପତି ହୀନଜାତୀୟା ପରିଚାରିକା ଜ୍ଞାନ କରି ଏତାଦୃଶ ଧୃଷ୍ଟତାମୂଳକ ଉଚ୍ଚାଭିଳାଷ ଜନ୍ମଗ୍ରହରେ ଅନ୍ୟ କୌଣସି ଅଭିଳଷିତ ପୁରସ୍କାର ପ୍ରାର୍ଥନା କରିବାକୁ ଆଦେଶ କରିଥିଲେ । ସେହିମାନିନୀ ରାଜାଙ୍କର ଅଭିପ୍ରାୟ ବୁଝିପାରି ତତ୍କ୍ଷଣାତ୍ ସ୍ୱୀୟ ଆଭିଜାତ୍ୟଗୌରବ ସ୍ମରଣ କରି କହିଥିଲେ, "ମହାରାଜ, ମୁଁ ହୀନଜାତୀୟା ନୁହେଁ । ମହର୍ଷୀମାନଙ୍କ ଅନ୍ତର ବଶବର୍ତ୍ତିନୀ ହୋଇ ମୁଁ ଏତାଦୃଶ ଜାତକକ୍ଷୋଚିତ କାର୍ଯ୍ୟରେ ପ୍ରବୃତ୍ତ ହେବାକୁ ବାଧ୍ୟ ହୋଇଅଛି । ରାଜମହର୍ଷୀ ହେବି ବୋଲି ପିତା ସ୍ୱୀୟ କୁଳମର୍ଯ୍ୟାଦାରେ ଜଳାଞ୍ଜଳି ଦେଇ ମୋତେ ଆପଣଙ୍କ ହସ୍ତରେ ଅର୍ପଣ କରିଅଛନ୍ତି । ସେ ଚମ୍ପାପୁରବାସୀ ଜନୈକ ବ୍ରାହ୍ମଣସୁ

ବ୍ରାହ୍ମଣ ।" ପଦାହତ ଫଣିଗ ସଦୃଶ ସୁଭଦ୍ରାଙ୍ଗୀ ରୋଷକ୍ଷୁବ୍ଧାବନତମୁଖୀ ହୋଇ ଏହି ବାକ୍ୟାବଳୀ ଉଚ୍ଚାରଣ କରିବା ମାତ୍ରେ ତଡ଼ିତ୍‌ପ୍ରବାହ ପରି ସହସା ସମସ୍ତ ବୃତ୍ତାନ୍ତ ରାଜାଙ୍କ ମାନସପଟରେ ସମ୍ୟକ୍ ପ୍ରତିଫଳିତ ହୋଇଥିଲା । ସ୍ୱୀୟ ଅନବଧାନତାବଶତଃ ବ୍ରାହ୍ମଣକନ୍ୟା ଏପରିଭାବରେ ଉପେକ୍ଷିତା ଓ ଅବଜ୍ଞାତା ହୋଇଅଛି ଏବଂ ମହିଷୀମାନେ ବିଦ୍ୱେଷକବଳିତ ତାହାକୁ ଏପରି ନୀଚକର୍ମରେ ନିଯୁକ୍ତ କରିଅଛନ୍ତି, ଜାଣି ରାଜା ନିତାନ୍ତ ମର୍ମାହତ ଓ ଅନୁତପ୍ତ ହୋଇଥିଲେ । ଏପରି ଅବସ୍ଥାରେ ସୁଭଦ୍ରାଙ୍ଗୀର ପ୍ରସ୍ତାବରେ ଆଗ୍ରହସହକାରେ ସମ୍ମତି ପ୍ରକାଶ କରିବାକୁ ରାଜା ମୁହୂର୍ତ୍ତେ ସୁଦ୍ଧା ବିଳମ୍ବ କରି ନ ଥିଲେ । ଅଚିରେ ବିହିତ ବିଧାନରେ ସୁଭଦ୍ରାଙ୍ଗୀର ପାଣିଗ୍ରହଣ କରି ବିନ୍ଦୁସାର ଆପଣାକୁ ଏତାଦୃଶୀ ଅଲୋକସାମାନ୍ୟା ସୁନ୍ଦରୀର ସ୍ୱର୍ଗୀୟ ପ୍ରେମର ଅଧିକାରୀ ଜାଣି ଜୀବନକୁ ଧନ୍ୟ ମଣିଲେ । କଥିତ ଅଛି, ରାଜାନୁଗ୍ରହର ନିଦର୍ଶନସ୍ୱରୂପ ସୁଭଦ୍ରାଙ୍ଗୀ କାଳକ୍ରମେ ପଟ୍ଟମହିଷୀ ହୋଇଥିଲେ । ସେ ଦୁଇ ପୁତ୍ର ପ୍ରସବ କରିଥିଲେ । ନବଜାତ କୁମାରର ମୁଖପଦ୍ମ ଦର୍ଶନ କରି ଜନନୀର ସବୁ ଶୋକ ଦୂର ହୋଇଥିଲା ବୋଲି ଜ୍ୟେଷ୍ଠର ନାମ ଅଶୋକ ଓ କନିଷ୍ଠର ନାମ ବୀତଶୋକ ହୋଇଥିଲା । ଏଥିରୁ ଅନୁମିତ ହେଉଅଛି ଯେ, ସେ ବୋଧ ହୁଏ ସନ୍ତାନଲାଭର ପୂର୍ବରୁ ପଟ୍ଟମହିଷୀପଦ ଲାଭ କରି ନ ଥିଲେ । ସମ୍ଭବତଃ ରାଜପ୍ରଣୟାଧିକାରିଣୀ ହେଲା ପରେ ସୁଦ୍ଧା ସପତ୍ନୀମାନଙ୍କଠାରୁ ତାହାଙ୍କୁ ସମୟ ସମୟରେ ଲାଞ୍ଛନା ଓ ନିର୍ଯ୍ୟାତନା ସହ୍ୟ କରିବାକୁ ପଡ଼ୁଥିଲା; ସେହି କାରଣରୁ ରାଣୀ ସୁଭଦ୍ରାଙ୍ଗୀ ବୋଧ ହୁଏ ସର୍ବଦା ଶୋକୋଦ୍‌ବିଗ୍ନା ଥିଲେ ।

ଅଶୋକ ପିତାଙ୍କର ସ୍ନେହଭାଜନ ହୋଇ ପାରି ନ ଥିଲେ । କ୍ରୂରସ୍ୱଭାବବଶତଃ ସର୍ବସାଧାରଣଙ୍କର ବିରକ୍ତିଭାଜନ ହୋଇଥିଲେ ବୋଲି ସେ 'ଚଣ୍ଡାଶୋକ' ନାମରେ ଅଭିହିତ ହୋଇଥିଲେ । ଅଶୋକଙ୍କର ଶିକ୍ଷାର ଭାର ପିଙ୍ଗଳବତ୍ସ ନାମକ ଜନୈକ ଜ୍ୟୋତିର୍ବିଦଙ୍କ ହସ୍ତରେ ଅର୍ପିତ ହୋଇଥିଲା । ସେହି ଜ୍ୟୋତିଃଶାସ୍ତ୍ରବିଶାରଦ ଅଶୋକଙ୍କର ଜନ୍ମ-

ପତ୍ରିକା ଗଣନା କରି କହିଥିଲେ, "ଏହି ରାଜକୁମାର ନିଶ୍ଚୟ ମୌର୍ଯ୍ୟ-ରାଜସିଂହାସନାଧିକାରୀ ହେବ ।" ଏହି ଭବିତବ୍ୟତା ଶୁଣିବା ଦିନୁ ଅଶୋକଙ୍କ ହୃଦୟ-କ୍ଷେତ୍ରରେ ବଳବତୀ ରାଜ୍ୟଲିପ୍ସାର ବୀଜ ଅଙ୍କୁରିତ ହୋଇଥିଲା । ବୟୋବୃଦ୍ଧି ସଙ୍ଗେ ସଙ୍ଗେ ସ୍ୱାଭାବିକ ଉଗ୍ରତା ଓ କାର୍ଯ୍ୟ-ଦକ୍ଷତା କ୍ରମେ କ୍ରମେ ତାଙ୍କ ଚରିତ୍ରରେ ପରିସ୍ଫୁଟ ହେବାକୁ ଲାଗିଲା । ଏଥିରେ ବିନ୍ଦୁସାର ତାହାଙ୍କର ରୂପହୀନତା ଓ ବାଲ୍ୟଚପଳତା ବିସ୍ମୃତ ହୋଇ ବିଭିନ୍ନ ବିଷୟରେ ତାହାଙ୍କର ଯୋଗ୍ୟତା ଦର୍ଶନ କରି କ୍ରମେ ଶରଜ୍ଞ ପରବର୍ତ୍ତିନରେ ତାହାଙ୍କୁ ପ୍ରୀତିଚକ୍ଷୁରେ ଦେଖିବାକୁ ଲାଗିଲେ । ଏହି ସମୟରେ ସୁଦୂରସ୍ଥିତ ପଞ୍ଚନଦ ପ୍ରଦେଶାନ୍ତର୍ଗତ ତକ୍ଷଶିଳାରେ ପ୍ରକୃତିପୁଞ୍ଜ ବିଦ୍ରୋହାଚରଣ କରିଥିଲେ । ଅଶୋକଙ୍କ ଭିନ୍ନ ଅନ୍ୟ କେହି ଏ ବିଦ୍ରୋହ ଦମନରେ କ୍ଷମ ନୁହନ୍ତି ବୋଲି ବିନ୍ଦୁସାର ସିଦ୍ଧାନ୍ତ କରି ତାହାଙ୍କୁ ସ୍ୱୀୟ ପ୍ରତିନିଧିସ୍ୱରୂପ ତକ୍ଷଶିଳାକୁ ପ୍ରେରଣ କଲେ । ଅଶ୍ୱ, ହସ୍ତୀ, ପଦାତିକ ପ୍ରଭୃତି ସମଭିବ୍ୟାହାରରେ ଅଶୋକ ତକ୍ଷଶିଳାରେ ଉପସ୍ଥିତ ହୋଇ ତତ୍ରତ୍ୟ ଅଧିବାସିବର୍ଗଙ୍କ କର୍ତ୍ତୃକ ଅଦ୍ଭୁତ ଓ ସମ୍ମାନିତ ହୋଇଥିଲେ । ତଦନନ୍ତର ତାହାଙ୍କର ଯତ୍ନ ଓ କୌଶଳ ଦ୍ୱାରା ବିଦ୍ରୋହାନଳ ସତ୍ୱରରେ ନିର୍ବାପିତ ହୋଇଥିଲା । ବିଦ୍ରୋହିଦଳର ଅଧିନାୟକ 'କୁଞ୍ଜରକର୍ଣ୍ଣ' ଅଶୋକଙ୍କର ଅନୁଗତ୍ୟ ସ୍ୱୀକାର କଲେ ।

ବିନ୍ଦୁସାରଙ୍କ ଅନ୍ୟ ମହିଷୀର ସୁସୀମ ନାମକ ଗୋଟିଏ ପୁତ୍ର ଥିଲେ । ସୁସୀମ ବିନ୍ଦୁସାରଙ୍କର ସର୍ବଜ୍ୟେଷ୍ଠ ସନ୍ତାନ; ସୁତରାଂ ନ୍ୟାୟତଃ ମୌର୍ଯ୍ୟସିଂହାସନର ଅଧିକାରୀ । ଅଶୋକ ଷୋଡଶସ୍ତୁ ଦକ୍ଷତାସହକାରେ ତକ୍ଷଶିଳା ଶାସନକାର୍ଯ୍ୟରେ ଅଭିଜ୍ଞତା ଲାଭ କରି ପିତାଙ୍କର ପ୍ରିୟପାତ୍ର ହୋଇଥିଲେ । ତାହା ଦେଖି ସୁସୀମ ଆପଣାର ଶାସନନୈପୁଣ୍ୟର ପରିଚୟ ଦେବା ମାନସରେ ରାଜଧାନୀର କେନ୍ଦ୍ରିକ ଶାସନବ୍ୟାପାରରେ ଯଥେଚ୍ଛା ହସ୍ତକ୍ଷେପ କରିବାକୁ ଲାଗିଲେ ଏବଂ ସେଥିରେ ଏପରି ବିଶୃଙ୍ଖଳା ଘଟାଇଥିଲେ ଯେ, ପ୍ରଧାନ ସଚିବ ରାଧାଗୁପ୍ତ ପୁନଃପୁନଃ ଏତାଦୃଶ ତ୍ରୁଟି ସଂଶୋଧନ କରିବାକୁ ସମର୍ଥ ହୋଇ ଅବଶେଷରେ କ୍ଲାନ୍ତ

ବିଦ୍ରୋହ ସହିତ ସୁସୀମଙ୍କର ସ୍ୱେଚ୍ଛାଚାରିତା ବିଷୟ ରାଜାଙ୍କୁ ଜ୍ଞାପନ କରୁଥିଲେ । ମହାରାଜ ବିନ୍ଦୁସାର ମଧ୍ୟ ସୁସୀମଙ୍କର ରାଜକାର୍ଯ୍ୟରେ ଅପଥା ହସ୍ତକ୍ଷେପ ନିବାରଣର ଉପାୟାନ୍ତର ନ ଦେଖି ପରିଶେଷରେ ଉଲ୍ଲିଖିତ ଓ ରାଧାଗୁପ୍ତ ପ୍ରଭୃତି ଅମାତ୍ୟବର୍ଗଙ୍କ ମନ୍ତ୍ରଣାନୁସାରେ ଅଶୋକଙ୍କୁ ପାଟଳିପୁତ୍ରକୁ ପ୍ରତ୍ୟାବର୍ତ୍ତନ କରିବାକୁ ଆଦେଶ ଦେଇଥିଲେ ଏବଂ ସୁସୀମଙ୍କର ରାଜ୍ୟଶାସନ-ରୀତି ସାର ପରିତୃପ୍ତି ସମ୍ପାଦନାର୍ଥ ତାହାଙ୍କୁ ତକ୍ଷଶିଳାକୁ ପ୍ରେରଣ କରିଥିଲେ । ଏଥି ଉତ୍ତାରୁ ଅଶୋକଙ୍କୁ ବହୁକାଳ ପାଟଳିପୁତ୍ରରେ ଅବସ୍ଥାନ କରିବାକୁ ହୋଇଥିଲା । ସେ ପୁନର୍ବାର ଉଜ୍ଜୟିନୀର ପ୍ରାଦେଶିକ ଶାସନକର୍ତ୍ତାସ୍ୱରୂପ ସେଠାକୁ ପ୍ରେରିତ ହୋଇଥିଲେ । ଅଶୋକ ଉଜ୍ଜୟିନୀରେ ଓ ସୁସୀମ ତକ୍ଷଶିଳାରେ ଅବସ୍ଥାନ କରୁଥିବା ସମୟରେ ବିନ୍ଦୁସାରଙ୍କର ମୃତ୍ୟୁ ହୋଇଥିଲା । ଅଶୋକ ପିତାଙ୍କର ପରଲୋକଗମନବାର୍ତ୍ତା ଶୁଣିବା ମାତ୍ରେ ଅନୁଚରବର୍ଗ ସମଭିବ୍ୟାହାରରେ ରାଜସିଂହାସନ ଅଧିକାର କରିବାକୁ ପାଟଳିପୁତ୍ର ନଗରକୁ ଆଗମନ କରିଥିଲେ ।

ଉଜ୍ଜୟିନୀରେ ଅବସ୍ଥାନ କରୁଥିବା ସମୟରେ ଅଶୋକ 'ଦେବୀ' ନାମ୍ନୀ ଏକ ଶ୍ରେଷ୍ଠୀକନ୍ୟାର ପାଣିପୀଡ଼ନ କରିଥିଲେ । ସମ୍ଭବତଃ ସେହି ଶ୍ରେଷ୍ଠୀକନ୍ୟା ସ୍ୱାମିଙ୍କର ନବସୌଭାଗ୍ୟସମୃଦ୍ଧିଭାଗିନୀ ହୋଇ ପାରି ନ ଥିଲେ । କାରଣ ଅଶୋକ ପାଟଳିପୁତ୍ର ଗମନ କଲାବେଳେ ତାଙ୍କୁ ସଙ୍ଗରେ ଘେନି ଯାଇ ନ ଥିଲେ । ନବୀନ ସମ୍ରାଟଙ୍କର ନବୀନ ସୁଖୈଶ୍ୱର୍ଯ୍ୟ ସମ୍ଭୋଗ କରି ପାରି ନ ଥିଲେ ମଧ୍ୟ ସିଂହଳରେ ବୌଦ୍ଧ ଧର୍ମର ପ୍ରଥମ ପ୍ରବର୍ତ୍ତକ ଓ ପ୍ରଚାରୟିତା ମହେନ୍ଦ୍ର ଓ ତଦୀୟ ସହୋଦରା ସଂଘମିତ୍ରାଙ୍କର ଜନନୀ ବୋଲି ସେ ବୌଦ୍ଧଗ୍ରନ୍ଥାଦିରେ ଓ ଦାକ୍ଷିଣାତ୍ୟର ବୌଦ୍ଧଧର୍ମାବଲମ୍ବୀମାନଙ୍କ ନିକଟରେ ଚିରସ୍ମରଣୀୟା ଏବଂ ବରଣୀୟା ହୋଇଅଛନ୍ତି ।

ବର୍ତ୍ତମାନ ଅମ୍ଭେମାନେ ବିନ୍ଦୁସାରଙ୍କର ଶାସନାଧୀନରେ ଥିବା ପ୍ରଜାବୃନ୍ଦଙ୍କର ଅବସ୍ଥା ବିଷୟ ସମ୍ୟକ ଆଲୋଚନା କରି ପ୍ରବନ୍ଧର

ଉପସଂହାର କରିବୁଁ । ଗ୍ରୀକ୍ ଦୂତ ଓ ଅନ୍ୟାନ୍ୟ ଭ୍ରମଣକାରୀମାନଙ୍କର ଭାରତବର୍ଷ ବିବରଣରୁ ଜଣାଯାଏ ଯେ, ମଧ୍ୟଯୁଗରେ ଭାରତ ମୌର୍ଯ୍ୟ ରାଜଗଣଙ୍କ ଶାସନାଧୀନରେ ଉନ୍ନତିର ଉଚ୍ଚ ଶିଖରରେ ଆରୋହଣ କରି-ଥିଲା । ବିନ୍ଦୁସାର ମୌର୍ଯ୍ୟ ସାମ୍ରାଜ୍ୟର ସ୍ଥାପୟିତା ଚନ୍ଦ୍ରଗୁପ୍ତଙ୍କର ଉପଯୁକ୍ତ ସନ୍ତାନ ଥିଲେ । ତାହାଙ୍କର 'ଅମିତ୍ରଘାତ' ଉପାଧିରୁ ଅନୁମିତ ହୁଏ ଯେ, ସେ ବହୁ ଶତ୍ରୁ ନିଧନପୂର୍ବକ ରାଜ୍ୟକୁ ଅସପତ୍ନ କରିଥିଲେ । ପିତୃପରିତ୍ୟକ୍ତ ସାମ୍ରାଜ୍ୟ ସହିତ ବିନ୍ଦୁସାର ସ୍ୱୀୟ ବାହୁ-ବଳାର୍ଜିତ କେଉଁ କେଉଁ ରାଜ୍ୟ ସଂଯୋଜିତ କରିଥିଲେ, ତହିଁର ଶୃଙ୍ଖଳାବଦ୍ଧ ପ୍ରମାଣପୂର୍ଣ୍ଣ ଇତିବୃତ୍ତ ଅବଗତ ନ ହେବାଯାଏ ତହିଁର ପ୍ରସଙ୍ଗ ଉତ୍ଥାପନ ନ କରି ପ୍ରତ୍ନତତ୍ତ୍ୱବିଦ୍‌ଙ୍କର ଅବସ୍ଥା ପର୍ଯ୍ୟାଲୋଚନା-ପୂର୍ବକ ଅମ୍ଭେମାନେ ବିନ୍ଦୁସାରଙ୍କର ଶାସନନୈପୁଣ୍ୟ ଓ ସାମ୍ରାଜ୍ୟ ସମୃଦ୍ଧିର ଉଲ୍ଲେଖ କରି ବିରତ ହେବୁଁ । ତେବେ ପ୍ରସଙ୍ଗାଗତ ବିଜୟ-ବ୍ୟାପାର ପର୍ଯ୍ୟାଲୋଚନାରେ ଅମ୍ଭେମାନେ ଅବନ୍ତୀ ରାଜ୍ୟ ସମ୍ବନ୍ଧରେ ଗୋଟିଏ ସାଧାରଣ ମୀମାଂସାରେ ଉପନୀତ ହେଉଁ । ପ୍ରାଚୀନ ଇତିହାସଜ୍ଞ ମହାତ୍ମା କର୍ଣ୍ଣେଲ ଟଡଙ୍କ ମତରେ ଉଜ୍ଜୟିନୀର ପ୍ରମାରବଂଶୀୟ ନରପତିଙ୍କ ସାହାଯ୍ୟାର୍ଥ ବାହ୍ଲୀକାଧିପତି ଗ୍ରୀକ୍‌ରାଜ ସେଲୁକସ୍ ଦଳେ ଗ୍ରୀକ୍‌ସେନା ପ୍ରେରଣ କରିଥିଲେ । ଏଥିରୁ ସ୍ପଷ୍ଟ ଅନୁମିତ ହେଉଅଛି ଯେ, ଚନ୍ଦ୍ରଗୁପ୍ତଙ୍କର ଭାରତବ୍ୟାପୀ ବିଜୟ ଓ ରାଜ୍ୟବିସ୍ତାର ମଧ୍ୟରେ ଉଜ୍ଜୟିନୀର ପ୍ରାଚୀନ ରାଜବଂଶ ଏହାର ସ୍ୱତନ୍ତ୍ରତା ରକ୍ଷା କରିବାକୁ ସବିଶେଷ ଉଦ୍ୟୋଗୀ ଥିଲେ । ସମ୍ଭବତଃ ଚନ୍ଦ୍ରଗୁପ୍ତଙ୍କ ସହିତ ସନ୍ଧି-ସୂତ୍ରରେ ଆବଦ୍ଧ ହେବା ପୂର୍ବରୁ ସେଲୁକସ ଚନ୍ଦ୍ରଗୁପ୍ତଙ୍କ କବଳରୁ ସୁପ୍ରସିଦ୍ଧ ଅବନ୍ତୀ ରାଜ୍ୟ ରକ୍ଷା କରିବା ନିମନ୍ତେ ସ୍ୱୀୟ ସୈନ୍ୟ ସାହାଯ୍ୟ ପ୍ରେରଣ କରିଥିଲେ । ଏପରି ପ୍ରମାଣ କ୍ଷୁଦ୍ର ହେଲେ ମଧ୍ୟ ସାମାନ୍ୟ ନୁହେଁ, କାରଣ ଏହି ପ୍ରମାଣବଳରେ ଅମ୍ଭେମାନେ ନିମ୍ନଲିଖିତ କତିପୟ ସିଦ୍ଧାନ୍ତରେ ଉପନୀତ ହେଉଁ । ବିନ୍ଦୁସାରଙ୍କ ଶାସନ ସମୟରେ ଅବନ୍ତୀ ମୌର୍ଯ୍ୟ ସାମ୍ରାଜ୍ୟର ଅନ୍ତର୍ନିବିଷ୍ଟ ହୋଇ ତାହାର ପ୍ରାଚୀନ ରାଜଧାନୀ ଉଜ୍ଜୟିନୀ ନଗରୀ ସୁବିସ୍ତୃତ ଭାରତ ସାମ୍ରାଜ୍ୟର ଏକତମ

ପ୍ରାଦେଶିକ ଶାସନକେନ୍ଦ୍ରସ୍ୱରୂପ ନିର୍ଦ୍ଦିଷ୍ଟ ହୋଇଥିଲା । ସେ ଯାହା-ହେଉ, ବିନ୍ଦୁସାରଙ୍କର ବିଜୟପ୍ରସଙ୍ଗ ଏଠାରେ ଉତ୍ଥାପନ ନ କଲେ ମଧ୍ୟ ଚନ୍ଦ୍ରଗୁପ୍ତ ଯେଉଁ ସମୟରେ ନନ୍ଦରାଜ୍ୟ ଅଧିକାର ଓ ତତ୍‌ନିକଟର କତିପୟ ଅସଂଯତ ଓ ପରସ୍ପର ବିବଦମାନ ରାଜ୍ୟ ଜୟ କରି ସୁଦୃଢ଼ତର ମୌର୍ଯ୍ୟସାମ୍ରାଜ୍ୟର ଭିତ୍ତି ସ୍ଥାପନ କରିଥିଲେ, ସେହି ସମୟରେ ଭାରତର ତଦାନୀନ୍ତନ ବିକ୍ଷିପ୍ତ ରାଜ୍ୟଗୁଡ଼ିକ ମଧ୍ୟ ସମବେତ ଚେଷ୍ଟା-ଦ୍ୱାରା ସାଧାରଣ ଶତ୍ରୁ ନିବାରଣ କରିବାର କୌଣସି ଚିହ୍ନ ସୁଦ୍ଧା ଲକ୍ଷିତ ହୁଏ ନାହିଁ । ଏହି କାରଣରୁ ଅଲେକ୍‌ଜାଣ୍ଡାରଙ୍କ ତୁଲ୍ୟ ବହିଃଶତ୍ରୁ ମଧ୍ୟ ସ୍ୱୀୟ ପଥଶ୍ରାନ୍ତ ଓ ଅସନ୍ତୁଷ୍ଟ ସୈନ୍ୟ ନେଇ ପଞ୍ଚନଦ ପ୍ରଦେଶର ଅସଙ୍ଘଟିତ ରାଜ୍ୟଗୁଡ଼ିକ ଅନାୟାସରେ ଜୟ କରିବାକୁ ସମର୍ଥ ହୋଇ-ଥିଲେ । ଆମ୍ଭେମାନେ ବୌଦ୍ଧଗ୍ରନ୍ଥରୁ ଅବଗତ ହେଉଁ ଯେ, ସେ ସମୟରେ ଅନେକଗୁଡ଼ିଏ ରାଜ୍ୟରେ ରାଜା ପରିବର୍ତ୍ତେ ପ୍ରଜାତନ୍ତ୍ର-ଶାସନପ୍ରଣାଳୀ ପ୍ରଚଳିତ ଥିଲା ଓ ସେଗୁଡ଼ିକର ଶାସନକାର୍ଯ୍ୟ ସୁଚାରୁ-ରୂପେ ନିର୍ବାହିତ ହେଉଥିଲା । ଏହିପରି ବିଭିନ୍ନ ପ୍ରକୃତିବିଶିଷ୍ଟ ଓ ବିଭିନ୍ନ ଭାବରେ ଗଠିତ ରାଜ୍ୟସମୂହର ବିଜୟସାଧନ ଜନ୍ମରୁ ମହାରାଜ ଚନ୍ଦ୍ରଗୁପ୍ତ ସେମାନଙ୍କୁ ସ୍ୱାର୍ଥସୂତ୍ରରେ ଗ୍ରଥିତ ଓ ଗୋଟିଏ ବିରାଟ ସାମ୍ରାଜ୍ୟର ଅଙ୍ଗୀଭୂତ କରିବାର ଉପଯୋଗୀ ଯଥେଷ୍ଟ ସମୟ ପାଇ ନ ଥିଲେ; କାରଣ ବିଜୟଲବ୍ଧ ବିକ୍ଷିପ୍ତ ସାମ୍ରାଜ୍ୟସମୂହକୁ ସୁଶୃଙ୍ଖଳ କରି ଗୋଟିଏ କେନ୍ଦ୍ରିକ ଶାସନାଧୀନରେ ଆଣିବା ପୂର୍ବରୁ ତାହାଙ୍କୁ ମୃତ୍ୟୁ-ମୁଖରେ ପତିତ ହେବାକୁ ହୋଇଥିଲା । ଆମ୍ଭେମାନେ ତଦାନୀନ୍ତନ ଇତିବୃତ୍ତର ତିମିରାଲୋକରେ ଯତ୍‌ସାମାନ୍ୟ ଅବଗତ ହେଉଁ; ସେଥିରୁ ପ୍ରତୀତ ହୁଏ ଯେ, ବିନ୍ଦୁସାର ଅତିଶୟ ଦକ୍ଷତାସହକାରେ ବିଭିନ୍ନ ପ୍ରଦେଶର ବିଭିନ୍ନ ପ୍ରଜାଶକ୍ତିକୁ ଗୋଟିଏ ସୁନିୟନ୍ତ୍ରିତ ରାଜ-ଶକ୍ତିର ସହକାରୀରୂପେ ପରିଗୃହୀତ କରି ପ୍ରଜାସାଧାରଣଙ୍କର କଲ୍ୟାଣ ସାଧନୋଦ୍ଦେଶ୍ୟରେ ଅହରହ ନିରବଚ୍ଛିନ୍ନରେ କାଳଯାପନ କରୁ-ଥିଲେ । ଏହିପରି ଶାସ୍ୟ ଓ ଶାସକର ସ୍ୱାର୍ଥସମନ୍ୱୟ ଓ ଇଚ୍ଛାକାଙ୍କ୍ଷାର

ଶାନ୍ତ୍ୟ ବିଧାନ କରି ବିନ୍ଦୁସାର ପ୍ରଜାବର୍ଗଙ୍କର ଅନ୍ତରିକ ସହାନୁଭୂତି ଲାଭ କରିବାକୁ ସମର୍ଥ ହୋଇ ରାଜୋପାଧିର ସାର୍ଥକତା 'ସମ୍ପାଦନ କରି ଯାଇଅଛନ୍ତି । ସେ ଉପଯୁକ୍ତ ପୁତ୍ର ବା ନିକଟ ଆତ୍ମୀୟବର୍ଗଙ୍କ ଉପରେ ପ୍ରଜାଶାସନର ଘୋର ଦାୟିତ୍ୱପୂର୍ଣ୍ଣ ଭାର ଅର୍ପଣ କରି ସୁଦ୍ଧା ନିଶ୍ଚିନ୍ତ ରହୁ ନ ଥିଲେ । ପ୍ରତ୍ୟକ୍ଷରେ ବା ପରୋକ୍ଷରେ, ପ୍ରକାଶ୍ୟରେ ବା ଅପ୍ରକାଶ୍ୟରେ ସର୍ବଦା ରାଜପୁରୁଷଙ୍କର କାର୍ଯ୍ୟପରମ୍ପରା ପର୍ଯ୍ୟବେକ୍ଷଣ କରୁଥିଲେ । ବିଶେଷତଃ କୌଣସି କାର୍ଯ୍ୟକୁ ସେ ସ୍ୱୀୟ ବ୍ୟକ୍ତିଗତ ତତ୍ତ୍ୱାବଧାନର ଅଯୋଗ୍ୟ ବା ତୁଚ୍ଛ ଜ୍ଞାନ କରୁ ନ ଥିଲେ । ବିଶାଳ ସାମ୍ରାଜ୍ୟଗଠନର ପ୍ରଧାନ ଉପକରଣାବଳୀ ମଧ୍ୟରେ ଅର୍ଥାଗମ ଉପାୟ ମଧ୍ୟ ଉପେକ୍ଷଣୀୟ ନୁହେ । କୃଷିସମ୍ଭୂତ ଦ୍ରବ୍ୟର ଚତୁର୍ଥାଂଶ ମାତ୍ର ରାଜକରସ୍ୱରୂପ ଗୃହୀତ ହେଉଥିଲା । ସାମ୍ରାଜ୍ୟ ମଧ୍ୟରେ ସର୍ବତ୍ର ପଲ୍ଲୀ ଓ ସମାଜ ପ୍ରଚଳିତ ଥିବାରୁ ଗ୍ରାମ୍ୟ କାର୍ଯ୍ୟାବଳୀ ସୁଚାରୁରୂପେ ସମ୍ପନ୍ନ ହେଉଥିଲା । ମେଗାସ୍ଥିନିସଙ୍କର 'India'ରୁ ଜଣାଯାଏ ଯେ, ଗ୍ରାମୀନ ବା ମଣ୍ଡଳର ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟରେ ସୁଯୋଗ୍ୟ ଓ ସୁଚରିତ୍ର ବ୍ୟକ୍ତି ନିଯୁକ୍ତ ହେଉଥିବାରୁ ଦୁଇ ସହସ୍ର ବର୍ଷ ପୂର୍ବେ ସୁଦ୍ଧା ପ୍ରାଚୀନ ଭାରତର ହିନ୍ଦୁସମାଜ ଏପରି ସୁନିୟନ୍ତ୍ରିତ ଓ ସଭ୍ୟତୋର୍ଦ୍ଧାପ୍ତ ହୋଇ ତଦାନୀନ୍ତନ ସଭ୍ୟଜଗତର ପ୍ରତିଯୋଗିତାରେ ଦଣ୍ଡାୟମାନ ହେବାକୁ ଓ ହିନ୍ଦୁମାନଙ୍କର ଖ୍ୟାତି ଅର୍ଜନ କରିବାକୁ ସମର୍ଥ ହୋଇଥିଲେ । ତଦାନୀନ୍ତନ ଭାରତବର୍ଷ ଏକଶତ ଅଷ୍ଟାଦଶ ରାଜ୍ୟରେ ବିଭକ୍ତ ହୋଇଥିଲା । ନଦୀ ଓ ସାଗରର କୂଳବର୍ତ୍ତୀ ନଗରସମୂହର ଗୃହ-ଗୁଡ଼ିକ ସାଧାରଣତଃ କାଷ୍ଠନିର୍ମିତ ହେଉଥିଲା; କିନ୍ତୁ ଉଚ୍ଚଭୂମି, ଅଧିତ୍ୟକା ବା ପର୍ବତୋପକଣ୍ଠବର୍ତ୍ତୀ ନଗରର ଭବନସମୂହ ପ୍ରସ୍ତରଦ୍ୱାରା ନିର୍ମିତ ହେଉଥିଲା । ତତ୍‌କାଳୀନ ଭାରତୀୟମାନଙ୍କ ସମ୍ବନ୍ଧରେ ନାନାବିଧ ବିଷୟର ସମ୍ୟକ୍ ପର୍ଯ୍ୟାଲୋଚନା କଲେ ଦେଖାଯାଏ ଯେ, ସେମାନେ ପରମ ସୁଖଶାନ୍ତିରେ କାଳାତିପାତ କରୁଥିଲେ । ଉଦାହରଣସ୍ୱରୂପ ଆମ୍ଭେମାନେ ସେମାନଙ୍କର ଅନ୍ତର ବ୍ୟବହାରସଂକ୍ରାନ୍ତ ଦୁଇ ଗୋଟି ସାଧାରଣ ରୀତି ନୀତି ଓ ଅଭ୍ୟନ୍ତରୀଣ ଅବସ୍ଥା ଏଠାରେ ଉଲ୍ଲେଖ କଲୁଁ । ସମ୍ଭ୍ରାନ୍ତ

ବ୍ୟକ୍ତିମାନେ ସ୍ୱର୍ଣ୍ଣଖଚିତ ମୂଲ୍ୟ ବସ୍ତ୍ର ବ୍ୟବହାର କରୁଥିଲେ । ସାଧାରଣ ଲୋକମାନେ ଖଣ୍ଡିଏ ମାତ୍ର କାର୍ପାସ ବସ୍ତ୍ର ପରିଧାନ କରୁଥିଲେ ଏବଂ ଉତ୍ତରୀୟ ବସ୍ତ୍ରର କିୟଦଂଶଦ୍ୱାରା ମସ୍ତକ ଆବରଣ କରି ଅବଶିଷ୍ଟାଂଶ ପୃଷ୍ଠ ଦେଶରେ ଲମ୍ବିତ କରି ଦେଉଥିଲେ । ଛତ୍ର ଓ ଶ୍ୱେତଚର୍ମନିର୍ମିତ ପାଦୁକା ଶିଷ୍ଟ ପରିଚ୍ଛଦ ମଧ୍ୟରେ ପରିଗଣିତ ହେଉଥିଲା ଏବଂ ଅବସ୍ଥାନୁସାରେ ସମସ୍ତେ ତାହା ବ୍ୟବହାର କରି ପାରୁଥିଲେ । କ୍ରୀତଦାସପ୍ରଥା ରାଜାନୁ-ଶାସନରେ ନିଷିଦ୍ଧ ନ ଥିଲେ ମଧ୍ୟ ପ୍ରକାଶ୍ୟଭାବରେ ଦାସବିକ୍ରୟ ହେଉ ନ ଥିଲା । ବିବାହବେଳେ କନ୍ୟାର ସ୍ୱୟମ୍ବର ପ୍ରଥା ହିଁ ସମୀଚୀନ ବିବେଚିତ ହେଉ-ଥିଲା । ତତ୍କାଳୀନ ଭାରତୀୟ ତନ୍ତୁବାୟଗଣ ସୁଚିକ୍କଣ ବସ୍ତ୍ର ବୟନ କରି-ବାରେ ବିଶେଷ ନୈପୁଣ୍ୟ ପ୍ରଦର୍ଶନ କରୁଥିଲେ । ବର୍ତ୍ତମାନ ବାରାଣସୀ ପ୍ରଭୃତି ଅଞ୍ଚଳରେ ଯେପରି ଜରିଦ୍ୱାରା ସୂକ୍ଷ୍ମ କାରୁକାର୍ଯ୍ୟଖଚିତ ରେଶମୀ ବସ୍ତ୍ର ନିର୍ମିତ ହେଉଅଛି, ବହୁଶତାବ୍ଦୀ ପୂର୍ବରୁ ଭାରତବାସୀଗଣ ସେ ବିଷୟରେ ବିଶେଷ ଶିଳ୍ପକୌଶଳ ପ୍ରଦର୍ଶନ କରି ଆସିଅଛନ୍ତି । ବିନ୍ଦୁସାରଙ୍କର ଶାସନ ସମୟରେ ଭାରତରେ ପ୍ରାୟ ସର୍ବତ୍ର ଏକତ୍ୱବୋଧ ଜାତୀୟ ଜୀବନ ଓ ଅନ୍ତର୍ବିପ୍ଳବ ପରିଶୂନ୍ୟତା ପରିଦୃଷ୍ଟ ହେଉଥିଲା । ପଞ୍ଚବିଂଶତି ବର୍ଷବ୍ୟାପୀ ପ୍ରଜାରଞ୍ଜନକାରୀ ସୁଶାସନ ଉତ୍ତାରୁ ଖ୍ରୀ: ପୂ: ୨୭୨ ଅବ୍ଦରେ ବିନ୍ଦୁସାର ମାନବଲୀଳା ସମ୍ବରଣ କରିଅଛନ୍ତି ସତ, କିନ୍ତୁ ତାହାଙ୍କର ନାମ ମଧ୍ୟ ଭାରତୀୟ ଯୁଗର ଇତିହାସରେ ଚିରସ୍ମରଣୀୟ ହୋଇ ରହିଥିବ । ପ୍ରଜାରଞ୍ଜନ-ପୁଣ୍ୟବଳରେ ଭାରତର ଦେବୋପମ ନରପତିଗଣ ଏତାଦୃଶ ଅମରତା ଲାଭ କରି ଯାଇଅଛନ୍ତି ଯେ, ପ୍ରତ୍ୟେକ ଭାରତବାସୀର ହୃଦୟରେ ସେମାନଙ୍କର ପବିତ୍ର ନାମ ଅନନ୍ତ କାଳ ପର୍ଯ୍ୟନ୍ତ ଜାଗ୍ରତ ରହିଥିବ । ଏହି ଅବନତିର ଯୁଗରେ—ଅମୃତମୟ ସମୟରେ ସୁଦ୍ଧା ସେମାନଙ୍କର ସହୃଦୟତା ବିସ୍ମୃତ ହେବାର ନୁହେ, କାରଣ ଭାରତର ଇଦାନୀନ୍ତନ ରାଜନୈତିକ ଆକାଶରେ ସେମାନଙ୍କ ସମକକ୍ଷ ଉଜ୍ଜ୍ୱଳ ନକ୍ଷତ୍ର ଉଦିତ ହୋଇଅଛି କି ନାହିଁ, ସନ୍ଦେହ । ଏଥିର କାରଣ ଅନ୍ୱେଷଣ କରି

ଦେଖିଲେ ଜଣାଯିବ ଯେ, ଏଥିର ମୂଳ ଅମ୍ଭମାନଙ୍କର ଭାଗ୍ୟବିପର୍ଯ୍ୟୟ । ସୁତରାଂ ଆଂଶିକ ଆତ୍ମପ୍ରସାଦ ଲାଭ ଆଶାରେ ସ୍ୱଜାତୀୟ ଚନ୍ଦ୍ରଗୁପ୍ତଙ୍କର ସୁଖଦୁଃଖଭାଗୀ ମହାନୁଭବ ମହୀପାଳଗଣଙ୍କ ଚରିତ ଆଲୋଚନା କରିବା ଏବଂ ବିସ୍ମୃତପ୍ରାୟ ପ୍ରାଚୀନ ଭାରତ ଇତିବୃତ୍ତ ପାଠ କରିବା ଅମ୍ଭମାନଙ୍କର ଏକାନ୍ତ କର୍ତ୍ତବ୍ୟ ।

# କା'

৺ ଶ୍ରୀଯୁକ୍ତ କୃପାସିନ୍ଧୁ ମିଶ୍ର ଏମ୍. ଏ.

ଲେଖକ କୌଣସି କଥା କହିବାକୁ ଗଲାବେଳେ ତାହାକୁ ସାଧାରଣତଃ ତିନିଗୋଟି ବିଷୟରୁ କୌଣସି ଗୋଟିଏ ବିଷୟର ଅନ୍ତର୍ଭୁକ୍ତ କରିଥାନ୍ତି । ତାହା 'ସୁଖର' କଥା ବା 'ଦୁଃଖର' କଥା, ଅଥବା 'ଅଙ୍ଗେ ନିଭାଇବାର' କଥା ହୋଇଥାଏ । ଅମ୍ଭମାନଙ୍କର ଏହି 'କା' ବିଷୟଟି ସେହି ତୃତୀୟ ବିଷୟର ଅନ୍ତର୍ଭୁକ୍ତ ଅର୍ଥାତ୍ ଏହା ଅଙ୍ଗେ ନିଭେଇବାର ଗୋଟିଏ କଥା । ଅବଶ୍ୟ କେହି ପାଠକ ମନେ କରିବେ ନାହିଁ ଯେ କେବଳ ଲେଖକ ଏହି 'କା'କୁ ଅଙ୍ଗେ ନିଭାଇଅଛନ୍ତି । ପାଠକମାନଙ୍କ ମଧ୍ୟରୁ ପ୍ରାୟ ପ୍ରତ୍ୟେକେ ଏହା ଅଙ୍ଗେ ନିଭାଇଥିବେ । ଲେଖକମାନେ କେହି କେହି ବର୍ତ୍ତମାନ ଅଙ୍ଗେ ନିଭାଇବାର କଥା କହନ୍ତି । କେହି ଅବା କଳ୍ପନାବଳରେ ବହୁଦୂରଗାମୀ ହୋଇ ସୁଦୂର ଭବିଷ୍ୟତର ତିମିରପଟଳ ଭେଦ କରି ଯାହା ଦେଖନ୍ତି ଓ ଅନୁଭବ କରନ୍ତି ପାଠକମାନଙ୍କ ନିକଟରେ ତାହାକୁ ବର୍ତ୍ତମାନ ଆଲୋକରେ ଅଙ୍କିତ କରି ଦିଅନ୍ତି । କିନ୍ତୁ, ଅମ୍ଭମାନଙ୍କର ଏହି କା' ବିଷୟଟି ବର୍ତ୍ତମାନ ଅଙ୍ଗେ ନିଭାଇବାର ବିଷୟ ନୁହେଁ ? କିମ୍ବା ସୁଦୂର ତିମିରାବୃତ ଭବିଷ୍ୟତର କଳ୍ପନାଲୋକରେ ଅଙ୍କିତ କରି ଅଙ୍ଗେ ନିଭାଇବାର ବିଷୟ ମଧ୍ୟ ନୁହେଁ । ଏହା ଅତୀତ କାଳର ଗୋଟିଏ ସ୍ମୃତି । ଆଜି ପାଠକମାନଙ୍କୁ

ବର୍ତ୍ତମାନ କ ଭବିଷ୍ୟତରେ ନ ରଖି, ଅତୀତ କାଳକୁ ନିଜ ବାଲ୍ୟାବସ୍ଥାକୁ ଫେରାଇ ନେବାକୁ ଆମ୍ଭେମାନେ ପ୍ରସ୍ତାବ କରୁଅଛୁଁ । ସେ ବାଲ୍ୟାବସ୍ଥାକୁ ପୁନରାୟ ପ୍ରତ୍ୟାବର୍ତ୍ତନ କଲେ ପାଠକମାନେ ଅବଶ୍ୟ ଆମ୍ଭମାନଙ୍କର ଏହି କା' ବିଷୟଟି ସ୍ମରଣ କରି ପାରିବେ ।

ବାଳକମାନେ ସାଧାରଣତଃ କ୍ରୀଡ଼ାପ୍ରିୟ । ବାଲ୍ୟାବସ୍ଥାରେ ଅନେକ କ୍ରୀଡ଼ା ଦୁଇଦଳ ବାଳକଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱୀ ଭାବରେ ହୋଇଥାଏ । ଏହି ରୂପ କ୍ରୀଡ଼ା ବା ଖେଳରେ କା'ର ବ୍ୟବହାର ହୋଇଥାଏ । ଖେଳ ସୁବିଧାରେ ଓ ନ୍ୟାୟରେ ଚାଲିବା ନିମନ୍ତେ ଦୁଇ ପ୍ରତିଦ୍ୱନ୍ଦ୍ୱୀ ଦଳର ବାଳକ ସଂଖ୍ୟା ସମାନ ହେବା ଆବଶ୍ୟକ । କିନ୍ତୁ ଅନେକ ସମୟରେ ଦୁଇ ଦଳରେ ସମାନସଂଖ୍ୟକ ବାଳକ ନ ଥାନ୍ତି । ତେଣୁ, ଏକ ଦଳରେ ଅପର ଦଳଠାରୁ ବାଳକ ସଂଖ୍ୟା ଗୋଟିଏ ଊଣା ହୋଇଥାଏ । ଯେଉଁ ପକ୍ଷରେ ବାଳକ ଗୋଟିଏ ଊଣା ହୁଏ, ସେହି ପକ୍ଷର କୌଣସି ଏକ ବାଳକ ଉପରେ ଗୋଟିଏ କା' ପଡ଼େ । ତାହାର ଅର୍ଥ ଏହି ଯେ, ସେ ଜଣକ ଥରେ 'ମରିଗଲେ' ଅର୍ଥାତ୍ ଖେଳର ନିୟମାନୁସାରେ ସେ ଖେଳିବା ନିମନ୍ତେ ଅନୁପଯୁକ୍ତ ହେଲେ, ସେ ପୁନରାୟ ତା ଉପରେ ଥିବା କା' ବଳରେ ଖେଳି ପାରେ । ପ୍ରଥମତଃ ସେ ନିଜେ ସ୍ୱ ନାମରେ ଖେଳେ, ଏବଂ ପରେ ସେ ନିଜ ଉପରେ ଥିବା କା' ବଳରେ ଅନ୍ୟ ଏକବାର ଖେଳେ । ଅନେକ ସମୟରେ ମଧ୍ୟ ଜଣକ ଉପରେ ଦୁଇ କିମ୍ବା ତତୋଽଧିକ କା' ରହିପାରେ । କାରଣ, ଯଦି ତାହା ପକ୍ଷର କୌଣସି 'ଖେଳାଳୀ' ଅପର ପକ୍ଷରେ ଖେଳିବା ନିମନ୍ତେ ବିଶେଷ ଆଗ୍ରହ ପ୍ରକାଶ କରେ, ତାହାହେଲେ ସେହି ପକ୍ଷର ଜଣକ ଉପରେ ଏକାଧିକ କା' ରହି ପାରେ । ଏହି କା' ସାଧାରଣତଃ ଦଳର ଉତ୍କୃଷ୍ଟ 'ଖେଳାଳୀ' ଉପରେ ଥାଏ । ତାହା ନ ହେଲେ ଅନ୍ୟପାଖର ସଂଖ୍ୟାଧିକ୍ୟ ଯୋଗେ ଯେ ଦଳ ହୁଏ, ତାହାର ପ୍ରତିଯୋଗିତା କରିବା ଅଳ୍ପସଂଖ୍ୟକ ଦଳ ପକ୍ଷରେ କଷ୍ଟକର । ଏହି ହେତୁରୁ ଦଳର ଉତ୍କୃଷ୍ଟ ଖେଳାଳୀ ଉପରେ କା' ରହିଥାଏ ଏବଂ ଦୁଇ ବା ତତୋଽଧିକ କା' ତାହା ଉପରେ

ରହିପାରେ । ଏହିରୂପେ ସେ କାଳେ ବା ଉତ୍ତୋରୋଧିକ ଜଣକର କାର୍ଯ୍ୟ ହୋଇ ପାରେ ।

ଆଶା କରୁ, ବର୍ତ୍ତମାନ ପାଠକମାନେ ବାଳକମାନଙ୍କ କ୍ରୀଡ଼ାର କା' ନୀତି ବୁଝି ପାରିଅଛନ୍ତି । ବର୍ତ୍ତମାନ ପ୍ରଶ୍ନ ହୋଇପାରେ ଯେ, ଏହି କା' ବାଳକମାନଙ୍କ ମନରେ ପ୍ରବେଶ କଲା କିପରି ? କା' ଶବ୍ଦ ସଂସ୍କୃତ ମୂଳକ ବୋଲି ବୋଧ ହୁଏ ନାହିଁ । ଭାରତର ଅନ୍ୟାନ୍ୟ ପ୍ରଦେଶରେ ଏହି କା' ଶବ୍ଦର ବ୍ୟବହାର ଥିବାର ଜଣାଯାଏ ନାହିଁ । କେବଳ ମିଶରଦେଶକୁ ଛାଡ଼ିଦେଲେ, ପୃଥିବୀର ଅନ୍ୟ କୌଣସି ଦେଶରେ ବା ଭାଷାରେ ମଧ୍ୟ ଏହାର ବ୍ୟବହାର ଥିବାର ପ୍ରମାଣ ମିଳେ ନାହିଁ । ମିଶର ଦେଶର ପୁରାଣ ଓ ଦର୍ଶନ କା'ର ତତ୍ତ୍ୱ ନିର୍ଣ୍ଣୟରେ ବ୍ୟାପୃତ । ଖ୍ରୀଷ୍ଟପୂର୍ବ ୫୫ ଶତାବ୍ଦୀ ପୂର୍ବରୁ ଏହି କା'ର ବ୍ୟାଖ୍ୟା ମିଶର ଦେଶୀୟ ପୌରାଣିକ ଗଳ୍ପମାନଙ୍କର ଅନ୍ତରାଳରେ ଅଳ୍ପାଧିକ ପରିମାଣରେ ନିହିତ ଥିଲା । ଦେବତା, ମନୁଷ୍ୟ, ପଶୁ, ପକ୍ଷୀ, କୀଟ, ପତଙ୍ଗ ପ୍ରଭୃତି ପ୍ରତ୍ୟେକ ଜୀବଦେହରେ ଗୋଟିଏ କା' ଅଛି । ପ୍ରାଣୀଠାରୁ ଏହି କା'କୁ ବିଚ୍ଛିନ୍ନ କରିଦେଲେ, ପ୍ରାଣୀର ପ୍ରାଣିତ୍ୱ ଅସମ୍ଭବ । ପ୍ରତ୍ୟେକ ପ୍ରାଣୀର କା' ସେହି ବିଶିଷ୍ଟ ପ୍ରାଣୀ ଅପେକ୍ଷା ଅଧିକ ସତ୍ ଓ ଚିରସ୍ଥାୟୀ । ଏହି ହେତୁରୁ ମିଶରଦେଶବାସୀମାନେ ପ୍ରାଣୀର ଉପାସନା କରୁଥିଲେ । କାରଣ, ସେମାନଙ୍କର ବିଶ୍ୱାସ ଯେ ଏହି କା' ଭୌତିକ ପଦାର୍ଥ ନୁହେଁ; ଏହା ଭଗବତ୍ ପ୍ରଦତ୍ତ ବସ୍ତୁ । କେତେକ ଦିନ ନିମନ୍ତେ କା' ଜୀବମାନଙ୍କୁ ନିଜ ପ୍ରାଣରେ ଅନୁପ୍ରାଣିତ କରୁଅଛି । ସମଗ୍ର ମାନବ କଦାପି ଏହି କା'ର ବ୍ୟତିକ୍ରମ କରି ନ ପାରେ । ଏହା ନିର୍ମଳ ଓ ନିର୍ଲିପ୍ତ ଭାବରେ ଜୀବଦେହରେ ବାସ କରେ ଏବଂ ନିର୍ଦ୍ଦିଷ୍ଟ ସମୟ ପରେ ଏହା ଜୀବ ଶରୀର ତ୍ୟାଗ କରନ୍ତେ ଜୀବର 'ଧୂଳିର ଏ ମର କଳେବର' ଧୂଳିରେ ପରିଣତ ହୋଇଯାଏ । ଏହି ଭାବରେ ଅନୁପ୍ରାଣିତ ହୋଇ ମିଶରଦେଶବାସୀ ଏହି କା'ର ଉପାସନା କରୁଥିଲେ । ଦାର୍ଶନିକ ତତ୍ତ୍ୱାନୁସନ୍ଧିତ୍ସୁମାନେ ଏଥିନିମନ୍ତେ ସେମାନଙ୍କୁ ଜୀବ ଉପାସକ ବୋଲି କହନ୍ତି । ଅବଶ୍ୟ ଏ ବିଷୟରେ ନାନା ମୁନିଙ୍କର ନାନାମତ ଦେଖାଯାଏ, ତଥାପି ଏ

କଥା କହନ୍ତୁ, ମିଶର ଦେଶବାସୀଙ୍କ ପ୍ରାଣ ଏହି ଭାବ ଉପାସନାରେ ଅନୁପ୍ରାଣିତ ଥିଲା । ସେମାନଙ୍କର ପ୍ରଧାନ ଧାରଣା ଯେ, ତା' କଦାପି ସ୍ୱତନ୍ତ୍ରଭାବରେ ରହି ନ ପାରେ; ଏହାର ଅବାସ ନିମନ୍ତେ କୌଣସି ଜଡ଼ ପିଣ୍ଡର ପ୍ରୟୋଜନ । ଏହି ହେତୁରୁ ପ୍ରତ୍ୟେକ ଜୀବଠାରେ ଏହି ତା'ର ଅବାସ ଅଛି । କାରଣ ଯା' ବ୍ୟତିରେକେ ଭାବ ଜୀବ ନୁହେ, ଜଡ଼ ପିଣ୍ଡବିଶେଷ । ଜଡ଼ ପିଣ୍ଡରେ ତା' ପ୍ରବେଶ କଲେ ସେ ଜୀବ ଧାରଣ କରେ । ଅତଏବ ମିଶର ଦେଶବାସୀ ସମସ୍ତ ଜଡ଼ ଜଗତର ଉପାସନା ନ କରି କେବଳ ଜୀବଜଗତର ଉପାସନା କରୁଥିଲେ ।

ଉପର ଲିଖିତ ବର୍ଣ୍ଣନାରୁ ଜଣାଯାଏ ଯେ, ମିଶର ଦେଶବାସୀ ବସ୍ତୁତଃ ତା'ର ଉପାସନା କରୁଥିଲେ; ଏବଂ "ଦାନ୍ତଅ ଯୋଗେ କଳସିର ପାଣି ପାଇବା" ନ୍ୟାୟରେ ଜୀବର ଜଡ଼ ପିଣ୍ଡ ମଧ୍ୟ ଉପାସନାର ବସ୍ତୁ ଥିଲା । ଦାର୍ଶନିକ ଚିନ୍ତାରେ କ୍ରମବିକାଶ ନିୟମରେ ସାଧାରଣତଃ ଯେଉଁ ପରିବର୍ତ୍ତନ ହୋଇଥାଏ, ମିଶର ଦେଶୀୟ ଦର୍ଶନରେ ସେହି ପରିବର୍ତ୍ତନ ହେବାର ଆରମ୍ଭ ହେଲା । ଦାର୍ଶନିକ ଚିନ୍ତା କେବଳ ବସ୍ତୁଗତ ( Concrete ) ନ ରହି କ୍ରମେ କ୍ରମେ ଗୁଣଗତ ( abstract ) ହେବାକୁ ଆରମ୍ଭ କଲା । ଏହି ସମୟରେ ଜୀବ ଉପାସନା ପରିବର୍ତ୍ତିରେ ଏକେଶ୍ୱରବାଦର ଅଙ୍କୁର ମିଶରଦେଶୀୟ ଚିନ୍ତାରାଜ୍ୟରେ ପ୍ରବେଶ କଲା । ଅଧ୍ୟାପକ ମୋକ୍ଷମୁଲର ଏହି ରୂପ ଏକେଶ୍ୱର ବାଦକୁ ହେନୋଥିଇଜମ୍ ( Henotheism ) ବୋଲି କହନ୍ତି । ଅର୍ଥାତ୍ ମିଶର ଦେଶବାସୀମାନେ ଯେତେଗୁଡ଼ିଏ ଈଶ୍ୱର ଉପାସନା କରୁଥିଲେ, ସେମାନଙ୍କ ଉପରେ ଏକ ମହତ୍ତମ ଓ ଗରିଷ୍ଠ ଈଶ୍ୱର ଥିଲେ; ତାହାଙ୍କ ଅଧୀନରେ ଅନ୍ୟାନ୍ୟ ଦେବତାମାନେ କାର୍ଯ୍ୟ କରୁଥିଲେ । ଭାରତର ବୈଦିକ ଯୁଗରେ ଏବଂ କେତେ ପରିମାଣରେ ବର୍ତ୍ତମାନ ମଧ୍ୟ, ଏହିରୂପ ଏକେଶ୍ୱରବାଦ ପରିଲକ୍ଷିତ ହୁଏ । ଦାର୍ଶନିକ ଚିନ୍ତାର ଏହିରୂପ ପରିବର୍ତ୍ତନ ସଙ୍ଗେ ସଙ୍ଗେ ତା'ର ଜ୍ଞାନ ମଧ୍ୟ ପରିବର୍ତ୍ତିତ ହେଲା । ବର୍ତ୍ତମାନ ତା' କେବଳ ପ୍ରାଣୀମାନଙ୍କ ମଧ୍ୟରେ ଏକଚାଟିଆ ହୋଇ ନ ରହି ସମସ୍ତ ବିଶ୍ୱବ୍ୟାପୀ ହେଲା ।

ସାର ବ୍ରହ୍ମାଣ୍ଡ—ମହତ୍ତମ ଈଶ୍ୱରଙ୍କ ଠାରୁ ଆରମ୍ଭ କରି କ୍ଷୁଦ୍ରରୁ କ୍ଷୁଦ୍ରତମ ଧୂଳିକଣା ପର୍ଯ୍ୟନ୍ତ—ଏହି ଜୀବାତ୍ମା ଦ୍ୱାରା ଅନୁପ୍ରାଣିତ ହୋଇଥିବା ବିଶ୍ୱାସ ମିଶର ଦେଶବାସୀଙ୍କ ମନୋରାଜ୍ୟରେ ସ୍ଥାନ ପାଇଲା ଏବଂ ଜଳଦେବତା, ପବନ-ଦେବତା, ବାୟୁଦେବତା ପ୍ରଭୃତି ସେମାନଙ୍କର ଉପାସନାର ପାତ୍ର ହେଲେ ।

ଏହି ଜୀବାତ୍ମା ଯେ କେବଳ ଖ୍ରୀଷ୍ଟପୂର୍ବ ୫୫ ଶତାବ୍ଦୀରୁ ମିଶରରେ ସ୍ଥାନ ପାଇଥିଲା ତାହା ନୁହେଁ । ଉକ୍ତ ଦେଶର ସଭ୍ୟତାର ଇତିହାସ ଅନୁସରଣ କରି ପଣ୍ଡିତମାନେ ସ୍ଥିର କରିଅଛନ୍ତି ଯେ ଏହାର ବହୁକାଳ ପୂର୍ବରୁ ମଧ୍ୟ ଏହି ଜୀବାତ୍ମା ମିଶରଦେଶବାସୀମାନଙ୍କ ମନରେ ଥିଲା । ସେତେବେଳେ ସେମାନଙ୍କର ଏହି ଜୀବାତ୍ମା ବିଶ୍ୱାସ ସଙ୍ଗେ ସଙ୍ଗେ ପଦାର୍ଥ-ଜ୍ଞାନର ବିଶେଷତଃ ମାନବର ବ୍ୟକ୍ତିଗତ ନାମରେ କି ଏକ ଅଦ୍ଭୁତ ଶକ୍ତି ନିହିତ ଥିବାର ବିଶ୍ୱାସ ମଧ୍ୟ ଥିଲା । ଜୀବାତ୍ମା ମାନବର ଅସବନ୍ଧି ତାହାର ନାମଦ୍ୱାରା ସ୍ୱୀକୃତ ହେଉଥିଲା । ପାଶ୍ଚାତ୍ୟ ପଣ୍ଡିତମାନେ ମିଶରଦେଶୀୟ "Book of the Dead" ( ମୃତ ବ୍ୟକ୍ତିଙ୍କ ପୁସ୍ତକ ଅର୍ଥାତ୍ ଶବଗୁମ୍ଫା ପାଣ୍ଡି ) ଅନୁସନ୍ଧାନ କରି ପ୍ରକାଶ କରନ୍ତି, ସେମାନଙ୍କର ଏହି ସାଧାରଣ ବିଶ୍ୱାସ ଥିଲା ଯେ, ମୃତ ବ୍ୟକ୍ତିର ନିରବଚ୍ଛିନ୍ନ ଅବସ୍ଥିତି କେତେକ ପରିମାଣରେ ତାହାର ନାମ ସୁରକ୍ଷଣ କରି ରଖିବା ଏବଂ କେତେକ ପରିମାଣରେ ତାହାର ଜୀବର ଅବାଧ ନିମନ୍ତେ ଚିରସ୍ଥାୟୀ କବର ଗଠନ କରିବା ଉପରେ ନିର୍ଭର କରେ । ଯାହାର ନାମ ସ୍ମୃତିରୂପେ ଲିପିବଦ୍ଧ ହୋଇ ରହେ ଓ ବହୁକାଳ ନିମନ୍ତେ ସ୍ଥାୟୀ ହୁଏ ଏବଂ ଯାହାର କବର ସୁଦୃଢ଼ ଓ କାଳର କରାଳ ସ୍ରୋତ ବିରୁଦ୍ଧରେ ଅକ୍ଷୁଣ୍ଣ ରହେ, ସେ ମୃତ୍ୟୁ ପରେ ମଧ୍ୟ ନିରବଚ୍ଛିନ୍ନଭାବରେ ଜୀବନଧାରଣ କରିଥାଏ । ଜୀବିତା-ବସ୍ଥାରେ ଉପଯୁକ୍ତ ଗୃହ ଅପେକ୍ଷା କବର ସେମାନଙ୍କର ବିଶେଷ ଆଦର-ଣୀୟ ବସ୍ତୁ । କାରଣ ସେମାନଙ୍କର ବିଶ୍ୱାସ ଯେ, ଗୃହ କେବଳ ଚର୍ଚ୍ଚାଘର ମାତ୍ର । ଜୀବର ଜୀବନ ଅନନ୍ତ କାଳସ୍ଥାୟୀ ଏବଂ ସେହି ଅନନ୍ତ କାଳ ମଧ୍ୟରୁ ଅତି ସାମାନ୍ୟ ଅଂଶ ମାତ୍ର ଗୃହୀର ଶରୀରରେ ଅବସ୍ଥାନ କରେ ।

ସେ ଗୃହସ୍ଥ ଯେତେଦିନ ମାତ୍ର ଜୀବିତ ଥାଏ, ସେତିକି ଦିନ କାଁ ଗୃହ ଉପଭୋଗ କରେ । କିନ୍ତୁ ଗୃହସ୍ଥର ମୃତ୍ୟୁ ପରେ ତାହା ନିମନ୍ତେ ଯେଉଁ କବର ନିର୍ମିତ ହୁଏ, ତାହା କାଁ'ର ଚିରନ୍ତନ ବାସସ୍ଥାନ । କବର ଯେତେ ଦିନ ଯାଏ ସୁରକ୍ଷିତ ଥାଏ, କାଁ ସେତେଦିନ ପର୍ଯ୍ୟନ୍ତ ତହିଁରେ ବାସ କରେ । ତେଣୁ ମିଶର ଦେଶବାସୀ କବରର ସୁରକ୍ଷଣରେ ଯତ୍ନପରୋନାସ୍ତି ଯତ୍ନ କରୁଥିଲେ । କବରଟି ନଷ୍ଟ ହୋଇଗଲେ କାଁ ତହିଁରୁ ଚାଲିଯାଏ, ଏବଂ ଯେଉଁ ବ୍ୟକ୍ତି ବିଶେଷର ସେହି କାଁ ସେହି ବ୍ୟକ୍ତିର ଅସ୍ତିତ୍ୱ ଲୋପ ହୋଇଯାଏ ।

ମିଶର ଦେଶୀୟ ଦାର୍ଶନିକ ତତ୍ତ୍ୱ ମୀମାଂସାରେ କାଁ'ର କେତେ ପ୍ରସ୍ତାବ ତାହା ଦେଖାଗଲା । ବର୍ତ୍ତମାନ ପ୍ରଶ୍ନ ଏହି—ଆମ୍ଭମାନଙ୍କର ବାଳକମାନଙ୍କ କ୍ରୀଡ଼ାରେ ବ୍ୟବହୃତ କାଁ କିପରି ବାଳକମାନଙ୍କ ମନରେ ପ୍ରବେଶ କଲା ? ଏହି କାଁ ସେମାନେ କେଉଁଠାରୁ ପାଇଲେ ? ଏହି କାଁ ଯେ ବହୁ କାଳରୁ ଆମ ଦେଶରେ ବ୍ୟବହୃତ ହୋଇ ଆସୁଅଛି ଏଥିରେ ସନ୍ଦେହ ନାହିଁ । କାରଣ, ବର୍ତ୍ତମାନ ବୃଦ୍ଧମାନେ ମଧ୍ୟ ନିଜ ନିଜ ବାଲ୍ୟାବସ୍ଥାରେ ଏହି କାଁ'ର ବ୍ୟବହାର କରୁଥିବାର ପ୍ରକାଶ କରନ୍ତି ଏବଂ ସେମାନେ ନିଜ ନିଜ ବାଲ୍ୟାବସ୍ଥାରେ ଜୀବିତ ବୃଦ୍ଧମାନଙ୍କଠାରୁ ମଧ୍ୟ ଏହାର ବ୍ୟବହାର ଥିବାର ଶୁଣିଅଛନ୍ତି । ଏହିପରି ପୁରୁଷାନୁକ୍ରମେ ବାଳକ ସମାଜରେ ଏହି କାଁ'ର ବ୍ୟବହାର ହେଉଅଛି । ଏହିପରି ପୁରୁଷାନୁକ୍ରମେ ବ୍ୟବହୃତ ହେଉ ନଥିଲେ ବାଳକମାନେ ସହଜରେ କୌଣସି କଥା ନୂତନ କରି ଗ୍ରହଣ କରନ୍ତେ ନାହିଁ । ବାଳକମାନଙ୍କ କଥା ତେଣିକି ଥାଉ, ଜ୍ଞାନୀ ପୌଢ଼ବ୍ୟକ୍ତିମାନେ ମଧ୍ୟ କୌଣସି କଥା ନୂତନ ଦେଖିଲେ ପରିତ୍ୟାଗ କରିବାକୁ କୁଣ୍ଠିତ ନୁହନ୍ତି । ତାହା ମଧ୍ୟରୁ ଅଳ୍ପ ତାହିଁ ଆମ୍ଭମାନଙ୍କର ଗ୍ରହଣୀୟ । ଉତ୍ତମ ଯେତେ ଭଲ ହୋଇ ଥିଲେ ବି, ତାହା ସାଧାରଣଙ୍କର ଗ୍ରହଣ କରିବା ଆମର ଜାତୀୟ ଗୁଣ ନୁହେଁ । ସୁତରାଂ ଜଣେ ଲେଖକ ଆମ ସମାଜର ଏହି ଗୁଣକୁ "ଅନ୍ଧ" ଶବ୍ଦର କାର୍ଯ୍ୟ ବୋଲି କହିଅଛନ୍ତି । ପୁନଶ୍ଚ ଦେଖାଯାଏ ଯେ, କେବଳ ବାଳକ-

ମାନେ ଏହି କା'ର ବ୍ୟବହାର କରିଥାଅନ୍ତି । କୌଣସି ପ୍ରବୀଣ ଲୋକ କେବେ ଏହାର ବ୍ୟବହାର କରିବାର ଦେଖାଯାନ୍ତି ନାହିଁ । ସୁତରାଂ କୌଣସି ପ୍ରବୀଣ ଲୋକ ଯେ କେବେ ଏହି କା'ର ଉଦ୍ଭାବନ କରିଥିବେ, ତାହା ମଧ୍ୟ ଅସମ୍ଭବ । ବାଳକମାନେ ଯେତେବେଳେ ଏହି କା'କୁ ଏତେ ସ୍ୱଚ୍ଛନ୍ଦରେ ବ୍ୟବହାର କରନ୍ତି, ସେଥିରୁ ଅନୁମାନ ହୁଏ ଯେ, ଏହି କା' ବହୁକାଳରୁ ବାଳକମାନଙ୍କ ମଧ୍ୟରେ ପ୍ରବେଶ କରି ସେମାନଙ୍କର ପ୍ରକୃତି-ଗତ ହୋଇ ଯାଇଅଛି । କେହି କେହି ପଣ୍ଡିତ ଅନୁମାନ କରନ୍ତି ଯେ, ଭାରତୀୟ କେତେକ ବ୍ରାହ୍ମଣ ମିଶର ଦେଶରୁ ଆସିଥିବାରୁ ସେମାନେ 'ମିଶ୍ର' ନାମରେ ଅଭିହିତ ହୋଇଅଛନ୍ତି । ଯଦି ପଣ୍ଡିତମାନଙ୍କର ଏହି ଉକ୍ତି ସତ୍ୟ ହୁଏ ତାହା ହେଲେ ପାଠକମାନେ କେହି କେହି ମନେ କରି-ପାରନ୍ତି ଯେ ଆମ ବାଳକମାନଙ୍କର କା' ମିଶର ଦେଶୀୟ କା'ର ଅନୁ-କରଣରେ ବ୍ୟବହୃତ ହୋଇ ପାରିଥିବ । କିନ୍ତୁ ଏହି ଅନୁମାନ ବିରୁଦ୍ଧରେ ଅନେକଗୋଟି କାରଣ ଉପସ୍ଥିତ ହୁଏ । ପ୍ରଥମତଃ ମିଶ୍ର ବ୍ରାହ୍ମଣମାନେ ଯଦି ମିଶର ଦେଶରୁ ଏହି କା'କୁ ଆଣିଥିଲେ, ତାହା ହେଲେ ଭାରତର ଅନ୍ୟ-ସବୁ ଦେଶରେ—ଯେଉଁଠାରେ ଅନ୍ତତଃ ମିଶ୍ର ବ୍ରାହ୍ମଣ ଅଛନ୍ତି—ସେଠାରେ ମଧ୍ୟ ଏହାର ବ୍ୟବହାର ଥାନ୍ତା । କେବଳ ଓଡ଼ିଶାରେ ଏହି କା' ରହିଲା, ଅନ୍ୟତ୍ର ରହିଲା ନାହିଁ କାହିଁକି ? ପୂର୍ବରେ କୁହାଯାଇ ଅଛି, ଉତ୍କଳ ବ୍ୟତୀତ ଭାରତରେ ଅନ୍ୟତ୍ର ଏହି କା' ଦୃଷ୍ଟ ହୁଏ ନାହିଁ । ଦ୍ୱିତୀୟତଃ ଏହା ମନେ ରଖିବା ଉଚିତ ଯେ, ମିଶର ଦେଶୀୟ କା' ଓ ଆମ୍ଭମାନଙ୍କର କା' ଦୁହେଁ ସମ ବସ୍ତୁ ନୁହନ୍ତି । ମିଶର କା' ଠାରୁ ଆମ୍ଭ କା' ପୃଥକ୍ । ମିଶରଦେଶୀୟ କା' ଚିରସ୍ଥାୟୀ ଓ ଶରୀର ଅପେକ୍ଷା ଅଧିକ ସତ୍, କିନ୍ତୁ ଆମ କା' କ୍ଷଣସ୍ଥାୟୀ ଓ ଶରୀର ସ୍ଥାୟିତ୍ୱ ସହିତ ଆଦୌ ତୁଳନୀୟ ନୁହେଁ । ପ୍ରଥମଟି ଆତ୍ମାର ଅଂଶ ପ୍ରତିରୂପ, କିନ୍ତୁ ଦ୍ୱିତୀୟଟି ଆତ୍ମାଠାରୁ ସମ୍ପୂର୍ଣ୍ଣ ପୃଥକ୍, କେବଳ ଆତ୍ମାର ଅବସ୍ଥା ସୂଚକ ପ୍ରତିଛାୟା । ପ୍ରଥମଟି ଆଧାର, ଦ୍ୱିତୀୟଟି ଆଧେୟ । ବାଳକ ଯେତେବେଳେ କହେ,'ଅମୁକ କମରେ ତାହା ଉପରେ ଗୋଟିଏ କା' ରହିଲା, ସେତେବେଳେ ସେ ସେହି ଖେଳାଳିର ପ୍ରତିବନ୍ଧ

ସ୍ୱରୂପ କାର୍ଯ୍ୟକରେ । ବାଳକ ଏବଂ, କିନ୍ତୁ ଯୁବକଗଣଙ୍କର ଭାବ ସେ ଦର୍ଶାଏ । ଏଥିରୁ ବୁଝାଯାଏ ଯେ ଏହି ଖା'ର ଅନ୍ତସ୍ତଳରେ ବାଳକର ବ୍ୟକ୍ତିଗତ ଆତ୍ମା ଶରୀରୀ ଭାବରେ ଥାଏ । ଗୋଟିଏ ଖା'ର କାର୍ଯ୍ୟ ପରେ ଅନ୍ୟ ଗୋଟିଏ ଖା'ର କାର୍ଯ୍ୟ ଶେଷ କରିଯାଏ । ମିଶରଦେଶୀୟ ଖା' ଜୀବାତ୍ମା ସ୍ୱରୂପ, କିନ୍ତୁ ଅପର ଖା' ଦେହ ଆତ୍ମାର ଅବସ୍ଥାବିଶେଷ । ଅର୍ଥାତ୍ ଏହି ଖେଳ ଖେଳାଳୀ ଥିବା ସ୍ଥଳେ ମିଶ୍ର ବ୍ରାହ୍ମଣମାନେ ମିଶର ଦେଶରୁ ଏହି ଖା'ର ଆମଦାନୀ କରିଥିବା ସମ୍ଭବପର ନୁହେଁ । ତଥ୍ୟତଃ ଖା' ମିଶର ଦେଶର ସର୍ବ ଶ୍ରେଷ୍ଠ ଶାସ୍ତ୍ରାସନ ଅଧିକାର କରିଥିଲା । ଏହି ଖା' ସେଠାରୁ ଆମଦାନୀ ହୋଇଥିଲେ, କେବଳ ବାଳକମାନଙ୍କର କ୍ରୀଡ଼ାରେ ଆବଦ୍ଧ ନ ଥାଇ, ପ୍ରବୀଣ ପଣ୍ଡିତମାନଙ୍କର ଶାସ୍ତ୍ରଗ୍ରନ୍ଥରେ ମଧ୍ୟ ସ୍ଥାନ ପାଇଥାନ୍ତା । କିନ୍ତୁ ଖା'ର ସେହିଭଳି ଅସ୍ତିତ୍ୱ ଭାରତୀୟ ଦର୍ଶନ, ପୁରାଣ, ସାହିତ୍ୟାଦିରେ ପରିଦୃଷ୍ଟ ହୁଏ ନାହିଁ । ଅତଏବ ଆମ ଦେଶୀୟ ଖା' କଦାପି ମିଶର ଦେଶରୁ ବାଳକମାନଙ୍କ କ୍ରୀଡ଼ାରେ ପ୍ରବେଶ କରିଥିବା ବିଶ୍ୱାସ୍ୟ ନୁହେଁ । ତାହାହେଲେ ଏହି ଖା' କେଉଁଠାରୁ ଆସିଲା ?

ଏହି ଖା'ର ଉତ୍ପତ୍ତି ଯେ କୌଣସିଠାରୁ ହେଉ ପଛକେ ଏଥିରେ ଯେଉଁ ଗୂଢ଼ ତତ୍ତ୍ୱ ନିହିତ ଅଛି, ତାହାହିଁ ଆମ୍ଭମାନଙ୍କର ବିଶେଷ କୌତୂହଳ ଉତ୍ପାଦନ କରେ । ସଂସାରରେ କାର୍ଯ୍ୟ କରିବା ନିମନ୍ତେ, ଏବଂ ଦେଶରେ ପାଶ୍ଚାତ୍ୟ ସଭ୍ୟତା ପ୍ରଚଳିତ ହେବାରୁ, ଆମ୍ଭମାନଙ୍କର ଯେଉଁ ଗୁଣ ବିଶେଷ ପ୍ରୟୋଜନୀୟ ତାହା ଏହି ଖା' ମଧ୍ୟରେ ନିହିତ ଅଛି ବାଳକମାନଙ୍କ ଖା'ର ଗୂଢ଼ ନୀତି ଉତ୍ତମରୂପେ ହୃଦୟଙ୍ଗମ କରିବା ପୂର୍ବରୁ ମାନବପ୍ରକୃତିର ବିଶଦ ଅନୁଶୀଳନ ଆବଶ୍ୟକ ।

•

ମାନବପ୍ରକୃତିକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ—ଗୋଟିଏ ତାହାର ଜୀବାତ୍ମା ଏବଂ ଅପର ଭାଗ ଦେହ ଜୀବାତ୍ମାର ବିଭିନ୍ନ ଅବସ୍ଥାର ବିଭିନ୍ନ ଭାବର ସମଷ୍ଟି । କୌଣସି କୌଣସି ପଣ୍ଡିତମାନେ ପ୍ରଥମଟିର

ଅସ୍ୱୀକାର କରନ୍ତି । ଇଉରୋପର ଲ୍ୟୁସିପସ୍, ଡେମୋକ୍ରିଟସ୍, ଏପିକ୍ୟୁରସ୍, ଲ୍ୟୁକ୍ରେସିଅସ୍, ଲାମେଟ୍ରି, ହଲବ୍ୟାକ୍, ଷ୍ଟ୍ରସ୍, ହିଉମ୍, ମିଲ, ବେନ୍, କମ୍ଟେ ଏବଂ ଆମ୍ଭମାନଙ୍କ ଦେଶରେ ଚାର୍ବାକ୍ ପ୍ରଭୃତି ଦାର୍ଶନିକମାନେ ଜୀବାତ୍ମାର ଅସ୍ତିତ୍ୱ ଏକାବେଳକେ ଅସ୍ୱୀକାର କରନ୍ତି; ଏବଂ ପ୍ରମାଣ କରନ୍ତି ଯେ ମାନବପ୍ରକୃତି କେବଳ କେତେଗୁଡ଼ିଏ ମାନସିକ ଅବସ୍ଥାର (States of Consciousness) ସମଷ୍ଟି ମାତ୍ର । ଏହି ଦାର୍ଶନିକମାନଙ୍କର ଯୁକ୍ତିରେ ହେତ୍ୱାଭାସ ଦେଖାଇବା ଏଠାରେ ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହେଁ । ତେବେ ଏଠାରେ ଏତିକି ମାତ୍ର ପ୍ରଶ୍ନ ହୋଇପାରେ ଯେ, ଯଦି ସେମାନେ ସ୍ୱୀକାର କରନ୍ତି ଯେ ମାନବପ୍ରକୃତି କେବଳ କେତେଗୁଡ଼ିଏ ମାନସିକ ଅବସ୍ଥାର ସମଷ୍ଟି ମାତ୍ର, ତାହାହେଲେ ସେହି ଅବସ୍ଥାମାନଙ୍କର ସମଷ୍ଟି କାହିଁ ଶ୍ରେଣୀ କିପରି ସାଧିତ ହୋଇଅଛି ? (ପୁଷ୍ପମାନଙ୍କର ମାଳାକରଣ ନିମନ୍ତେ ସେମାନଙ୍କ ମଧ୍ୟରେ କୌଣସି ଅନ୍ତର୍ନିହିତ ଶକ୍ତି ଥାଇ କାର୍ଯ୍ୟ କରେ ନାହିଁ; ସେମାନଙ୍କର ମାଳାକରଣ ନିମନ୍ତେ ଅନ୍ୟ ଏକ ବସ୍ତୁର ଆବଶ୍ୟକ) ସେହିପରି ମାନସିକ ଅବସ୍ଥାମାନଙ୍କ ମଧ୍ୟରେ ଏପରି କିଛି ଅନ୍ତର୍ନିହିତ ଶକ୍ତି ନାହିଁ ଯେ ସେମାନଙ୍କୁ ପରସ୍ପର ସହିତ ଆବଦ୍ଧ ରଖିପାରେ; ସେମାନଙ୍କର ସମଷ୍ଟି ନିମନ୍ତେ ଅନ୍ୟ ଏକ ବସ୍ତୁର ଆବଶ୍ୟକ । ସେହି ବସ୍ତୁଟି ଜୀବାତ୍ମା । ଆତ୍ମା ତାର ବିଭିନ୍ନ ଅବସ୍ଥାଗୁଡ଼ିକୁ ଶ୍ରେଣୀବଦ୍ଧ କରି ରଖିଥାଏ ଏବଂ ଯେତେବେଳେ ଏକ ଅବସ୍ଥାର ଉଦ୍ରେକ ହୁଏ, ସେତେବେଳେ ତାହାର ସମଭାବାପନ୍ନ ବା ବିରୁଦ୍ଧ ଭାବାପନ୍ନ ଅବସ୍ଥାମାନଙ୍କର ପୁନରୁତ୍ଥାନ ହୁଏ । ଯଦି ସେହି ଜଡ଼ବାଦୀ ଦାର୍ଶନିକମାନେ କହନ୍ତି, ଜୀବାତ୍ମା ବୋଲି ନାହିଁ, ମାନସିକ ଅବସ୍ଥାମାନଙ୍କ ମଧ୍ୟରେ କିଛି ଅନ୍ତର୍ନିହିତ ଶକ୍ତି ଅଛି, ଯଦ୍ଦ୍ୱାରା ସେମାନେ ପରସ୍ପର ସହିତ ଆବଦ୍ଧ ହୋଇ ଅଛନ୍ତି, ତାହାହେଲେ ଆମ୍ଭେମାନେ କହୁଁ ସେହି ଅନ୍ତର୍ନିହିତ ଶକ୍ତିହିଁ ଜୀବାତ୍ମା । ଏହି ଦାର୍ଶନିକମାନଙ୍କ ପକ୍ଷରେ ଏହି ବିରୁଦ୍ଧ ଯୁକ୍ତି ଖଣ୍ଡନ କରିବା ଅସାଧ୍ୟ ।

ଅତଏବ ମାନବପ୍ରକୃତ ଜୀବାତ୍ମା ଓ ତାହାର ଅବସ୍ଥା ସମଷ୍ଟି; ଏହିରୂପ ଦୁଇ ଭାଗରେ ବିଭକ୍ତ । ଏହି ମାନସିକ ଅବସ୍ଥାମାନଙ୍କର ଅନ୍ତସ୍ତଳରେ ଜୀବାତ୍ମା ରହି ଏମାନଙ୍କୁ ଶ୍ରେଣୀବଦ୍ଧ କରି ରଖିଅଛି । ଏହି ଜୀବାତ୍ମା ଅମର ଓ ଚିରସ୍ଥାୟୀ । "ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ, ନ ଚୈନଂ କ୍ଳେଦୟନ୍ତ୍ୟାପୋ, ନ ଶୋଷୟତି ମାରୁତଃ ।" କିନ୍ତୁ ଏହି ଜୀବାତ୍ମାର ଅବସ୍ଥାବୃନ୍ଦ କ୍ଷଣସ୍ଥାୟୀ ଏବଂ ପ୍ରତି ମୁହୂର୍ତ୍ତରେ ମଧ୍ୟ ସେମାନଙ୍କର ପରିବର୍ତ୍ତନ ହୋଇ ଥାଏ । ବର୍ତ୍ତମାନ ଜୀବସ୍ତ୍ରର ଏକ ଅବସ୍ଥା ଏବଂ ପର ମୁହୂର୍ତ୍ତରେ ତାହାର ଅନ୍ୟ ଏକ ଅବସ୍ଥା । ଢା' ଯେତେବେଳେ କୌଣସି ବନ୍ଧୁଙ୍କ ସହିତ ସୁଖାଳାପ କରୁଅଛି, ସେତେବେଳେ ଢା'ର ଅସ୍ମାର ଅବସ୍ଥା ଏକ ପ୍ରକାର ଏବଂ ତାର ପର ମୁହୂର୍ତ୍ତରେ କୌଣସି ସମାଜର ବା ଅନ୍ୟ କୌଣସି ବିଷୟରେ ଦୁଇ ବନ୍ଧୁଙ୍କର ମତଦ୍ବୈଧ ହେଲେ ଢା'ର ଅସ୍ମାର ଅବସ୍ଥା ଅନ୍ୟ ପ୍ରକାର । ଏହି ପ୍ରତ୍ୟେକ ଅବସ୍ଥାକୁ ଗୋଟିଏ ଗୋଟିଏ ଢା' କୁହାଯାଇ ପାରେ । ମୁଁ ଅମୁକ, ଏକ ବ୍ୟକ୍ତିବିଶେଷ, କିନ୍ତୁ ଯେତେବେଳେ ମୁଁ ଉତ୍କଳ ସମ୍ମିଳନୀର ବିଶେଷ କିଛି କାର୍ଯ୍ୟ କରୁଅଛି, ସେତେବେଳେ ମୋ ଉପରେ ଉତ୍କଳ ସମ୍ମିଳନୀର ସଭ୍ୟ ନିମନ୍ତେ ଗୋଟିଏ ଢା' ଅଛି । ମୁଁ ଗୋଟିଏ ବ୍ୟକ୍ତି ବୀବିୁ ଥିଲାବେଳେ ମୋର ମାନସିକ ଅବସ୍ଥା ଏକ ପ୍ରକାର, କିନ୍ତୁ ଉତ୍କଳ ସମ୍ମିଳନୀ ନିମନ୍ତେ ମୋ ଉପରେ ଗୋଟିଏ ଢା' ନେବାବେଳେ ମୋର ମାନସିକ ଅବସ୍ଥା ଭିନ୍ନ ପ୍ରକାର । ମୁଁ ଯେତେବେଳେ ଦେଶ ସାଧାରଣଙ୍କର ପ୍ରତିନିଧିସ୍ୱରୂପ ପ୍ରାଦେଶିକ ବ୍ୟବସ୍ଥାପକ ସଭାରେ ଦେଶର ମଙ୍ଗଳ ନିମନ୍ତ ଯୁଦ୍ଧ କରୁଅଛି, ସେତେବେଳେ ମୋ ଉପରେ ଦେଶ ସାଧାରଣଙ୍କ ନିମନ୍ତେ ଗୋଟିଏ ଢା' ଅଛି ବୋଲିବାକୁ ହେବ, ସେତେବେଳେ ମୁଁ ଅମୁକ ଦାସ କି ଅମୁକ ମହାପାତ୍ର ନୁହେଁ । ସେତେବେଳେ ମୁଁ ମୋ ଦେଶର ପ୍ରତିନିଧି; ସେତେବେଳେ ମୁଁ ବ୍ୟକ୍ତିଗତ ସ୍ୱାର୍ଥାଭିଳାଷ ତ୍ୟାଗ କରି ଦେଶର ସ୍ୱାର୍ଥକୁ ନିଜର ସ୍ୱାର୍ଥ କରି ମନେ କରେ, ସେତେବେଳେ ମୋ ଉପରେ

ଥିବା ବା' ସହିତ ନିଜକୁ ସମ୍ମିଳନ କରେ—ମୋର ବ୍ୟକ୍ତିଗତ ମାନସିକ ଅବସ୍ଥା ନ ଥାଏ, ମୋ ଉପରେ ଥିବା କା'ର ଯେ ଅବସ୍ଥା ହେବାର କଥା, ତାହାହିଁ ମୋର ମାନସିକ ଅବସ୍ଥା ହୁଏ । ମାନବ ସାମାଜିକ ପ୍ରାଣୀ ଏବଂ ସମାଜର ପ୍ରତ୍ୟେକ ବ୍ୟକ୍ତିଙ୍କ ସହିତ ଏହାର ସମ୍ପର୍କ ଅନେକ ପ୍ରକାର, ଏମନ୍ତ କି ପିତା ଓ ପୁତ୍ର ମଧ୍ୟରେ ଯେ ସମ୍ପର୍କ, ପୁତ୍ର ଓ ପିତା ମଧ୍ୟରେ ସେ ସମ୍ପର୍କ ନୁହେଁ । ସ୍ତ୍ରୀ ଓ ସ୍ୱାମୀ ମଧ୍ୟରେ ଯେଉଁ ସମ୍ବନ୍ଧ, ଦୁଇ ଭ୍ରାତାଙ୍କ ମଧ୍ୟରେ କିମ୍ବା ଦୁଇ ବନ୍ଧୁଙ୍କ ମଧ୍ୟରେ ସେ ସମ୍ବନ୍ଧ ନୁହେଁ । ଏକ ବ୍ୟକ୍ତିର ସମାଜ ମଧ୍ୟରେ ବନ୍ଧୁ ଅନେକ, ସମସ୍ତ ବନ୍ଧୁମାନେ ମଧ୍ୟ ଏକ ସମ୍ବନ୍ଧରେ ଅବଦ୍ଧ ନୁହନ୍ତି । ଏକ ବ୍ୟକ୍ତି ଘନିଷ୍ଠତାର ପରିମାଣ ଅନୁସାରେ ବହୁ ବ୍ୟକ୍ତିଙ୍କ ସଙ୍ଗେ ନାନା ରୂପରେ ଅବଦ୍ଧ । ସ୍ଥିତି ଅବସ୍ଥା ଭେଦରେ ଏକ ବ୍ୟକ୍ତିର ବନ୍ଧୁତ୍ୱର ବିଭିନ୍ନତା ମଧ୍ୟ ହୁଏ । ସୁଖାଳାପ ନିମନ୍ତେ ମୁଁ ଯାହାଙ୍କର ସଙ୍ଗ କାମନା କରେ, ଉତ୍କଳ ଯୁବକ ସମିତିରେ ମଧ୍ୟ ତାହାଙ୍କର ସଙ୍ଗ ଅତ୍ୟାବଶ୍ୟକ ବୋଧ ନ ପାରେ । ଅନ୍ୟ ଉତ୍କଳ ଯୁବକ ସମିତିର କାର୍ଯ୍ୟ କରିବା ନିମନ୍ତେ ମୁଁ ଜଣେ ମୁସଲମାନଙ୍କ ସଙ୍ଗେ ଘନିଷ୍ଠ ବନ୍ଧୁତ୍ୱ କରିପାରେ, କିନ୍ତୁ କୌଣସି ସାମାଜିକ ଭୋଜିରେ ସେହି ମୁସଲମାନ ବନ୍ଧୁ ହଠାତ୍ ପ୍ରବେଶ କଲେ ସମାଜ ସହିତ ଏକ ହୋଇ ମୁଁ ତାହାଙ୍କୁ ମୋ ପାଖରେ ବସାଇ ନ ପାରେ । ମାନବ ପ୍ରକୃତି ଓ ସାମାଜିକ ଜୀବନ ଏରୂପ ଜଟିଳ ଥିବା ସ୍ଥଳେ, ମାନବ କିପରି ସଂସାରରେ କାର୍ଯ୍ୟ କରି ପାରେ ? ଏହି ବାଳକମାନଙ୍କର କା' ଖେଳହିଁ ତାହାର ଏକମାତ୍ର ଅବଲମ୍ବନ । ଏହି ବାଳକମାନଙ୍କ କା' ଖେଳ ମାନବକୁ ସାମାଜିକ ପ୍ରାଣୀ କରି ରଖିଅଛି ।

ଲୋକ ଶିକ୍ଷା

ଉତ୍ତର ଆମେରିକାର ସ୍ୱାଧୀନତା ଉଦ୍ଧାରକର୍ତ୍ତା ଓ ସଭାପତି ମହାତ୍ମା ଓ୍ୟାସିଂଟନଙ୍କ ସମ୍ବନ୍ଧରେ ଗୋଟିଏ ଗଳ୍ପ ଅଛି, ତାହା ଆମ୍ଭମାନଙ୍କର ଏହି କା' ଖେଳର ଗୋଟିଏ ଉତ୍କୃଷ୍ଟ ଉଦାହରଣ । ଓ୍ୟାସିଂଟନ ଆମେରିକାର ସଭାପତି ହେବା ପରେ ତାହାଙ୍କ ଅଧୀନରେ ଗୋଟିଏ ବଡ଼

ଅର୍ଥଶାସ୍ତ୍ର କାର୍ଯ୍ୟ ଖାଲି ହେଲା । ସେହି କାର୍ଯ୍ୟ ନିମନ୍ତେ ଆବେଦନକାରୀ-ମାନଙ୍କ ମଧ୍ୟରେ ତାହାଙ୍କର ଜଣେ ଘନିଷ୍ଠ ବନ୍ଧୁ ଥିଲେ । ସମସ୍ତେ ସମ୍ଭାବନା କରିଥିଲେ ଯେ, ସେହି ବନ୍ଧୁ ଜଣକ ଉକ୍ତ କାର୍ଯ୍ୟଟି ପାଇବେ । କିନ୍ତୁ ମହାତ୍ମା ଔୟାସିଂଟନ ନିଜ ବ୍ୟକ୍ତିଗତ ଜୀବନର ବନ୍ଧୁତ୍ୱର କିଛି ବିଚାର ନ କରି ନିଜ ବନ୍ଧୁଙ୍କ ଅପେକ୍ଷା ଯୋଗ୍ୟତର ବ୍ୟକ୍ତିଙ୍କୁ ଉକ୍ତ କର୍ମରେ ନିଯୁକ୍ତ କଲେ । ଏହାର କାରଣ ଏହି ଯେ, ଯେତେବେଳେ ସେ ଔୟାସିଂଟନ ଅର୍ଥାତ୍ ଏକ ବ୍ୟକ୍ତିବିଶେଷ, ସେତେବେଳେ ସେ ତାହାଙ୍କ ବନ୍ଧୁଙ୍କୁ ମନୋମତ ଆଦରେ ସମ୍ଭାବନା କରି ପାରନ୍ତି, କିନ୍ତୁ ଯେତେବେଳେ ଇଉନାଇଟେଡ ଷ୍ଟେଟ୍ସର ସଭାପତି ବା’ ତାହାଙ୍କ ଉପରେ ରହିଲା, ସେତେବେଳେ ସେ ଔୟାସିଂଟନ ନାମକ ବ୍ୟକ୍ତି ବିଶେଷ ନୁହନ୍ତି, ସେତେବେଳେ ସେ ସଭାପତି ଔୟାସିଂଟନ; ସୁତରାଂ ବ୍ୟକ୍ତିବିଶେଷତ୍ୱରେ କୌଣସି ବନ୍ଧୁତ୍ୱ ରକ୍ଷା କରିବା ପାଇଁ ସଭାପତିର ବା’ ପ୍ରତି ଅବିଶ୍ୱାସୀ ହେବା ତାହାଙ୍କର ଉଚିତ ନୁହେଁ । ସେତେ-ବେଳେ ସେ ନିଜ ଉପରେ ଥିବା ବା’ର କାର୍ଯ୍ୟ କରୁଥିଲେ; ଔୟାସିଂଟନର କାର୍ଯ୍ୟ କରୁ ନ ଥିଲେ । ଭାରତର ସର୍ବପ୍ରଧାନ ଜାତୀୟ ରାମାୟଣ ଓ ମହାଭାରତର ପ୍ରତ୍ୟେକ ପୃଷ୍ଠାରେ ଏହି ବା’ ନୀତିର ଉଜ୍ଜ୍ୱଳ ଦୃଷ୍ଟାନ୍ତ ଦେଦୀପ୍ୟମାନ । ପତିପ୍ରାଣା ସର୍ବୈଶ୍ୱର୍ଯ୍ୟଶାଳିନୀ ସୀତା ପତିଙ୍କ ନିମନ୍ତେ ସାରା ଜୀବନ କେତେ କଷ୍ଟ କେତେ ଯନ୍ତ୍ରଣାରେ କଟାଇ, ପରିଶେଷରେ ଯେତେବେଳେ ସୁଖସମ୍ଭୋଗ କରନ୍ତେ ସେତେବେଳେ ସ୍ୱୟଂ ପ୍ରାଣପ୍ରିୟତମ ପତିଙ୍କ ଦ୍ୱାରା ବନବାସଦଣ୍ଡ ପ୍ରାପ୍ତ ହେଲେ । ରାମଚନ୍ଦ୍ର ସୀତାଙ୍କ ପତିସ୍ୱରୂପ ସେ ତାହାଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ଦେଖିବାକୁ ଧର୍ମତଃ, ନ୍ୟାୟତଃ ବାଧ୍ୟ, କିନ୍ତୁ ଅଯୋଧ୍ୟାବାସିଙ୍କ ଶାସନନିମନ୍ତେ ଯେତେବେଳେ ନିଜ ଉପରେ ନେଇ ଗୋଟିଏ ବା’ ନେଲେ, ସେତେବେଳେ ସେ କେବଳ ସୀତାଙ୍କ ପତି ନୁହନ୍ତି, ସେତେବେଳେ ସେ ସୀତାଙ୍କଠାରୁ ଅଧିକ ସମଗ୍ର ଅଯୋଧ୍ୟାର ପତି । ସୁତରାଂ ସେ ବା’ର କାର୍ଯ୍ୟ କରିବାକୁ ନିଜ ବ୍ୟକ୍ତିଗତ ଭାବ ବା ସୁଖ ସ୍ୱାଚ୍ଛନ୍ଦ୍ୟ ପରିତ୍ୟାଗ କଲେ । ମହାଭାରତ

ଯୁଦ୍ଧରେ ମଧ୍ୟ ଏହି କା'ର ଅଦ୍ଭୁତ ଶକ୍ତି ପରିଲକ୍ଷିତ ହୁଏ । ଦିନବେଳେ ଘୋର ସମର ସମୟରେ ଯେଉଁ ଦୁଇ ଜଣ ପରସ୍ପରର ନିଧନ ନିମନ୍ତେ ସଚେଷ୍ଟ, ରାତିରେ ସେହି ଦୁଇଜଣ ପରସ୍ପରର ସ୍ନେହୀ ଭ୍ରାତା । ଯୁଦ୍ଧ କ୍ଷେତ୍ରରେ ଦୁଇ ଶତ୍ରୁ, କିନ୍ତୁ ଅର୍ଜ୍ଜୁନ ରାତିରେ ଦୁର୍ଯ୍ୟୋଧନଙ୍କ ଗୃହରେ ଭ୍ରାତାର ଉପଯୁକ୍ତ ସାଦର ସମ୍ଭାଷଣ ପାଉଥିଲେ । ଅର୍ଜ୍ଜୁନ ଦ୍ରୋଣାଚାର୍ଯ୍ୟଙ୍କର ପ୍ରିୟତମ ଶିଷ୍ୟ, କିନ୍ତୁ ଦ୍ରୋଣ କୌରବମାନଙ୍କ ନିମନ୍ତେ ନିଜ ଉପରେ ଯେତେବେଳେ ଗୋଟିଏ କା' ନେଲେ, ସେତେବେଳେ ସେ ଅର୍ଜ୍ଜୁନଙ୍କର ଘୋରତର ଶତ୍ରୁ; କିନ୍ତୁ ଦିନବେଳେ କା'ର କାର୍ଯ୍ୟ ଶେଷ ପରେ ରାତିରେ ସେ ଅର୍ଜ୍ଜୁନଙ୍କର ପରମାରାଧ୍ୟ ଗୁରୁଦେବ । ବର୍ତ୍ତମାନ ମଧ୍ୟ ଇଂଲଣ୍ଡରେ ରାଜନୈତିକ ସ୍ୱାଧୀନତା ନିମନ୍ତେ ସ୍ତ୍ରୀମାନେ ନିଜ ନିଜ ସ୍ୱାମୀମାନଙ୍କ ବିରୁଦ୍ଧରେ ଖଡ୍ଗହସ୍ତା; ପାରିବାରିକ ଜୀବନରେ ସେହି ସ୍ତ୍ରୀମାନେ ଆପଣା ଆପଣା ସ୍ୱାମୀମାନଙ୍କ ସହ ପ୍ରେମାଳାପରେ ସମୟ ଯାପନ କରନ୍ତି । ପାରିବାରିକ ଜୀବନରେ ସେମାନେ ନିଜ ନିଜ ସ୍ୱାମୀମାନଙ୍କର ସ୍ତ୍ରୀ, କିନ୍ତୁ ଯେତେବେଳେ ରାଜନୈତିକ ସ୍ୱାଧୀନତା ନିମନ୍ତେ ସମସ୍ତ ସ୍ତ୍ରୀ ଜାତି ସକାଶେ ନିଜ ନିଜ ଉପରେ ଗୋଟିଏ ଗୋଟିଏ କା' ନିଅନ୍ତି, ସେତେବେଳେ ସେମାନେ ସ୍ତ୍ରୀସ୍ୱାଧୀନତା ବିରୋଧୀ ସ୍ୱାମୀମାନଙ୍କ ବିରୁଦ୍ଧରେ ଖଡ୍ଗହସ୍ତରେ ଦଣ୍ଡାୟମାନା ।

ରାଜନୈତିକ ଓ ସାମାଜିକ ଜୀବନରେ ଏହି ବାଲକମନଙ୍କର କା' ନୀତିର କି ଅଦ୍ଭୁତ ଶକ୍ତି ତାହା ଦେଖାଗଲା । ଆମ୍ଭମାନଙ୍କର ବ୍ୟକ୍ତିଗତ ଜୀବନରେ ମଧ୍ୟ ପ୍ରତିପଦରେ ଆମ୍ଭେମାନେ ଏହି କା' ନୀତି ଅବଲମ୍ବନ କରୁ । ଆଜି ମୋର କିଛି ବ୍ୟାଧି ହେଲେ, ଜଣେ ବ୍ରାହ୍ମଣ ମୋ ନିମନ୍ତେ ନିଜ ଉପରେ ଗୋଟିଏ କା' ନେଇ ମହାଦେବଙ୍କ ନିକଟରେ ଆପଣାକୁ ବରଣ କରେ । ଆମ୍ଭମାନଙ୍କର ପୌରୋହିତ୍ୟ ପ୍ରଥା ଏହି କା' ନୀତି ଉପରେ ପ୍ରତିଷ୍ଠିତ । ଦୈନନ୍ଦିନ କାର୍ଯ୍ୟଠାରୁ ଆରମ୍ଭ କରି କୌଣସି ବିଶେଷ ଘଟନା ପର୍ଯ୍ୟନ୍ତ ପ୍ରତିକାର୍ଯ୍ୟରେ ଅଳ୍ପ ଧିକ

ପରିମାଣରେ ଆମ୍ଭେମାନେ ଏହି କାଂ ମତର ଅନୁସରଣ କରୁଁ, କିନ୍ତୁ ସେ ବିଷୟରେ ମନ ଦେଇ ତାହାକୁ ହୃଦୟଙ୍ଗମ କରିପାରୁ ନାହୁଁ । ତାହାର କାରଣ କେବଳ ଆମ୍ଭେମାନେ ଅଶିକ୍ଷିତ; ଜନସଙ୍ଖ୍ୟାରେ ଆମ୍ଭେମାନେ ଉପଯୁକ୍ତ ପରିମାଣରେ ଅଗ୍ରସର ହୋଇ ନାହୁଁ । ଅଜ୍ଞ ଥିବାରୁ ଆମ୍ଭେମାନେ ଶରୀରଠାରୁ ଆତ୍ମାକୁ ପୃଥକ୍ କରି ଦେଖିପାରୁ ନାହିଁ । ମାନବ ବିଭିନ୍ନ ଅବସ୍ଥାରେ ବିଭିନ୍ନ କାର୍ଯ୍ୟ କରୁ ପଛକେ, ଯେତେବେଳେ ଆମ୍ଭେମାନେ ଦେଖୁଁ ଏକ ଦେହଧାରୀ ସେହି ମାନବର ସେହି ସମସ୍ତ ବିଭିନ୍ନ ଅବସ୍ଥା, ସେତେବେଳେ ଆମ୍ଭେମାନେ ସେହି ମାନବକୁ ସବୁ ଅବସ୍ଥାରେ ସମାନ ଦେଖୁଁ । ଆମ୍ଭମାନଙ୍କର ବିଚାରଣାରେ ତାହାର ମାନସିକ ଅବସ୍ଥାମାନଙ୍କ ପ୍ରତି ସ୍ୱତନ୍ତ୍ର ଭାବରେ ପ୍ରଯୁଜ୍ୟ ନ ହୋଇ, ତାହାର ଜଡ଼ ପିଣ୍ଡ ପ୍ରତି ବିଶେଷରୂପେ ଅର୍ପିତ ହୁଏ ଏବଂ ଆମ୍ଭେମାନେ ଜଡ଼ ପିଣ୍ଡ ପ୍ରତି ସ୍ନେହ, ମାୟା, ଭକ୍ତି, ରାଗ, ଦ୍ୱେଷ ସମସ୍ତ ଦେଖାଇଥାଉଁ । ବୌଦ୍ଧଯୁଗକୁ ପ୍ରତ୍ୟାବର୍ତ୍ତନ କଲେ ଆମ୍ଭମାନଙ୍କର ଏହି ଉକ୍ତିର ଯଥାର୍ଥ୍ୟ ହୃଦୟଙ୍ଗମ ହୋଇ ପାରିବ । ବୌଦ୍ଧଧର୍ମ ଭାରତରେ ଏତେ ପ୍ରବଳ ବେଗରେ ପ୍ରସାରିତ ହେବାର କାରଣ କେବଳ ଅଶିକ୍ଷିତ ଜନସାଧାରଣ ଈଶ୍ୱରଙ୍କ ସମ୍ବନ୍ଧରେ ବେଦାନ୍ତର ଉଚ୍ଚ ଶିକ୍ଷା ବୁଝିବାକୁ ଅକ୍ଷମ ହୋଇ ଯେତେବେଳେ ଈଶ୍ୱରପ୍ରତିମ ନିର୍ମଳଚରିତ୍ର ବୁଦ୍ଧଦେବଙ୍କୁ ସ୍ୱଚକ୍ଷୁରେ ଦର୍ଶନ କଲେ, ସେତେବେଳେ ତାହାଙ୍କ ପ୍ରତି ସେମାନଙ୍କ ଭକ୍ତି-ଉତ୍ସ ସ୍ୱତଃ ପ୍ରବାହିତ ହେଲା । ପୁନଶ୍ଚ ଯେତେବେଳେ ସାକାର ଉପାସନା ଦେଶରେ ପ୍ରଚରିତ ହେଲା, ସେତେବେଳେ ଜନସାଧାରଣ ଈଶ୍ୱରଙ୍କୁ କାଷ୍ଠ ପ୍ରସ୍ତର ମୂର୍ତ୍ତି ଆକାରରେ ସ୍ୱଚକ୍ଷୁରେ ଦର୍ଶନ କରି ଏକାବେଳକେ ବୌଦ୍ଧଧର୍ମ ପରିତ୍ୟାଗ କରନ୍ତେ, ବୌଦ୍ଧଧର୍ମ ତାହାର ଜନ୍ମଭୂମି ଭାରତବର୍ଷରୁ ସମୂଳେ ଉତ୍ପାଟିତ ହେଲା । ଖ୍ରୀଷ୍ଟିୟାନ ଧର୍ମ ରାଜ୍ୟରେ ଏହି ସତ୍ୟ ପ୍ରମାଣିତ । ଖ୍ରୀଷ୍ଟଧର୍ମ ବହୁଳ ପ୍ରଚରିତ ହେବାର ଯେଉଁ ପାଞ୍ଚଗୋଟି କାରଣ ସୁନାମଧନ୍ୟ ଲେଖକ ଗିବନ୍ ତାଙ୍କର "Decline and fall of the Roman Empire" ରେ

ଦେଖାଇ ଅଛନ୍ତି, କେବଳ ସେହି ଗୁଡ଼ିକ ନୁହେଁ, ତାହାର ପ୍ରଧାନ କାରଣ ଯିଶୁଖ୍ରୀଷ୍ଟ ଈଶ୍ୱରଙ୍କର ଅବତାରସ୍ୱରୂପ ଯେତେବେଳେ ଜନ ସାଧାରଣଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲେ, ଲୋକେ ତାହାଙ୍କ ଉପରେ ପୂର୍ଣ୍ଣ ବିଶ୍ୱାସ କରି ତାଙ୍କର ଧର୍ମ ଗ୍ରହଣ କଲେ ଏବଂ କ୍ରମେ କ୍ରମେ ସେ ଧର୍ମ ଏତେ ପ୍ରବଳଭାବରେ ପ୍ରଚାରିତ ହେଲା ଯେ, ବିଖ୍ୟାତ ରୋମ ସାମ୍ରାଜ୍ୟର ସମସ୍ତ ସୈନିକ ଦଳ ତାହା ନିକଟରେ ପରିଶେଷରେ ନତମସ୍ତକ ହେଲା । ଦାର୍ଶନିକମାନେ ଗୁଣଗତ ବା ଆଧ୍ୟାତ୍ମିକ ଚିନ୍ତା କରି ପାରନ୍ତି, କିନ୍ତୁ ଜନସାଧାରଣଙ୍କ ଚିନ୍ତା ନିମନ୍ତେ ବିଶେଷ ଜଡ଼ ବସ୍ତୁର ପ୍ରୟୋଜନ । ଆମ୍ଭେମାନେ ବର୍ତ୍ତମାନ ସେହି ଜନସାଧାରଣଙ୍କ ଶ୍ରେଣୀର ଅନ୍ତର୍ଭୁକ୍ତ । ଏହି ରୂପ ଦେଖାଯାଏ ଯେ, ବ୍ୟକ୍ତିଗତ ମନୋମାଳିନ୍ୟ ସାମାଜିକ ବା ଜାତୀୟ କାର୍ଯ୍ୟରେ ବିଶେଷ ଅନ୍ତରାୟ ହୋଇଥାଏ । ମୋର ଅମୁକଙ୍କ ସଙ୍ଗେ ବିଦ୍ୱେଷ ଭାବ ଅଛି, ତେଣୁ ଅମୁକ ଯେଉଁ କାର୍ଯ୍ୟରେ ହସ୍ତ ଦେଇ ଅଛନ୍ତି, ତାହା ସାଧାରଣ ହିତକର କାର୍ଯ୍ୟ ହୋଇ ପଛକେ, ମୁଁ ତହିଁରେ ଯୋଗ ଦେବା ପାଇଁ ଅସ୍ୱୀକୃତ । ମୁଁ ଯଦି ଅନ୍ୟ କୌଣସି ସମ୍ପ୍ରଦାୟର ମନ୍ଦ କାର୍ଯ୍ୟରେ ଘୃଣା ପ୍ରକାଶ କରେଁ, ସେହି ସମ୍ପ୍ରଦାୟଭୁକ୍ତ ମୋର ବନ୍ଧୁ ମୋତେ ପରିତ୍ୟାଗ କରିବାକୁ ଲେଶମାତ୍ର କୁଣ୍ଠିତ ନୁହନ୍ତି । ସାମାନ୍ୟ ବ୍ୟକ୍ତିଗତ ବିଦ୍ୱେଷଭାବ କୌଣସି ସାଧାରଣ ମଙ୍ଗଳକର କାର୍ଯ୍ୟରେ ବାଧା ଜନ୍ମାଇବା ଘୋର ଅଶିକ୍ଷିତ ଓ ଅନୁନ୍ନତ ମନୁଷ୍ୟର କାର୍ଯ୍ୟ । ତୁମ୍ଭେ ତୁମ୍ଭ ବ୍ୟକ୍ତିଗତ ଜୀବନରେ ତୁମ୍ଭ ବିଦ୍ୱେଷୀର ଯେ କୌଣସି ଅନିଷ୍ଟ କରିପାର । କିନ୍ତୁ ଯେତେବେଳେ କୌଣସି ସମ୍ମିଳନୀ ନିମନ୍ତେ ସେ ନିଜ ଉପରେ ଗୋଟିଏ କଠିଣ କାର୍ଯ୍ୟ କରୁଅଛନ୍ତି, ସେତେବେଳେ ତୁମ୍ଭେ ସେହି ସମିତିର ଅନ୍ତର୍ଭୁକ୍ତ ଥାଇ ତାହାଙ୍କ ସହିତ ଭ୍ରାତୃଭାବରେ କାର୍ଯ୍ୟ କର । ଦିନେ ଜଣେ ବନ୍ଧୁଙ୍କୁ କୌଣସି ସାଧାରଣ ଅହିତକର କାର୍ଯ୍ୟର ସମାଲୋଚନା କରିବାକୁ କହିବାରୁ ସେ ଉତ୍ତର କଲେ "ଅମୁକ ମୋର ଜଣେ ବନ୍ଧୁ, କାଳେ ସେ ମୋତେ ଅବିଶ୍ୱାସୀ ମନେ କରିବେ; ମୁଁ କିପରି ଏ ବିଷୟରେ କିଛି କହିବି ?" ଆମ୍ଭେମାନେ କହିଲୁଁ, "କାହିଁକି

ଭୂତୈମୃତ କିମ୍ବା ବ୍ୟକ୍ତିଗତ ସ୍ୱଭାବରେ କିଛି କରିବ ନାହିଁ, ସାଧାରଣଙ୍କ ନିମନ୍ତେ ନିଜ ଉପରେ ଗୋଟିଏ ଢା'ରଣୀ ଏ କାର୍ଯ୍ୟ କରିବ, ସେଥିରେ ତୁମ୍ଭ ବନ୍ଧୁ ଯୁକ୍ତ ହେବେ କାହିଁକି ?" ଶେଷରେ ଉକ୍ତ ବନ୍ଧୁ ନିତାନ୍ତ ଅସ୍ୱୀକାର କଲେ । ଅମ୍ଭମାନଙ୍କର ଅବସ୍ଥା ଏହି ଭଳି ! ସବୁ କାର୍ଯ୍ୟ ନ୍ୟାୟ ହେଉ ବା ଅନ୍ୟାୟ ହେଉ, ସୁବିଧାଜନକ ହେଉ ବା ଅସୁବିଧାଜନକ ହେଉ, ତାହା ଅମ୍ଭର ଶିରୋଧାର୍ଯ୍ୟ । ଏହାର ପ୍ରଧାନ କାରଣ ଏହି ଯେ ଅମ୍ଭେମାନେ ଢା' ଗୀତ ସଦାସର୍ବଦା ଅନୁସରଣ କରୁଁ, ତଥାପି ତାହା ହୃଦୟଙ୍ଗମ କରିବାକୁ ଅକ୍ଷମ । ଅମ୍ଭେମାନେ ଅଶିକ୍ଷିତ, ତେଣୁ ଅମ୍ଭର ଚିନ୍ତା ଗୁଣଗତ ବା ଆଧ୍ୟାତ୍ମିକ ହୋଇ ନ ପାରି ବସ୍ତୁଗତ ବା ଭୌତିକ ହୋଇଅଛି । ଏହି ଢା' ଗୀତ ଗୋଟିଏ ଆଧ୍ୟାତ୍ମିକ ବିଷୟ ଏବଂ ଏହାର ହୃଦୟଙ୍ଗମ ନିମନ୍ତେ ଆଧ୍ୟାତ୍ମିକ ଚିନ୍ତା ଆବଶ୍ୟକ । ଦେଶରେ ଶିକ୍ଷା ଓ ସଭ୍ୟତା ବୃଦ୍ଧି ପାଇଲେ ଏହି ଢା' ଗୀତ ଲୋକେ ବୁଝି ପାରିବେ ।

ଅତଏବ ପାଠକଗଣ ! ବାଳକମାନଙ୍କର ଢା' ଗୀତରେ କେତେ ଅଦ୍ଭୁତ ଗୁଣ ଅଛି ତାହା ଦେଖିଲେ ? ଜୀବନମାର୍ଗରେ ଅଗ୍ରସର ହେଉଁ ହେଉଁ ଯେତେବେଳେ କର୍ତ୍ତବ୍ୟ ସାଧନରେ ବାଧା ବିଘ୍ନ ଉପସ୍ଥିତ ହେବ, ଯେତେବେଳେ ସାଧାରଣ ହିତକର କାର୍ଯ୍ୟ କରିବାକୁ ଗଲାବେଳେ ନିଜ ନିଜ ବନ୍ଧୁମାନଙ୍କ ଦ୍ୱାରା ତାଡ଼ିତ ଓ ଘୃଣିତ ହେବ । ଯେତେବେଳେ ବନ୍ଧୁ ବିୟୋଗ ଦୁଃଖ ହୃଦୟକୁ ଏକାବେଳକେ ଅବସନ୍ନ କରି ପକାଇବ, ଯେତେବେଳେ ସଂସାର ମଧ୍ୟରେ ନିଜ ବ୍ୟତୀତ ଅନ୍ୟ କାହାକୁ ଆପଣାର ଆତ୍ମୀୟ କରି ନ ପାଇବ, ଚତୁର୍ଦ୍ଦିଗ ନିରାଶ ଓ ଅନ୍ଧକାରାଚ୍ଛନ୍ନ ଦେଖାଯିବ, ସେତେବେଳେ ହୃଦୟରେ ଆଶ୍ୱାସନା ଆଣିବା ନିମନ୍ତେ, ହୃଦୟରେ ପୁନର୍ବାର ବଳ ଓ ଦମ୍ଭ ସଞ୍ଚାର କରିବା ନିମନ୍ତେ, ନିଜ ନିଜ ବାଲ୍ୟାବସ୍ଥାକୁ ପ୍ରତ୍ୟାବର୍ତ୍ତନ କରିବେ; ସେତେବେଳେ ବାଳକମାନଙ୍କର ଏହି ଢା' ଗୀତ ସ୍ମରଣ କରି ହୃଦୟକୁ ଉତ୍ତେଜିତ ଓ ଜାଗ୍ରତ କରିବେ । ସଂସାରକ୍ଷେତ୍ର ବଡ଼ ଜଟିଳ, ସେହି କ୍ଷେତ୍ରରେ ନିଜ କର୍ତ୍ତବ୍ୟପଥ ଅତି ଜଟିଳ । ଏହି ଜଟିଳ ସଂସାରର ଜଟିଳ ପଥରେ ଅଗ୍ରସର ହେବା ନିମନ୍ତେ ଏହି ଢା'

ମାତ୍ର ଅମ୍ଭମାନଙ୍କର ପଥକ ଅବଲମ୍ବନ ହେବା ଉଚିତ । ଭଗବାନ କରନ୍ତୁ, ଆମ ଦେଶରେ ଲୋକେ ଶିକ୍ଷିତ ଓ ସଭ୍ୟ ହୁଅନ୍ତୁ, ଆମ ଦେଶରେ ଶିକ୍ଷା ଓ ସଦାଚାର ଅନେକ ଘଟନ୍ତୁ, ଏହି ନୀତିର ମର୍ମ ଲୋକେ ହୃଦୟଙ୍ଗମ କରନ୍ତୁ, ଏହି ବାଳକମାନଙ୍କ କା' ମାତ୍ର ସମସ୍ତ ଦେଶବାସୀ ଏକଚିତ୍ତରେ ଅନୁସରଣ କରନ୍ତୁ, ଦେଶ ଧନ୍ୟ ହେଉ ଏବଂ ଅମ୍ଭେମାନେ ନିଜ ନିଜ କାର୍ଯ୍ୟ ସାରି ନିଜକୁ ପବିତ୍ର କରୁଁ ଓ ଶାନ୍ତ ସମ୍ଭୋଗରେ ବାସ କରୁଁ । *

---

* ଲେଖକ ମିଶର ଦେଶର କା' ଭିନ୍ନ ଅର୍ଥରେ ବ୍ୟବହୃତ ହେବାର ଦେଖାଇଛନ୍ତି । କା'ର ସେହି ( ଜୀବାତ୍ମା ) ଅର୍ଥରେ ଉତ୍କଳ ଜନସାଧାରଣ ଅଉ ଗୋଟିଏ ଶବ୍ଦ ବ୍ୟବହାର କରନ୍ତି । ସେ ଶବ୍ଦଟି ସା' । ସାଧାରଣଙ୍କର ବିଶ୍ୱାସ ମନୁଷ୍ୟ ଶୋଇଲେ ଏହି ସା' ପକ୍ଷୀ ରୂପ ଧାରଣ କରି ଉଡ଼ିଯାଇ ବିଚରଣ କରେ । ସେତେବେଳେ ସେ ଯାହା ଦେଖୁଥାଏ ମନୁଷ୍ୟ ସ୍ୱପ୍ନରେ ତାହାହିଁ ଦେଖେ । ସାଧାରଣ ଏହିପରି ଶରୀର ଓ ଅତ୍ମାର ପାର୍ଥକ୍ୟ ବୁଝନ୍ତି । ଆଧୁନିକ Theosophist ମାନେ ମଧ୍ୟ ଏହି ମତର ପୋଷକତା କରନ୍ତି ।

ମୃ° ସ—

# ଧନାଦପି ଗରୀୟସୀ

ଶ୍ରୀ ଶଶିଭୂଷଣ ରାୟ

ସମସ୍ତ ଜୀବନ ଯେ କେବଳ ପାନାହାରରେ ମତ୍ତ ହୋଇ ଅର୍ଥ ସଞ୍ଚୟ କରି ଅଛନ୍ତି, ଯେ କେବେହେଁ ଶୋକାର୍ତ୍ତର ଅଶ୍ରୁ ପୋଛି ନାହାନ୍ତି କିମ୍ବା ଶୀତାର୍ତ୍ତର ଶୀତ ନିବାରଣ କରି ନାହାନ୍ତି, ତାହାଙ୍କର ବଞ୍ଚି ରହିବାରେ ଜଗତର ଲାଭ କଅଣ ? ତାଙ୍କ ଜୀବନ ଏକାବେଳକେ ବ୍ୟର୍ଥ ।

ମନୁଷ୍ୟ ଯେତେବେଳେ ମରିଯାଏ, ଲୋକେ ପଚାରନ୍ତି ସେ କେତେ ସମ୍ପତ୍ତି ରଖିଗଲା ? କିନ୍ତୁ ପରଲୋକ ଦ୍ୱାରରେ ସେ ଯେତେବେଳେ ଉପସ୍ଥିତ ହୁଏ, ସେତେବେଳେ ଦେବଦୂତ ପଚାରନ୍ତି—ତୁମ୍ଭେ ଆସିବା ପୂର୍ବରୁ କେଉଁ ସତ୍କାର୍ଯ୍ୟ କିମ୍ବା କେଉଁ ପୁଣ୍ୟ ଅନୁଷ୍ଠାନ କରି ଆସିଅଛ ?"

ଶୀତକାଳରେ ଦିନେ କଲିକତାରେ ଶୀତକ୍ଲିଷ୍ଟ ଜୀର୍ଣ୍ଣ ପରିହିତ, ମୁଖ ରକ୍ତହୀନ, ଶୀତରେ ବିବର୍ଣ୍ଣ, ନଗ୍ନ ଓ କ୍ଷତବିକ୍ଷତ ପଦଦ୍ୱୟ ଦେଇ ଗୋଟିଏ ୧୨।୧୩ ବର୍ଷର ବାଳକ ଜଣେ ଭଦ୍ରଲୋକଙ୍କ ଘରେ ସକାଳ

ଏଥର ବେଳେ ପୁଣି କରୁଣ କଣ୍ଠରେ କହିଲା "ଦିଆସିଲିଇ କିଣନ୍ତୁ ମହାଶୟ ।" ଭଦ୍ରଲୋକ କହିଲେ "ନା ମୋର ଦିଆସିଲିଇ ଦରକାର ନାହିଁ ।" ପିଲାଟି କହିଲା "କିଣନ୍ତୁ ବାବୁ, ପଇସା ଲେଖାଏଁ ବାକ୍ସ ।" ଭଦ୍ରଲୋକ କହିଲେ "ମୋର ଯେ ଦରକାର ନାହିଁ ବୋଲି କହିଲି ।" ପିଲାଟି କାତର ହୋଇ କହିଲା, "କିଣନ୍ତୁ, ଡଜନକୁ ଦଶପଇସାରେ ଦେବି ।"

ଭଦ୍ରଲୋକ ଆଉ କଅଣ କରିବେ, ପିଲାଟି ନିକଟରୁ ପରିତ୍ରାଣ ପାଇବା ପ୍ରତ୍ୟାଶେ କହିଲେ "ଦିଅ ଡଜନେ ।" କିନ୍ତୁ ପର ମୁହୂର୍ତ୍ତରେ ଦେଖିଲେ ତାହାଙ୍କ ପାଖରେ ଖୁଚୁରା ପଇସା ନାହିଁ, ତେଣୁ କହିଲେ "ଅଚ୍ଛା; କାଲି ଡଜନେ କିଣିବି ଆଜି ଥାଉ ।" ପିଲାଟି ମିନତି କରି କହିଲା, "କିଣନ୍ତୁ, ଆଜି କିଣନ୍ତୁ । ମୁଁ ଧାଇଁ ଯାଇ ଆପଣଙ୍କର ଟଙ୍କା ଭଙ୍ଗାଇ ଦେବି—ମୋତେ ଭାରି ଭୋକ ଲାଗୁଛି ।" ଉପାୟାନ୍ତର ନ ଦେଖି ଭଦ୍ରଲୋକଟି ଅବଶେଷରେ ଗୋଟିଏ ଟଙ୍କା ପିଲାଟି ହାତକୁ ବଢ଼ାଇ ଦେବାରୁ ପିଲାଟି ସେହି ମୁହୂର୍ତ୍ତରେ ଧାଇଁ ଚାଲିଗଲା । ଅନେକକ୍ଷଣ ଚାଲିଗଲା, ବାଳକଟି ପ୍ରତ୍ୟାଶେ ସେ ଅପେକ୍ଷା କଲେ, କିନ୍ତୁ ତାହାର ଦେଖା ନାହିଁ । ଥରେ ମନେ ହେଲା, ଟଙ୍କାଟି ବୋଧହୁଏ ନଷ୍ଟ ହେଲା । କିନ୍ତୁ ପୁଣି ମନେ କଲେ, 'ଏ ଭଳି ସରଳ ମୁହଁ ଯାହାର, ସେ କଅଣ ଠକେଇବ ?

ସନ୍ଧ୍ୟା ଉତ୍ତାରୁ ଭଦ୍ରଲୋକଙ୍କ ଭୃତ୍ୟ କହିଲା, ଗୋଟିଏ ଛୋଟ ପିଲା ଦେଖା କରିବା ପାଇଁ ଆସିଅଛି । ପିଲାଟି ଭିତରକୁ ଆସିବାରୁ ସେ ଦେଖିଲେ ସେ ଦିଆସିଲିଇ ବିକାଳିର ସାନ ଭାଇ । ଦୁଇ ଭାଇଙ୍କ ଚେହେରାରେ ଯଥେଷ୍ଟ ସାଦୃଶ୍ୟ ରହିଅଛି । ଏ ଭାଇଟି ବଡ଼ ଭାଇଠାରୁ ବଳି ଅପରିଚ୍ଛନ୍ନ, କୃଶକାୟ ଓ ଦରିଦ୍ର । ଛିନ୍ନ ବସ୍ତ୍ର ମଧ୍ୟରେ ହାତ ପୂରାଇ ସେ କ୍ଷଣକାଳ କଅଣ ଅନୁସନ୍ଧାନ କଲା, ଏହା ଉତ୍ତାରୁ କହିଲା "ଆପଣ କଅଣ ମୋର ଭାଇଠାରୁ ଦିଆସିଲିଇ କିଣିଥିଲେ ?" ଭଦ୍ରଲୋକ ହଁ ଭରିବାରୁ ସେ କହିଲା "ଏହି ଛଅ ଅଣା ନିଅନ୍ତୁ—ଏବ

ଟଙ୍କା ମଧ୍ୟରୁ । ମୋହର ଖାଇ ଅସି ପାରିବ ନାହିଁ । ତାହାକୁ ବାଟରେ ଗାଡ଼ି ମାଡ଼ ଦେଇଅଛି । ତାହାର ଗୋଡ଼ ଯୋଡ଼ାକ ଭାଙ୍ଗି ଯାଇଅଛି । ଡାକ୍ତର କହିଲେ ସେ ବଞ୍ଚି ପାରିବ ନାହିଁ । ଆପଣଙ୍କ ଟଙ୍କାଟି ମଧ୍ୟରୁ ଛଅ ଅଣା ଛଡ଼ା ସବୁ ପଇସା ଓ ଦଶ ବାକ୍ସ ଦିଆସିଲିଇ ତାହାର ହଜି ଯାଇଅଛି । ସେହି ଛଅ ଅଣା ପଇସା ଧରି ଆପଣଙ୍କ ନିକଟକୁ ଧାଇଁ ଆସିଲି ।" ଏହା କହି ସେ ଭେଁ ଭେଁ କରି କାନ୍ଦି ଉଠିଲା । ଭଦ୍ରଲୋକଟି ସେ ପିଲାକୁ ଖୁଆଇଲେ ଏବଂ ତାହା ସଙ୍ଗରେ ତାହା ଭାଇକୁ ଦେଖିବାକୁ ଗଲେ ।

ସେଠାକୁ ଯାଇ ଦେଖିଲେ ପିଲା ଦୁହେଁ ତାହାଙ୍କର ବିମାତା ପାଖରେ ଗୋଟିଏ ଭିକାରୁଣୀର ଅପରିଷ୍କାର ଘରେ ରହନ୍ତି । ସେ ଯିବା ସମୟରେ ବଡ଼ ପିଲାଟି ଗୋଟିଏ ସାନ କାଠଗଦା ଉପରେ ଶୋଇ ରହିଥିଲା । ତାହାଙ୍କୁ ଦେଖି ଶକ୍ତି ସାରି କହିଲା "ମୁଁ ଟଙ୍କା ଭଙ୍ଗାଇ ଆପଣଙ୍କ ନିକଟକୁ ଯାଉଥିଲି । ବାଟରେ ଗୋଟିଏ ବଡ଼ ବଗି ଗାଡ଼ିର ଧକ୍କାରେ ମୁଁ ପଡ଼ିଗଲି, ଘୋଡ଼ା ଦୁଇଟା ମୋହର ଗୋଡ଼ ଭାଙ୍ଗି ଦେଇ ଧାଇଁ ଗଲେ । ମୁଁ ତ ମରିବାକୁ ବସିଛି, କିନ୍ତୁ ମୋର ସାନ ଭାଇ କାହାକୁ ସାନ, ତାହା ଖବର କିଏ ବୁଝିବ ? ବୁଧାକାନ୍ତ, ଭାଇ ମୋର ! ମୁଁ ଗଲାପରେ ତୁ କଅଣ କରିବୁ, କାହା ପାଖରେ ରହିବୁ ?" ଭଦ୍ରଲୋକଟି ତାହାର ଦୁର୍ବଳ ହାତ ଧରି କହିଲେ, "କିଛି ଚିନ୍ତା କର ନାହିଁ, ମୁଁ ତୁମ ଭାଇର ସବୁ ଖବର ବୁଝିବି ।" ଏହି କଥା ଶୁଣି ସେ ଭଦ୍ରଲୋକଙ୍କ ମୁହଁ ଆଡ଼କୁ କୃତଜ୍ଞତାପୂର୍ଣ୍ଣ ସକରୁଣ ଦୃଷ୍ଟିରେ ଅନାଇଲା । କିଛି କହିବାର ଇଚ୍ଛା ତାହାର ଥିଲା, କିନ୍ତୁ ଆଉ ଶକ୍ତି ହେଲା ନାହିଁ । କ୍ରମେ କ୍ରମେ ତାହାର ଚକ୍ଷୁର ଜ୍ୟୋତି କ୍ଷୀଣ ହୋଇ ଆସିଲା, ଏହା ଉତ୍ତାରୁ ସବୁ ଶେଷ ।

ସେ ବାଳକଟିର ଅଶନ ବସନ କିଛି ନ ଥିଲା । ସେ କେବେହେଁ ଜୋତା ପିନ୍ଧି ନାହିଁ, ଗାଡ଼ି ମୋଟରରେ ଚଢ଼ିବା ତ ଅତି ଦୂରର କଥା । କିନ୍ତୁ

ତାହାର ସତ୍ୟନିଷ୍ଠା ଏବଂ ମହତ୍ତ୍ୱ କେତେ ଜଣ ଲକ୍ଷପତିଙ୍କର ଅଛି ? ଏ ଘଟଣାଟି ସମ୍ପୂର୍ଣ୍ଣ ସତ୍ୟ, ଏହା ଏହି ଲେଖକର ଜଣେ ପରମାତ୍ମୀୟ ବନ୍ଧୁଙ୍କର ଅନୁଭୂତିସିଦ୍ଧ ।

ମନୁଷ୍ୟର ପେଶା କଅଣ ଏବଂ ସେ କଅଣ କରି ପାରେ, ଏହାଦ୍ୱାରା ମନୁଷ୍ୟର ମହତ୍ତ୍ୱ ବିଚାର କରିବା ଅନ୍ୟାୟ ଓ ଅସଙ୍ଗତ । ଲୋକଟି କେଉଁ ଧରଣର ତାହା ଦେଖି ତାହାର ମହତ୍ତ୍ୱ ବିଚାର କରିବାକୁ ହେବ । ଯେଉଁ ଧନୀଙ୍କର ପ୍ରାସାଦ ନିର୍ମାଣରେ ସହାୟତା କରିବା ପାଇଁ ମୂଲିଆ ଦିନସାରା ଇଟା କାଠ ପ୍ରଭୃତି ବୋଝ ମୁଣ୍ଡାଏ, ଅନୁସନ୍ଧାନ କଲେ ହୁଏ ତ ଜଣା ଯିବ ସେ ଧନୀଙ୍କଠାରୁ ମୂଲିଆଟି ଅଧିକ ମହତ୍ । ପ୍ରକୃତ ଅର୍ଥିକ ଉନ୍ନତି ଅନେକ ସ୍ଥଳରେ ମାନସିକ ଓ ନୈତିକ ଉନ୍ନତିର ଅନ୍ତରାୟ ହୋଇଥାଏ । ଜଣେ ବିପୁଳ ଧନର ଅଧିକାରୀ ହୁଏ, ମାତ୍ର ଏହା ଫଳରୁ ଶତ ଶତ ଲୋକ ନିଃସ୍ୱ ଅସହାୟ ହୋଇପଡ଼ନ୍ତି । ସେ ଧନର ଭିତ୍ତି ମୂଳରେ କେତେ କ୍ଷୁଧିତର ଅଳ, ପୀଡ଼ିତର ବିଳାପ, ନୈରାଶ୍ୟର ହାହାକାର ସଞ୍ଚିତ, କିଏ ତାହାର ଇୟତ୍ତା କରିବ ? କିନ୍ତୁ ଧୀ-ଶକ୍ତି କିମ୍ବା ଚରିତ୍ରଗୌରବରେ ଯେ ସାର୍ଥକ ହୁଅନ୍ତି ସେ କାହାର କ୍ଷତି କରନ୍ତି ନାହିଁ; ସେ ସମାଜକୁ ଉନ୍ନତ କରନ୍ତି, ଲାଭବାନ କରନ୍ତି, ଅତୁଳନୀୟ ଧନର ଅଧିକାରୀ କରନ୍ତି । ଚରିତ୍ରର ସ୍ଥାପ କେବେହେଁ ଲୋପ ହୋଇ ଯିବାର ନୁହେଁ; ଏହି ଛାପଦ୍ୱାରା ସବୁ ସମୟରେ ସକଳ କାଳର ଯଥାର୍ଥ ମୂଲ୍ୟ ନିରୂପିତ ହୋଇଥାଏ ।

ପ୍ରକୃତ ଧନଲାଳସାରେ ମନୁଷ୍ୟ ଯେତେବେଳେ ସଂଗ୍ରାମରେ ମାତିଯାଏ, ସେତେବେଳେ ପ୍ରାୟଶଃ ହିଁ ତ ତାହାର ଯେ ନୈତିକ ଅବନତି ଘଟିଥାଏ, ସେ କଥା ଭଲ ଭାବରେ ବୁଝିଥିଲେ ବୋଲି ଯୀଶୁଖ୍ରୀଷ୍ଟ ଶିଷ୍ୟମାନଙ୍କୁ କହିଥିଲେ—"ନିଶ୍ଚୟ କରି କହୁଅଛି, ଧନୀ କଦାପି ସ୍ୱର୍ଗରାଜ୍ୟରେ ପ୍ରବେଶ କରିବେ ।" ଯେତେବେଳେ ଟଙ୍କାର କଣା ଧରେ ସେତେବେଳେ ସହସ୍ର ପାଇଲେ ସ୍ୱଭାବତଃ ଲକ୍ଷ ଆଡ଼କୁ ମନ ଧାବିତ ହୁଏ ଏବଂ ଅର୍ଥ ପଛେ ପଛେ ଧାଇଁବା ବେଳେ ଚରିତ୍ରର ମହତ୍ତ୍ୱ ଓ ନ୍ୟାୟବୋଧ ପଦଦଳିତ ହୋଇ ମରିଯାଏ ।

ଅର୍ଥ ସଞ୍ଚୟ କରିବାକୁ ଯାଇ ମନ ଯେବେ ହୀନ ହୁଏ, ଆଧ୍ୟାତ୍ମିକ ଜୀବନର ଉତ୍ସ ଯେବେ ଶୁଷ୍କ ହୁଏ, ସୌନ୍ଦର୍ଯ୍ୟ ଯେବେ କବାବନ୍ଧ ହୁଏ, ଯେବେ ଆମ୍ଭେମାନେ ପ୍ରକୃତିର କିମ୍ବା ଚାରୁଶିଳ୍ପର ସୌନ୍ଦର୍ଯ୍ୟ ପ୍ରତି ବିମୁଖ ଅବା ଉଦାସୀନ ହୋଇଯାଉଁ; ନ୍ୟାୟ ଅନ୍ୟାୟ ପାପ-ପୁଣ୍ୟବୋଧ ଯେବେ ଏକାକାର ହୋଇଯାଏ—ତେବେ ସେ ଅର୍ଥ ସଞ୍ଚୟରେ ପ୍ରୟୋଜନ କଅଣ ?

ଯେଉଁ ଅର୍ଥ ସଞ୍ଚୟ ମନୁଷ୍ୟକୁ ନୀଚ ମଳିନ ଜୀବନ ଯାପନ କରିବାକୁ ଶିକ୍ଷା ଦିଏ, ଅର୍ଥଚିନ୍ତାରେ ପାଗଳ ହୋଇ ଯେବେ ବନ୍ଧୁ, ଶିଳ୍ପ, ସଙ୍ଗୀତ, ଦେଶଭ୍ରମଣ ପ୍ରଭୃତି ତ୍ୟାଗ କରିବାକୁ ହୁଏ, ସେ ଭଳି ଅର୍ଥ ସଞ୍ଚୟ ପ୍ରକୃତ ମନୁଷ୍ୟତ୍ୱର ପରିପନ୍ଥୀ । ନିଜର ହୃଦୟ, ମନର ଉନ୍ନତି କିମ୍ବା ଅପରର ଭଲ କରିବାକୁ ଯେବେ ପରମାନନ୍ଦ ନ ହୁଏ, ପରମାନନ୍ଦ ଯେବେ କେବଳ ହୁଏ ଯେତେବେଳେ ଭାଳିବାକୁ ହେବ ସିନ୍ଧୁକ ଭିତରେ ଧନକୁ ଧନ ଟଙ୍କାରେ ପରିପୂର୍ଣ୍ଣ ହୋଇ ଉଠୁଅଛି, ତେବେ ସେ ଅର୍ଥ ସଞ୍ଚୟକୁ ଦୂରରୁ ସହସ୍ର ନମସ୍କାର ।

ଗ୍ରୀସ୍ ଦେଶର ରଜା ମିଡାସ ପ୍ରାର୍ଥନା କରିଥିଲେ ଯେ, ସେ ଯାହା ସ୍ପର୍ଶ କରିବେ ସବୁ ଯେପରି ସୁନା ହୋଇଯିବ । ସେ ଭାବିଥିଲେ ଏହା ହେଲେ ଅପରିମିତ ସୁଖ ହେବ । ଦେବତା ତାହାଙ୍କର ପ୍ରାର୍ଥନା ଗ୍ରାହ୍ୟ କଲେ । ତତ୍ପଶ୍ଚାତ୍ ରଜାଙ୍କର ପରିଚ୍ଛଦ, ଆହାର୍ଯ୍ୟ, ପାନୀୟ ପ୍ରଭୃତି ସବୁ ସୁନା ହୋଇଗଲା । ପୁଷ୍ପ ଚୟନ କଲେ ସେହି ପୁଷ୍ପ ସୁନାରେ ପରିଣତ ହେଲା । ଅବଶେଷରେ ତାହାଙ୍କ ଶିଶୁକନ୍ୟାକୁ ଯେପରି ଚୁମ୍ବନ କଲେ ସେ ପ୍ରାଣହୀନ ସ୍ୱର୍ଣ୍ଣପିଣ୍ଡରେ ପରିଣତ ହୋଇଗଲା । ସେତେବେଳେ ରଜା ହାୟ ହାୟ କରି ଅକୂଳ ସ୍ୱରରେ କହି ଉଠିଲେ, "ହେ ଦେବତା, ତୁମ୍ଭର ସୁବର୍ଣ୍ଣ ସ୍ପର୍ଶ ଫେରାଇ ନେଇ ସକଳ ସ୍ୱର୍ଣ୍ଣଠାରୁ ଯାହା ମୂଲ୍ୟବାନ ସେହି ପ୍ରାଣର ସ୍ପର୍ଶ ଦିଅ ।"

ମାର୍କିନ ଲୁଥାରଙ୍କ ଉଇଲରେ ଲେଖିଥିଲା ଯେ, ସେ ଅର୍ଥ କିମ୍ବା କୌଣସି ପ୍ରକାର ବହୁମୂଲ୍ୟ ପଦାର୍ଥ ରଖି ଯାଇ ନାହାନ୍ତି । କିନ୍ତୁ ସେ ଯେଉଁ ସମ୍ମାନର ସିଂହାସନରେ ଚିରକାଳ ସକାଶେ ଅଧିଷ୍ଠିତ ବିଶାଳ ସାମ୍ରାଜ୍ୟର ଅଧୀଶ୍ୱର ହୋଇଅଛନ୍ତି କେଉଁ ନରପତି ସିଂହାସନ ଉପରେ ସେଭଳି ପ୍ରତିଷ୍ଠିତ ହୋଇ ଅଛନ୍ତି ?

ଏହା ସର୍ବବାଦସମ୍ମତ ଯେ ଦେଶର ଖାଣ୍ଟି ମନୁଷ୍ୟହିଁ ଦେଶର ସର୍ବାପେକ୍ଷା ମୂଲ୍ୟବାନ ଉତ୍ପାଦାନ । ଯେ ଦେଶକୁ ଧନୀ କରନ୍ତି, ଯାହାଙ୍କୁ ପାଇ ଦେଶର ଲୋକେ ନିଜକୁ ଧନ୍ୟ ମନେ କରନ୍ତି, ଯେ ସାଧାରଣଙ୍କ ମଧ୍ୟରେ ନିଜର ଅର୍ଥ ଏବଂ ନିଜକୁ ମୁକ୍ତ ବିତରଣ କରି ଦିଅନ୍ତି, ଯେ ସମସ୍ତଙ୍କୁ ଦୁଃଖ ବେଳେ ସାହାଯ୍ୟ କରିବାକୁ ତତ୍ପର, ଯେ ଈଶ୍ୱରର କଣ୍ଠସ୍ୱରରୂପ, ଅଙ୍କର ଜ୍ୟୋତିଃରୂପ ଏବଂ ଖଡ଼୍ଗର ପଦଧ୍ୱନିରୂପ ଉଦ୍‌ବେଳିତ ହୁଅନ୍ତି, ସେ ମନୁଷ୍ୟହିଁ ସର୍ବାପେକ୍ଷା ଧନ୍ୟ ।

ସୁବିଖ୍ୟାତ ଋଷୀୟ ଲେଖକ ଟଲଷ୍ଟୟ୍ କହିଥିଲେ, "ଯେଉଁମାନେ ମାନବଜାତିର କଲ୍ୟାଣ ସାଧନ କରିଅଛନ୍ତି, ସେମାନଙ୍କ ବ୍ୟତୀତ ଅନ୍ୟ କୌଣସି ଲୋକଙ୍କୁ ମହତ୍ ବୋଲି ମଣେ ନାହିଁ ।

ମନୁଷ୍ୟ କେତେ ସମ୍ପତ୍ତିର ଅଧିକାରୀ ତାହାଦ୍ୱାରା ତାହାଙ୍କର ମୂଲ୍ୟ ନିରୂପିତ ହୁଏ ନାହିଁ । ସେ କଅଣ କରନ୍ତି ତାହାହିଁ ତାହାଙ୍କ ମୂଲ୍ୟ ନିରୂପଣର ଏକମାତ୍ର ମାପକାଠି ।

ଆମେରିକାର ଇତିହାସରୁ ଜଣାଯାଏ, ମାର୍କିନ କଂଗ୍ରେସରେ ମହାମତି ଓ୍ୱାସିଂଟନଙ୍କର ଗୋଟିଏ ପତ୍ର ପଠିତ ହୋଇଥିଲା । ତହିଁରେ ସେ ବୋଷ୍ଟନ ନଗର ଉପରେ ତୋପର ଗୋଳା ବର୍ଷଣ ଉଚିତ ବୋଲି ଲେଖିଥିଲେ । ପତ୍ରପାଠ ସମାପ୍ତ ହୁଅନ୍ତେ ସମସ୍ତ ସଭ୍ୟ ନିର୍ବାକ ହୋଇ ରହିଲେ, କାରଣ ସେମାନଙ୍କର ଅଜ୍ଞାତ ନ ଥିଲା ଯେ

ସେହି ସହରରେ ସେମାନଙ୍କ ସଭାପତି ମହାଶୟଙ୍କର ଅନେକ ସ୍ଥାବର ସମ୍ପତ୍ତି ଅଛି । ଅବଶେଷରେ ସଭାପତି ହ୍ୟାନ୍‌କକ୍‌ଙ୍କର ସେତେବେଳେ ଅଭିମତ ପଚରା ହେଲା, ସେତେବେଳେ ସେ ଅମ୍ଳାନବଦନରେ ଦୃଢ଼-କଣ୍ଠରେ କହିଲେ, "ଏ କଥା ସତ୍ୟ ଯେ ବୋଷ୍ଟନ ସହରରେ ଘର ଏବଂ ଅନ୍ୟାନ୍ୟ ସ୍ଥାବର ସମ୍ପତ୍ତି ହିଁ ଜଗତରେ ମୋହର ଏକମାତ୍ର ସମ୍ବଳ । କିନ୍ତୁ ଶତ୍ରୁର ସୈନ୍ୟଦଳକୁ ବିତାଡ଼ିତ କରି ଯେବେ ଆମ୍ଭମାନଙ୍କ ସ୍ୱାଧୀନତା ରକ୍ଷା ସକାଶେ ବୋଷ୍ଟନ ଭସ୍ମସାତ୍ କରିବା ପ୍ରୟୋଜନ ବୋଧହୁଏ, ତେବେ ବର୍ତ୍ତମାନହିଁ ସେ ଆଦେଶ ପ୍ରଦତ୍ତ ହେଉ ।"

କାହାକୁ ଦାତା ବୋଲିବାକୁ ହେବ ? ଯାହାର ହସ୍ତ-ପଣ୍ଡ ଭଙ୍ଗୀ ମୁହିଁ ଦେଖି ସ୍ପଷ୍ଟ ବୁଝାଯିବ ଯେ, ସେ କେବେହେଁ ଦାନ କରି ନାହିଁ, କେବଳ ଗ୍ରହଣ କରିଅଛି, ତାହାକୁ କିଅଣ ଦାତା କୁହାଯିବ । ଯେ ନିଜର ଉନ୍ନତି ସକାଶେ ଅନ୍ୟର ଅବନତି ଘଟାଇଅଛି, ଆପଣାକୁ ଗଢ଼ି ତୋଳିବାକୁ ଅପରକୁ ଭୂମିସାତ୍ କରିଅଛି—ତାହାକୁ କିଅଣ ଅପ୍ର-ଚେଷ୍ଟାରେ ଉନ୍ନତ ବୋଲି କୁହାଯିବ ? ପରକୁ ଯେ ଦରିଦ୍ର କରେ ସେ କିଅଣ ଯଥାର୍ଥ ଧନୀ !

ମହାମତି ଏବ୍ରାହାମ ଲିଙ୍କନଙ୍କ ଜୀବନୀ ପାଠକଲେ ଜଣାଯାଏ, ସେ ସର୍ବଦା ପରର ଉନ୍ନତି ଓ ଉତ୍କର୍ଷ ସାଧନ ସକାଶେ ତତ୍ପର ଥିଲେ । ତାହାଙ୍କର ସମବ୍ୟବସାୟୀ ଓକିଲମାନେ ତାହାଙ୍କୁ "ସବାନ୍ଧୁ ବାହାର ସାଧୁ" ବୋଲି ଆଖ୍ୟା ଦେଇଥିଲେ । ମୋକଦ୍ଦମା ଅନ୍ୟାୟ କିମ୍ବା ଭିତ୍ତିହୀନ ବୋଲି ବୁଝି ପାରିଲେ ତତକ୍ଷଣରେ ସେ ପକ୍ଷ ତ୍ୟାଗ କରୁଥିଲେ । ଥରେ ଜଣେ ମହିଳା ନିକଟରୁ ଅଗ୍ରିମ ଦୁଇଶତ ଟଙ୍କା ପାଇ ଦୀର୍ଘକାଳ କାଗଜପତ୍ର ଦେଖି ତାହାଙ୍କୁ ସେ ଟଙ୍କାତକ ଫେରାଇ ଦେଇ କହିଲେ 'ଏ ମୋକଦ୍ଦମା ଜିତିବାର ସମ୍ଭାବନା କିଛିହିଁ ନାହିଁ ।' ମହିଳା କହିଲେ ଟଙ୍କା ଫେରାଇ ଦେଉଅଛନ୍ତି କାହିଁକି ? ସେ ଟଙ୍କାତକ ଆପଣ ଦୀର୍ଘକାଳ କାଗଜପତ୍ର

ଦେଶ ଉପାର୍ଜ୍ଜନ କରି ଅଛନ୍ତି । ଲିଙ୍କନ କହିଲେ "ମୋହର କର୍ତ୍ତବ୍ୟ କରିଅଛି, ଏଥି ସକାଶେ ଅର୍ଥ ଗ୍ରହଣ କରି ପାରିବି ନାହିଁ ।"

ମାର୍କିନ ମନୀଷୀ ଏମାର୍ସନଙ୍କ ମତରେ ସଭ୍ୟତାର ଖାଣ୍ଟି ପରଖ ଲୋକସଂଖ୍ୟା, ସହରର ଅପୂର୍ବତନ କିମ୍ବା ଉତ୍ପାଦିତ ଶସ୍ୟର ପରିମାଣରେ ନୁହେଁ । ଦେଶରେ କେଉଁ ପ୍ରକାର ମନୁଷ୍ୟ ଜନ୍ମି ଅଛନ୍ତି ତାହାହିଁ ସଭ୍ୟତାର ଶ୍ରେଷ୍ଠ ପରଖ । ଚରିତ୍ରର ଗୌରବ ହିଁ ପରମ ଗୌରବ ।

କନ୍ୟା ବିବାହରେ ଲୋକେ ପଚାରନ୍ତି ବିବାହ ଭଲ ହେଲା ଠିକ ? ଖାଇବା ପିଇବାର ସଂସ୍ଥାନ ଅଛି ତ ? ବରଟି ସାଧୁ ସଜ୍ଜନ କିମ୍ବା କେଉଁଲୋକଙ୍କ ଚରିତ୍ରର କି ନାହିଁ ? ଏ କଥା କେହି ପଚାରନ୍ତି ନାହିଁ । ଅର୍ଥ ଅଛି ଅଥଚ ହୃଦୟ ନାହିଁ, ଅଟ୍ଟାଳିକାରେ ବାସ କରି ମଧ୍ୟ ମନଟି କତାନ୍ତ ନୀଚ । ଏହାଠାରୁ ଦୁଃଖର କଥା ଆଉ କଅଣ ହୋଇପାରେ ?

ତିନି ସହସ୍ର ବର୍ଷ ପୂର୍ବର ଜଣେକ ମିଶର ଦେଶୀୟ ରାଜାଙ୍କ ସମାଧି ପ୍ରସ୍ତରରେ ଲେଖା ଅଛି, "ଗୋଟିଏ ଶିଶୁର ମଧ୍ୟ ମୁଁ କ୍ଷତି କରି ନାହିଁ । କୌଣସି ବିଧବା ଉପରେ ଅତ୍ୟାଚାର କିମ୍ବା କୌଣସି କୃଷକ ପ୍ରତି ଦୁର୍ବ୍ୟବହାର କରି ନାହିଁ । ମୋର ରାଜତ୍ୱରେ ଭିକ୍ଷୁକ ନ ଥିଲେ, ଅନାହାରରେ କେହି ମରି ନାହାନ୍ତି । ଯେତେବେଳେ ଦୁର୍ଭିକ୍ଷ ଉପସ୍ଥିତ ହୋଇଥିଲା, ସେତେବେଳେ ମୁଁ ଦେଶର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଭୂମି କର୍ଷଣ କରାଇଥିଲି, ସମସ୍ତଙ୍କୁ ଆହାର୍ଯ୍ୟ ଯୋଗାଇ ଥିଲି । ବିଧବାର ଦୁରବସ୍ଥା ହୋଇ ନାହିଁ । ସେମାନଙ୍କର ପତି ଜୀବିତ ଥିଲେ ଅବସ୍ଥା ଯେପରି ସଚଳ ରହିଥାନ୍ତା, ସେହିପରି ଅବସ୍ଥାରେ ସେମାନଙ୍କୁ ରଖିଥିଲି ।" ଆମ୍ଭମାନଙ୍କର ସଭ୍ୟ ଉନ୍ନତ ଯୁଗରେ କେଉଁ ନରପତି ଏପରି କଥା କହିବାକୁ କ୍ଷମ ?

ଅର୍ଥ ବହୁକ୍ଷେତ୍ରରେ ପୁଣ୍ୟର ସମକକ୍ଷ ହୋଇ ନ ପାରେ । ସାମାଜିକ ପ୍ରତିଷ୍ଠା ମନୁଷ୍ୟତ୍ୱ ସୃଷ୍ଟି କରି ପାରେ ନାହିଁ, ଏହା ସର୍ବଦା ମନେ ରଖିବାକୁ ହେବ ।

ପୃଥିବୀବିଖ୍ୟାତ ଫରାସୀ ଲେଖକ ଭଲଟେୟାରଙ୍କ ଲେଖାରେ ଭଲ୍‌ଟେୟାର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ କମ୍ପିତ ହୋଇଥିଲା । ସେ କହୁଛନ୍ତି:—

"ଯେଉଁମାନେ ନୌବାହିନୀ ଅଥବା ସ୍ଥଳବାହିନୀର ନାୟକ ଥିଲେ, ସେମାନଙ୍କର ସମସ୍ତ କଥାହିଁ ଅବିଲୁପ୍ତ ଅଛି କେବଳ ନାମଟି । ଏକଶତ ଯୁଦ୍ଧ ଜୟରେ ମୁଦ୍ଧା ମାନବଜାତିର ପ୍ରକୃତ ଉପକାର ହେବ ନାହିଁ । ଯେଉଁମାନେ ଅନାଗତ ମାନବବଂଶ ସକାଶେ କଷ୍ଟକ୍ରମ ଶାଶ୍ୱତ ଆନନ୍ଦ ସୃଷ୍ଟି କରି ଯାଇଅଛନ୍ତି, ସେହିମାନେ ହିଁ ମହାପୁରୁଷ । ଦୁଇ ସମୁଦ୍ରକୁ ଯୁକ୍ତ କରିବା ସକାଶେ ଗୋଟିଏ ପ୍ରଣାଳୀ, ଗୋଟିଏ ଛନ୍ଦ ଭଲ ଶବ୍ଦ, ସୁଲିଖିତ ଗୋଟିଏ ନାଟକ କିମ୍ବା ଗୋଟିଏ ଅବିଷ୍କୃତ ସତ୍ୟର ମୂଲ୍ୟ ସକଳ ଦେଶର ସକଳ ରାଜସ୍ୱତ୍ୱର ବିବରଣୀ ଏବଂ ସକଳ ଯୁଦ୍ଧ-କାହାଣୀର ମୂଲ୍ୟ ଅପେକ୍ଷା ସହସ୍ର ଗୁଣ ଅଧିକ । ଯେଉଁମାନେ ମନୁଷ୍ୟକୁ ଆନନ୍ଦ ଦେଇଅଛନ୍ତି, ମନୁଷ୍ୟର କାର୍ଯ୍ୟରେ ଯେଉଁମାନେ ଲାଗିଅଛନ୍ତି, ମୋ ମତରେ ସେହିମାନେହିଁ ମହାପୁରୁଷ ।"

ମହାତ୍ମା ବିବେକାନନ୍ଦ କହୁଥିଲେ:—"ଯେ ଅନ୍ତତଃ କେତେକ ପରିମାଣରେ ଅନୁଭବ କରି ନାହାନ୍ତି, ଯେ ତାହାଙ୍କର ଜୀବନ ତାହାଙ୍କର ଜାତି ସକାଶେ ଏବଂ ବିଧାତା ତାହାଙ୍କୁ ପାହା ଦେଇଅଛନ୍ତି ତାହା ସମଗ୍ର ମାନବଜାତି ସକାଶେ, ସେ କେବେହେଁ ପ୍ରକୃତ ମହତ୍ତ୍ୱର ଅଧିକାରୀ ହୋଇ ନାହାନ୍ତି ।"

( ୬୪ )

# ବର୍ତ୍ତମାନ ଯୁଗର ଆକାଂକ୍ଷା ଏବଂ ଉଦ୍ଦେଶ୍ୟ

ଶ୍ରୀ ମୋହିନୀମୋହନ ସେନାପତି

ମାନବର ପ୍ରଥମ ଉଦ୍ଭବଠାରୁ ଆଜି ପର୍ଯ୍ୟନ୍ତ ଯେଉଁ ଜୀବନ-ସ୍ରୋତ ପ୍ରବାହିତ ହୋଇ ଆସୁଅଛି, ତାହାର ଗତି କେଉଁ ଦିଗକୁ ତାହା ଜାଣିବା ପାଇଁ କେଉଁ ଲୋକ ଉତ୍ସୁକ ନୁହେଁ ? ପ୍ରତ୍ୟେକ ଲୋକଙ୍କ ଉପରେ ନିଜ ନିଜ ଜୀବନତରଣୀର ଭାର ନ୍ୟସ୍ତ ହୋଇଅଛି । ସେହି ତରଣୀକୁ ସୁପଥରେ ନେଇଯିବା ଏବଂ ନିଜର ଅଭୀଷ୍ଟ ସ୍ଥାନରେ ପହଞ୍ଚାଇବାକୁ ହେଲେ ସମଗ୍ର ମାନବଜାତି କେଉଁ ସ୍ରୋତରେ ଭାସୁଅଛନ୍ତି, ତାହା ଜାଣିବା ଏକାନ୍ତ ଆବଶ୍ୟକ; କାରଣ ସ୍ରୋତ ବିରୁଦ୍ଧରେ ଗଲେ ମୃତ୍ୟୁ ଏବଂ ବିନାଶ ଅବଶ୍ୟମ୍ଭାବୀ ।

ଫରାସୀ ପଣ୍ଡିତ କେଣ୍ଟ ତାଙ୍କ ସମାଜବିଜ୍ଞାନରେ ବର୍ଣ୍ଣାଇଅଛନ୍ତି ଯେ ସମାଜ କ୍ରମଶଃ ଧର୍ମର ବନ୍ଧନରୁ ମୁକ୍ତ ହୋଇ ବିଜ୍ଞାନର ରାଜ୍ୟକୁ ଅଗ୍ରସର ହେଉଅଛି । ଧର୍ମ ମାନବସମାଜର ଅଧମ ଅବସ୍ଥା । ବାଳକ ପରି ଅଧମ ମାନବସମାଜର ମଧ୍ୟ ବିଶ୍ୱାସ ଏହି ଯେ, ନିଜ ପରି ଅନ୍ୟାନ୍ୟ ବସ୍ତୁ ମଧ୍ୟ ସଜୀବ ଏବଂ ଜ୍ଞାନମୟ । ଏହି "ଆତ୍ମବତ୍ ମନ୍ୟତେ ଜଗତ୍"

(anthropomorphism) ସ୍ୱଭାବରୁ ଧର୍ମର ଉତ୍ପତ୍ତି । କ୍ରମେ ଯେତେ ଜ୍ଞାନ ବିଜ୍ଞାନ ଅଗ୍ରସର ହୁଏ, ଧର୍ମ ସେତେ ପୃଥିବୀରୁ ପଳାୟନ କରେ, ଅବଶ୍ୟ ଭିନ୍ନ ଭିନ୍ନ ଯୁଗର ଉପଯୋଗୀ ହେବାପାଇଁ ଧର୍ମ ଭିନ୍ନ ଭିନ୍ନ ଆକୃତି ଧାରଣ କରେ, କିନ୍ତୁ ଧର୍ମ ଯେ ସ୍ୱରୂପ ଧାରଣ କରୁ, ଜ୍ଞାନର କ୍ରମିକ ଅଗ୍ରଗତିରେ ତାହା ଲୁପ୍ତପ୍ରାୟ ହୁଏ । ତଥାପି ଦୁର୍ବଳ ମାନବ ତାହାର ପୁରାତନ ବଦ୍ଧମୂଳ ପ୍ରାଚୀନ ସଂସ୍କାରକୁ ପରିତ୍ୟାଗ କରିବାକୁ ନାରାଜ । କିନ୍ତୁ ତାହା ତାହାର ଭାବାତିଶଯ୍ୟ (Sentimentality ) ମାତ୍ର ।

ପ୍ରାଚୀନ ଯୁଗ ଯେପରି ଧର୍ମପ୍ରଧାନ, ବର୍ତ୍ତିମାନ ଯୁଗ ସେହିପରି ବିଜ୍ଞାନପ୍ରଧାନ । ପ୍ରାଚୀନ ଯୁଗର ଗୀତ ଧର୍ମର ଅନୁସରଣ, ବର୍ତ୍ତିମାନ ଯୁଗର ଗୀତ ପ୍ରକୃତିର ଗବେଷଣା ଏବଂ ପ୍ରକୃତିର ଅନୁସରଣ । ପ୍ରାଚୀନ ଯୁଗର ଆଜ୍ଞା ଧାର୍ମିକ ହୁଅ, ବିଶ୍ୱାସୀ ହୁଅ; ବର୍ତ୍ତିମାନ ଯୁଗର ଆଜ୍ଞା ସ୍ୱାଭାବିକ ହୁଅ, ପ୍ରକୃତିର ଅନୁଗାମୀ ହୁଅ (Be Natural) । ଯେଉଁ ଈଶ୍ୱରବିଶ୍ୱାସ ପ୍ରାଚୀନ ଯୁଗ ପକ୍ଷରେ ଧ୍ରୁବ ସତ୍ୟ, ତାହା ବର୍ତ୍ତିମାନ ଯୁଗ ପକ୍ଷରେ ବାତୁଳତା ମାତ୍ର । ନାନା କାରଣରୁ ଧର୍ମ ବର୍ତ୍ତିମାନ ଯୁଗର ଅନୁପଯୋଗୀ । ସେଥି ମଧ୍ୟରୁ ପ୍ରଧାନ କେତୋଟି କାରଣ ସଂକ୍ଷେପରେ ନିର୍ଦ୍ଦେଶ କରୁଅଛୁଁ ।

୧ମ କାରଣ—ଧର୍ମର ମତଗୁଡ଼ିକ ଅନିଶ୍ଚିତ ଭୂମି ଉପରେ ସ୍ଥାପିତ । ଆମ୍ଭେମାନେ ଯେତେବେଳେ ଧର୍ମର ଭିତ୍ତି ପୁଙ୍ଖାନୁପୁଙ୍ଖରୂପେ ଆଲୋଚନା କରୁଁ, ଦେଖୁଁ ତାହା ଅତ୍ୟନ୍ତ ଦୁର୍ବଳ ଏବଂ ଅନିଶ୍ଚିତ । ବର୍ତ୍ତିମାନ ଯୁଗ ଜ୍ଞାନବିଜ୍ଞାନରେ ଯାହା କିଛି ଉନ୍ନତି କରିଅଛି, ତାହା ଯୁକ୍ତି ଏବଂ ପ୍ରମାଣର ମାର୍ଗ ଅନୁସରଣ କରି । କିନ୍ତୁ ଧର୍ମ ଏହି ଦୁଇଗୋଟି ଧ୍ରୁବ ଏବଂ ନିଶ୍ଚିତ ପଥ ପରିତ୍ୟାଗ କରି ଅଧ୍ରୁବ ଓ ଅନିଶ୍ଚିତ ବିଶ୍ୱାସ ଆଶା ଏବଂ ଭକ୍ତିରେ ପ୍ରତିଷ୍ଠିତ ହୋଇଅଛି । ପରଲୋକବିଶ୍ୱାସର ଭିତ୍ତି କଣ ?

ମାନବର ଅଣ । ଈଶ୍ବର ଯେ ଅଛନ୍ତି ତାହାର ଭିତ୍ତି କଣ ? ମାନବର ଭକ୍ତି ଏବଂ ବିଶ୍ବାସ । ଯେଉଁ ତଥ୍ୟଗୁଡ଼ିକ ବିଜ୍ଞାନର ସୁଷ୍ପଷ୍ଟ ଅଲୋକ ଅବିଷ୍କାର କରିବାକୁ ଅକ୍ଷମ, ତାହା କି ଭକ୍ତି, ବିଶ୍ବାସ ଏବଂ ଅଜ୍ଞାରୂପ ଅସ୍ପଷ୍ଟ ଅଲୋକରେ ଅବିଷ୍କୃତ ହେବା ସମ୍ଭବପର ? କଦାପି ନୁହେ । ତେବେ କ ହିଁବ ଲୋକେ ଧର୍ମର ଅବଶ୍ୟକତା ପ୍ରତିପାଦନ କରିବା ପାଇଁ ଏତେ ସଚେଷ୍ଟ ? ପୁନଶ୍ଚ, ଧର୍ମ ସତ୍ୟ ହେଲେ ମଧ୍ୟ ଜୀବନପଥରେ ତାହାର ଅବଶ୍ୟକତା କଣ ? ଜଣେ ଇଂରେଜ ଲେଖକ, ନିଜେ ଧର୍ମବିଶ୍ବାସୀ ହୋଇ ମଧ୍ୟ କହିଅଛନ୍ତି, "It is possible to go through life without thinking of God or caring about Him." ଈଶ୍ବରଙ୍କୁ ନ ଭାବି ମଧ୍ୟ ଲୋକେ ଜୀବନ ଯାପନ କରି ପାରନ୍ତି ।

୨ୟ କାରଣ—ପ୍ରକୃତିର ରାଜ୍ୟ ଧର୍ମର ରାଜ୍ୟ ନୁହେ । ଲୋକେ କହନ୍ତି, କଳିକାଳରେ ଧର୍ମର ସ୍ଥାନ ନାହିଁ । କିନ୍ତୁ ପ୍ରକୃତ ପକ୍ଷରେ କୌଣସି କାଳରେ ଧର୍ମର ଏକାଧିପତ୍ୟ ରାଜତ୍ବ ନାହିଁ ।

କେତେବେଳେ ଧର୍ମର ଜୟ, କେତେବେଳେ ଅଧର୍ମର ଜୟ । ପ୍ରକୃତି ମାତା ଧର୍ମାଧର୍ମ ପ୍ରତି ସମ୍ପୂର୍ଣ୍ଣ ଉଦାସୀନ । ଯେତେବେଳେ ଧର୍ମ, ଯଥା ସଂଯମ ଇତ୍ୟାଦିରେ ଶରୀର ଅପଚୟ ନ କରି ବରଂ ସଞ୍ଚୟ କରେ, ସେତେବେଳେ ତାହା ଅମ୍ଭମାନଙ୍କର ମଙ୍ଗଳ ବିଧାନ କରେ । ଅନେକ ସମୟରେ ଧର୍ମ, ଦୟା, କ୍ଷମା, ସ୍ନେହ, ବିଶ୍ବାସ ଇତ୍ୟାଦି ରୂପ କୋମଳ ଭାବଦ୍ବାରା ଦୁର୍ବଳ କରାଇ ଅମ୍ଭମାନଙ୍କ ବିନାଶପଥକୁ ନେଇ-ଯାଏ । ଜଗଦ୍ବିଜୟୀ ନେପୋଲିୟନ୍ ଅଷ୍ଟ୍ରିୟା ରାଜାଙ୍କୁ ବାରମ୍ବାର ପରାସ୍ତ କରି ମଧ୍ୟ ତାହାଙ୍କୁ ନିଜର କରକବଳରେ ପାଇ ସିଂହାସନଚ୍ୟୁତ କରିବାକୁ ଯଦି କ୍ଷାନ୍ତ ହୋଇ ନ ଥାନ୍ତେ, ତାହାହେଲେ ତାଙ୍କୁ ସେହି ଭୀଷଣ ସେଣ୍ଟହେଲେନା ଦ୍ଵୀପକୁ ନିର୍ବାସିତ ହେବାକୁ ହୋଇ ନଥାନ୍ତା । ପୁନଶ୍ଚ ପାପ କି ସବୁ ସମୟରେ ଅମ୍ଭମାନଙ୍କର ଅମଙ୍ଗଳ

କରାଏ ? ତାହା କି ଅନେକ ସମୟରେ ଆମ୍ଭମାନଙ୍କର ମଙ୍ଗଳର କାରଣ ହୁଏ ନାହିଁ ? ଜଗଦ୍‌ବିଜୟୀ ଅଲେକ୍‌ଜାଣ୍ଡାର କେଉଁ ଧର୍ମବଳରେ ଜଗତ ବିଜୟ କରିଥିଲେ ? ପରର ଦ୍ରବ୍ୟଠାରୁ ପରର ରାଜ୍ୟ ଅପହରଣ କରିବା କି ଅଧିକ ଭୟଙ୍କର ପାପ ନୁହେ ? ଅଲେକଜାଣ୍ଡରଙ୍କର ଯଦି ଏତେଦୂର ପାପପୁଣ୍ୟବୋଧ ଥାନ୍ତା, ତାହାହେଲେ ସେ ସ୍ୱରାଜ ଛାଡ଼ି ଏକ ପଦ ସୁଦ୍ଧା ଅଗ୍ରସର ହୋଇପାରି ନ ଥାନ୍ତେ । ଇଂରେଜ ରାଜା ଏବଂ ଅନ୍ୟାନ୍ୟ ଶତ ସହସ୍ର ବ୍ୟକ୍ତିଙ୍କ ସମ୍ବନ୍ଧରେ ମଧ୍ୟ ସେହି କଥା କୁହାଯାଇ ପାରେ । ଯେଉଁମାନଙ୍କ ଅଭୀଷ୍ଟ ପଥରେ ବିବେକ କଣ୍ଟକ ନିକ୍ଷେପ ନ କରେ, ସେମାନଙ୍କର ଯେ ଅଭୀଷ୍ଟସିଦ୍ଧିରେ ତ୍ରୁଟି ହେବ, ସେଥିରେ ସନ୍ଦେହ କଣ ? ଇମାରସନ କହୁଅଛନ୍ତି ଯେ ଗ୍ରୀଷ୍ମକାଳରେ ଯେଉଁ ନଦୀ ଆମ୍ଭମାନଙ୍କ ପଥରେ ମହାବିଘ୍ନ ଉତ୍ପାଦନ କରେ, ଶୀତ ଋତୁରେ ସେହି ନଦୀ ତୁଷାରାବୃତ ହେଲେ, ଯାତାୟତର ସରଳ ଏବଂ ସୁଗମ ପଥରୂପେ ପରିଣତ ହୁଏ । ସେହିପରି ଆମ୍ଭମାନଙ୍କ ହୃଦୟ ଯେତେବେଳେ ବିବେକ ତାପରେ ଜଳ ପରି ତରଳ ଏବଂ କୋମଳ ଥାଏ, ସେତେବେଳେ ତାହା ଆମ୍ଭମାନଙ୍କ ଅଭୀଷ୍ଟ ପଥରେ ମହାବିଘ୍ନ ଉତ୍ପାଦନ କରେ, କିନ୍ତୁ ଯେତେବେଳେ ବିବେକଶୂନ୍ୟତା'ରୂପ ଶୀତ-ଦ୍ୱାରା ତୁଷାର ପରି ଦୃଢ଼ ଏବଂ କଠିନ ହୁଏ, ସେତେବେଳେ ତାହା ଆମ୍ଭମାନଙ୍କ ଅଭୀଷ୍ଟ ଦଗକୁ ସରଳ ଏବଂ ସୁଗମ ପଥ ଉନ୍ମୋଚନ କରେ । କିନ୍ତୁ ପାପ ଅନେକ ସମୟରେ ଶକ୍ତିର ଅପଚୟ କରାଇ ଆମ୍ଭମାନଙ୍କୁ ବିନାଶପଥକୁ ନେଇ ଯାଏ । ବର୍ତ୍ତମାନ ଦେଖିଲୁ ଯେତେ-ବେଳେ ଧର୍ମ ଶକ୍ତିକୁ ସଞ୍ଚୟ କରେ ଅଥବା ଶକ୍ତିଦ୍ୱାରା ଯୁକ୍ତ ଥାଏ, ସେତେବେଳେ ଧର୍ମର ଜୟ ହୁଏ । ଯେତେବେଳେ ଅଧର୍ମ ଶକ୍ତିକୁ ସଞ୍ଚୟ କରେ ଏବଂ ଶକ୍ତିଦ୍ୱାରା ଯୁକ୍ତ ଥାଏ, ସେତେବେଳେ ଅଧର୍ମର ଜୟ ହୁଏ । ପୁଣି ଉଭୟ ଧର୍ମ ଏବଂ ଅଧର୍ମ ଯେତେବେଳେ ଶକ୍ତିକୁ ସଞ୍ଚୟ ନ କରି ଅପଚୟ କରନ୍ତି ଅଥବା ଶକ୍ତିଦ୍ୱାରା ଯୁକ୍ତ ନଥାନ୍ତି, ସେତେବେଳେ ସେମାନଙ୍କର ପରାଜୟ ହୁଏ । ଅତଏବ ଦେଖିଲୁ,

ଜୟ ଶକ୍ତିର ଚିରସହଚର । ଯେତେବେଳେ ଶକ୍ତି ଧର୍ମ ସହିତ ଯୁକ୍ତ ଥାଏ, ଆମ୍ଭେମାନେ କହୁଁ ଧର୍ମର ଜୟ ହେଲା । ଯେତେବେଳେ ଶକ୍ତି ଅଧର୍ମ ସହିତ ଯୁକ୍ତ ଥାଏ, ଆମ୍ଭେମାନେ କହୁ ଅଧର୍ମର ଜୟ ହେଲା । କିନ୍ତୁ ପ୍ରକୃତରେ ଜୟ ଧର୍ମାଧର୍ମ ବିଚାର କରେ ନାହିଁ । ଯେଉଁଠାରେ ଶକ୍ତି, ସେହିଠାରେ ଜୟ । ପ୍ରକୃତିର ରାଜ୍ୟ ଧର୍ମର ରାଜ୍ୟ ନୁହେଁ, ଶକ୍ତିର ରାଜ୍ୟ, ଶକ୍ତିର ରଙ୍ଗଭୂମି ଏବଂ କ୍ରୀଡ଼ାସ୍ଥଳ ମାତ୍ର । ଯେଉଁ ଦଳରେ ଶକ୍ତି ଅଧିକ, ସେହି ଦଳରେ ଜୟ ।

ଧର୍ମଗ୍ରନ୍ଥରେ ଶୁଣୁଁ, ଧର୍ମହିଁ ଆମ୍ଭମାନଙ୍କର ରାଜା । କିନ୍ତୁ ପ୍ରକୃତି-ରାଜ୍ୟରେ ଦେଖୁଁ, ବିଧି ଏବଂ ଶକ୍ତି (fate and power) ଏହି ଦୁଇଜଣ ଚରାଚର ଜୀବଜନ୍ତୁ ସମସ୍ତଙ୍କ ଉପରେ ରାଜତ୍ୱ କରୁଅଛନ୍ତି । ଧର୍ମଗ୍ରନ୍ଥରେ ଶୁଣୁଁ, ଦୀନ ଦୁର୍ବଳମାନଙ୍କରିହିଁ ଈଶ୍ୱର ବିଶେଷଭାବରେ ସହାୟ । ସେହିମାନେ ଧନ୍ୟ (blessed), କିନ୍ତୁ ପ୍ରକୃତିରାଜ୍ୟରେ ଦେଖୁଁ, ଦୀନ ଦୁର୍ବଳମାନଙ୍କ ପରି ପରପଦ ନତ ଲାଞ୍ଛିତ ଅପମାନିତ ଏ ସଂସାରରେ ଆଉ କେହି ନାହିଁ, (To be weak is to be miserable) । ଧର୍ମଗ୍ରନ୍ଥରେ ଶୁଣୁଁ, ଜଗତରେ ଧର୍ମରହିଁ ଜୟ । କିନ୍ତୁ ପ୍ରକୃତିରାଜ୍ୟରେ ଦେଖୁଁ, ଜୋର ଯାର ମୂଲକ ତାର—Survival-of the fitetst ଯୋଗ୍ୟତମର ଅସନ । ଧର୍ମର ଆଶ୍ୱାସ ବଚନଗୁଡ଼ିକ କି ମଧୁର, କେଡ଼େ ପ୍ରୀତିକର । ପ୍ରକୃତିର ନିୟମଗୁଡ଼ିକ କି ନିଷ୍ଠୁର, କେଡ଼େ ଭୟଙ୍କର । ତଥାପି ଧର୍ମର ଆଶ୍ୱାସ ବଚନ ନ ଶୁଣି ବର୍ତ୍ତମାନ ଯୁଗ ପ୍ରକୃତିର କଠୋର ନିୟମଗୁଡ଼ିକ ଜାଣିବାକୁ ଉତ୍ସୁକ । କାରଣ ଯେଉଁଠାରେ ସତ୍ୟ ନ ଜାଣିଲେ ଆମ୍ଭମାନଙ୍କର ବିନାଶର ସମ୍ଭାବନା, ସେଠାରେ ସତ୍ୟ ଯେତେ ଅପ୍ରିୟ ହେଉ ପଛକେ ତାହା ଜାଣିବା ଏବଂ ଜାଣି ସେଥିପାଇଁ ପ୍ରସ୍ତୁତ ହେବା ଆବଶ୍ୟକ । ଧର୍ମ ପ୍ରାଚୀନ ଯୁଗର ସମ୍ପତ୍ତି, ବର୍ତ୍ତମାନ ଯୁଗରେ ଧର୍ମ ଶେଷପାଏ ନାହିଁ । ବହୁଦେବବାଦ ସତ୍ୟ କି ଏକେଶ୍ୱରବାଦ ସତ୍ୟ, ସାକାର ଉପାସନା ସତ୍ୟ କି

ନିରାକାର ଉପାସନା ସତ୍ୟ, ଏସବୁ ତର୍କ ବିତର୍କ ବର୍ତ୍ତମାନ ଯୁଗର ଅନୁପଯୋଗୀ। ସେହି ବିଖ୍ୟାତ ଗଣିତଜ୍ଞ ଏବଂ ଜ୍ୟୋତିର୍ବିତ୍ ପଣ୍ଡିତ ଲାପ୍ଲାସ ଯେତେବେଳେ ନେପୋଲିୟନଙ୍କୁ ସ୍ୱୀୟ ଗ୍ରନ୍ଥ ଉପହାର ଦେଲେ, ପଚାରିଲେ, ତୁମ୍ଭ ବୈଜ୍ଞାନିକ ମତରେ ଈଶ୍ୱରଙ୍କର ସ୍ଥାନ କେଉଁଠାରେ ? ଲାପ୍ଲାସ ଉତ୍ତର କଲେ, I had no need of such a hypothesis ) ସେଥିରେ କଳ୍ପନା ମୋର ଅବଶ୍ୟକ ହୋଇ ନାହିଁ। ବର୍ତ୍ତମାନ ଯୁଗର ମଧ୍ୟ ସେହି ଭାବ।

ଧର୍ମର କବଳରୁ ମୁକ୍ତ ହୋଇ ଶକ୍ତିର ଅନୁସରଣ କରିବା ହିଁ ବର୍ତ୍ତମାନ ଯୁଗର ଅକାଙ୍କ୍ଷା। ଯଦିଚ ବର୍ତ୍ତମାନ ଯୁଗରେ ମଧ୍ୟ ବେଦୀ ଏବଂ ବକ୍ତୃତା-ମଣ୍ଡପରୁ ମୁହୁର୍ମୁହୁଃ ଧର୍ମର ଜୟଗାଥା ଘୋଷିତ ହେଉଅଛି, ତଥାପି ବର୍ତ୍ତମାନ ଯୁଗ ହୃଦୟର ଅନ୍ତରତମ ପ୍ରଦେଶରେ ବିଶ୍ୱାସ କରେ ଯେ ଶକ୍ତି ହିଁ ଜଗତର ରାଜା। ସମସ୍ତେ ସେହି ଶକ୍ତିର ସୋପାନରେ ଅଧିରୂଢ଼ ହେବାକୁ ଯତ୍ନବାନ୍। ଯେ ଯେତେ ଶକ୍ତିର ଅଧିକାରୀ ହେଉଅଛି, ସେ ସେତେ ସୁଖୀ ଏବଂ ଭାଗ୍ୟବାନ। ଜ୍ଞାନ, ବିଜ୍ଞାନ, ସଂଯମ, ସାଧନା, ଅବସ୍ଥାର ଉପଯୋଗିତା (Adaptation to Circumstances) ଇତ୍ୟାଦି ଯେଉଁ ସବୁ ଉପାୟଦ୍ୱାରା ମାନବର ଶକ୍ତି ସଞ୍ଚିତ ଏବଂ ବର୍ଦ୍ଧିତ ହୁଏ, ବର୍ତ୍ତମାନ ଯୁଗରେ ସେ ସବୁ ଅତି ଉଜ୍ଜ୍ୱଳରୂପେ ପ୍ରକାଶିତ ହେଉଅଛି। ଧର୍ମାନୁମୋଦିତ ସରଳତା ଏବଂ ବିଶ୍ୱାସ ବର୍ତ୍ତମାନ ଯୁଗର ଲକ୍ଷଣ ନୁହେଁ। ସନ୍ଦେହ ଏବଂ ସତର୍କତା ବର୍ତ୍ତମାନ ଯୁଗର ନିତ୍ୟ-ସହଚର। ଜୀବନ ସଂଗ୍ରାମ କ୍ରମଶଃ ଯେତେ ପ୍ରଚଣ୍ଡ ହେଉଅଛି, ଜନ ସମାଜର ଅନ୍ତର୍ନିହିତ ଭାବ ସେତେ ବଢ଼ୁଅଛି। ଯେପରି କୌଣସି ସୁଚତୁର ସେନାପତି ବିପକ୍ଷ ପକ୍ଷର ସୈନ୍ୟବଳ କଳନା କରି ନିଜ ସୈନ୍ୟବଳ ସହିତ ତୁଳନା କରି ନିଜର କର୍ତ୍ତବ୍ୟ ନିରୂପଣ କରେ, ସେହିପରି ବର୍ତ୍ତମାନ ଯୁଗର ବ୍ୟକ୍ତି ଓ ଜାତି ସମସ୍ତେ ନିଜେ ନିଜେ ଅବସ୍ଥାର ଗୁରୁତ୍ୱ କଳନା କରି ନିଜ ନିଜ କର୍ତ୍ତବ୍ୟ ନିର୍ଦ୍ଧାରଣ କରୁଅଛନ୍ତି।

ଯେଉଁ ବ୍ୟକ୍ତି ଯେଉଁ ଜାତି ଅବସ୍ଥାର ଉପଯୋଗୀ ହୋଇ ପାରୁ ନାହିଁ, ସେ ବ୍ୟକ୍ତି ସେ ଜାତି ବହିଷ୍କୃତ ହେଉଅଛି । ବର୍ତ୍ତମାନ ଯୁଗର ଗତି ପ୍ରକୃତି (Nature) ଅଭିମୁଖୀ; ଆଧ୍ୟାତ୍ମିକ (Super-natural) ଅଭିମୁଖୀ ନୁହେଁ ।

ବର୍ତ୍ତମାନ ଯୁଗର ଗୋଟିଏ ପ୍ରଧାନ ଲକ୍ଷଣ ନିର୍ଦ୍ଦେଶ କରିଅଛୁଁ— ଏହା ବିଜ୍ଞାନପ୍ରଧାନ । ବର୍ତ୍ତମାନ ଯୁଗ ପରୀକ୍ଷାଦ୍ୱାରା ବସ୍ତୁର ପ୍ରକୃତି ନିର୍ଣ୍ଣୟ କରି, ପର୍ଯ୍ୟବେକ୍ଷଣଦ୍ୱାରା ପ୍ରକୃତିର ନିଗୂଢ଼ ନିୟମାବଳୀ ନିର୍ଣ୍ଣୟ କରି ଯେଉଁ ଜ୍ଞାନ ଉପାର୍ଜ୍ଜନ କରେ, ତାହା ବିଜ୍ଞାନ ଆକାରରେ ସନ୍ନିବଦ୍ଧ କରେ । ବିଜ୍ଞାନ ପ୍ରକୃତି ମଧ୍ୟରେ ଯେଉଁ ମହାମୂଲ୍ୟ ସତ୍ୟ ସବୁ ଆବିଷ୍କାର କରେ, ତାହା ମାନବର ହିତାର୍ଥେ ନିୟୋଜିତ କରେ । ବିଜ୍ଞାନବଳରେ ମାନବ କ୍ରମଶଃ ଶକ୍ତିଶାଳୀ ହୁଏ, କାରଣ ଜ୍ଞାନରୁ ଶକ୍ତିର ଉତ୍ପତ୍ତି (Knowledge is power); ସେହି ଶକ୍ତିଦ୍ୱାରା ମାନବ ଅବସ୍ଥାର ଉପଯୋଗୀ ହୁଏ; ଜୀବନଧାରଣର ଉପାୟ ସବୁ ସୁଗମ ଏବଂ ଅନାୟାସଲଭ୍ୟ ହୁଏ; ସୁଖର ନୂତନ ଉପାୟ ସବୁ ଆବିଷ୍କୃତ ହୁଏ, ଏହିରୂପେ ସଭ୍ୟତାର କ୍ରମ ବିକାଶ ହୁଏ । ଶିଳ୍ପ ବିଜ୍ଞାନରେ ଯେଉଁମାନେ ଯେତେ ଅଗ୍ରଣୀ, ଶକ୍ତି ସାମର୍ଥ୍ୟରେ ସେମାନେ ସେତେ ଅଧିକ, ଜୀବନ ସଂଗ୍ରାମରେ ସେମାନେ ସେତେ ଜୟୀ । ଯଦି ଆମ୍ଭେମାନେ ଜୟୀ ହେବାକୁ ବାଞ୍ଛା କରୁଁ, ତାହାହେଲେ ଦେବତାର ନୁହେଁ, ପ୍ରକୃତିର ସହାୟତା ଗ୍ରହଣ କରିବୁଁ । ପ୍ରକୃତିର ସତ୍ୟଗୁଡ଼ିକ ଯେତେ ନିଜ କାର୍ଯ୍ୟରେ ନିୟୋଜିତ କରିବୁଁ, ସେତେ ଶକ୍ତିଶାଳୀ ଏବଂ ସେତେ ସୁଖୀ ହୋଇ ପାରିବୁଁ । ଜାପାନ ଏହି ସତ୍ୟ ହୃଦୟଙ୍ଗମ କରିଅଛି । ସେଥିପାଇଁ ସେ ଜୀବନସଂଗ୍ରାମରେ ଏଡ଼େ ଅଜେୟ ହୋଇଅଛି । ଭାରତ ଯଦି ଜାପାନର ଉଦାହରଣ ଗ୍ରହଣ କରେ, ଭାରତ ମଧ୍ୟ ଜାପାନ ପରି ଅଜେୟ ହୋଇ ପାରିବ । ବର୍ତ୍ତମାନ ଶିଳ୍ପବିଜ୍ଞାନ ଉପରେ ଭାରତର ଯେ ଦୃଷ୍ଟି ପଡ଼ିଅଛି, ତାହା ଭାରତ ପକ୍ଷରେ ଅତି ଶୁଭ ଲକ୍ଷଣ ।

ଜ୍ଞାନ ବିଜ୍ଞାନ ବଳରେ ଶକ୍ତିର ସଞ୍ଚୟ ଏବଂ ସେହି ଶକ୍ତିଦ୍ୱାରା ଜୀବନସଂଗ୍ରାମରେ ଜୟୀ ହେବାହିଁ ବର୍ତ୍ତମାନ ଯୁଗର ଆକାଂକ୍ଷା । ସୁଖ ସମୃଦ୍ଧିହିଁ ବର୍ତ୍ତମାନ ଯୁଗର ଲକ୍ଷ୍ୟ ଏବଂ ଗନ୍ତବ୍ୟ ସ୍ଥାନ । ପୁଣ୍ୟ ବର୍ତ୍ତମାନ ଯୁଗର ଉଦ୍ଦେଶ୍ୟ ଅଥବା ଆଦର୍ଶ ନୁହେଁ । ପୁଣ୍ୟ ସୁଖର ଉପାୟରୂପେ ଅବଲମ୍ବିତ ହୁଏ; କିନ୍ତୁ ବର୍ତ୍ତମାନ ଯୁଗ କଦାପି ତାହାକୁ ଉଦ୍ଦେଶ୍ୟରୂପେ ଗ୍ରହଣ କରେ ନାହିଁ । ଅନେକ ବର୍ତ୍ତମାନ ଯୁଗର ଆକାଂକ୍ଷା ଏବଂ ଉଦ୍ଦେଶ୍ୟ ଉପରେ କଟାକ୍ଷପାତ କରନ୍ତି କିନ୍ତୁ ସେମାନେ ବୁଝନ୍ତି ନାହିଁ ଯେ ସେହି ଆକାଂକ୍ଷା ଏବଂ ଉଦ୍ଦେଶ୍ୟ ପ୍ରକୃତିଦତ୍ତ; ତାହାର ବିରୁଦ୍ଧାଚରଣ କଲେ ମୃତ୍ୟୁ ଏବଂ ବିନାଶ ଅବଶ୍ୟମ୍ଭାବୀ ।

# ଅନୁତାପ

୪

## ପ୍ରବନ୍ଧ ପ୍ରକାଶ

ଶ୍ରୀ ରତ୍ନାକର ପତି

ମାନବର କର୍ମମୟ ଜୀବନରେ କର୍ମର ବିକାଶ ଓ ପ୍ରତିଷ୍ଠା ସଙ୍ଗେ ସଙ୍ଗେ ସେଥିରେ ନାନା ପ୍ରକାର ସ୍ଖଳନ ପରିଲକ୍ଷିତ ହୋଇଥାଏ । ପାନ-ଭୋଜନ ପ୍ରଭୃତି ଦୈନନ୍ଦିନ କର୍ମଠାରୁ ଆରମ୍ଭ କରି ଗମ୍ଭୀର ଚିନ୍ତା-ସାପେକ୍ଷ ଜୀବନଗତ ସମସ୍ୟା ପର୍ଯ୍ୟନ୍ତ ସର୍ବତ୍ର ନ୍ୟୂନାଧିକ ପରିମାଣରେ ଏହି ସ୍ଖଳନର ସମ୍ଭବପରତା ବିଦ୍ୟମାନ ରହିଅଛି । ସ୍ୱାଧୀନପ୍ରାଣ ମାନବ ନିର୍ଜୀବ ଜଡ଼ବସ୍ତୁମାନଙ୍କ ପରି ଏକ ଅପରିବର୍ତ୍ତନୀୟ ଗତି-ପଥରେ ଚାଳିତ ନ ହୋଇ ସ୍ୱୀୟ ପ୍ରଜ୍ଞାବଳରେ ନିଜର କର୍ମପନ୍ଥା ସ୍ଥିରୀକରଣ ପୂର୍ବକ ତଦନୁଯାୟୀ କାର୍ଯ୍ୟକ୍ଷେତ୍ରରେ ଅଗ୍ରସର ହୁଏ ଏବଂ ଯେ ପର୍ଯ୍ୟନ୍ତ ତାହାର ଅନୁଧ୍ୟାନଶକ୍ତି ନିଜର ଦୁଷ୍ପ୍ରବୃତ୍ତି ବା ଅନ୍ୟାନ୍ୟ ବହିଃଶକ୍ତିରେ ପ୍ରଭାବିତ ନ ହୋଇ ଧୀରସ୍ଥିରଭାବରେ ନିୟୋଜିତ ହୋଇଥାଏ, ସେ ପର୍ଯ୍ୟନ୍ତ ସେ ସର୍ବଦା ସତ୍ ଓ ଅଭ୍ରାନ୍ତ ପଥରେ କର୍ମ ସମ୍ପାଦନ କରି ଜୀବନର ସାର୍ଥକତା ଓ ମହନୀୟତା ଉପଲବ୍ଧି କରୁଥାଏ । ମାତ୍ର ଦୁଃଖର କଥା, ତାହାର ଚିନ୍ତାଶକ୍ତି ଦୁଷ୍ଟ ବୃତ୍ତି ଓ ବାହାରର ଅନ୍ୟାନ୍ୟ କାରଣବଶତଃ ସମୟ ସମୟରେ ହୀନପ୍ରଭ

ହୋଇ ତାହାକୁ ଅଙ୍ଗୀଭୂତ କରି ପକାଏ । ତେଣୁ ସେ କର୍ମର ଅଭ୍ରାନ୍ତ ପନ୍ଥା ସ୍ଥିର କରି ନ ପାରି ବିପଦରେ ପତିତ ହୁଏ । ଯେପରି ଜଳଦ-ଶ୍ରେଣୀ ପ୍ରଦୀପ୍ତ ମାର୍ତ୍ତଣ୍ଡର ପ୍ରଭା ରୋଧ କରି, ଧରାର କର୍ମମୟତା ହ୍ରାସ କରେ, ସେହିପରି କାମ, କ୍ରୋଧ ପ୍ରଭୃତି ଦୁଷ୍ଟ ବୃତ୍ତିଗଣ ମାନବର ସମସ୍ତ ତେଜ ଓ ହିତାହିତ ବିଚାରଶକ୍ତିକୁ ମଳୀଭୂତ କରି ତାହାର ଜୀବନକୁ ନିଷ୍ପ୍ରଭ ଓ ଜଡ଼ତୁଲ୍ୟ କରି ଦିଅନ୍ତି; ତେଣୁ ମନୁଷ୍ୟ ଭଲ ମନ୍ଦ ପ୍ରଭୃତି ଭେଦଜ୍ଞାନରେ ପତିତ ନ ହୋଇ ଯେ କୌଣସି ପ୍ରକାରେ କର୍ମକ୍ଷେତ୍ରରେ ଅଗ୍ରସର ହୁଏ । ଏହିପରି ମାନବଜୀବନରେ ଅନେକ ସମୟରେ ସ୍ଖଳନ ଦୃଷ୍ଟି-ଗୋଚର ହୋଇଥାଏ ଏବଂ ଏହି ସ୍ଖଳନଜନିତ ନାନା ଅଶାନ୍ତି ଜୀବନର ସରସତା ନଷ୍ଟ କରେ । ଛାତ୍ର ଆଳସ୍ୟ, ବିଳାସ ପ୍ରଭୃତି ନାନା ପ୍ରଲୋଭନରେ ପଡ଼ି ଅଧ୍ୟୟନ ପ୍ରଭୃତି କର୍ତ୍ତବ୍ୟରୁ ବିଚଳିତ ହେଉଅଛି, ପିତା ମାତା ସନ୍ତାନ ସନ୍ତତିଙ୍କର ଉନ୍ନତିକଳ୍ପେ ନାନା ଉପାୟ ଅବଲମ୍ବନ କରି ସୁଦ୍ଧା ନିୟତିର ପ୍ରଭାବର ଅଧୀନରେ ଅକୃତକାର୍ଯ୍ୟ ହେଉଅଛନ୍ତି । ସେନାପତି ବ୍ୟୂହରଚନାରେ ନାନା କୌଶଳ ପ୍ରୟୋଗ କରି ଅବଶେଷରେ ନିଜର ସ୍ୱଳ୍ପଦର୍ଶିତାବଶତଃ ବିଫଳପ୍ରଯତ୍ନ ହେଉଅଛନ୍ତି ଏବଂ ଡାକ୍ତର ବା ବୈଦ୍ୟମାନେ ଆୟୁର୍ବେଦର ସମସ୍ତ ସୂକ୍ଷ୍ମ ଆଲୋଚନା ସତ୍ତ୍ୱେ ରୋଗୀ ପରୀକ୍ଷା ଓ ଭେଷଜ ପ୍ରୟୋଗରେ ପଥଭ୍ରଷ୍ଟ ହେଉଅଛନ୍ତି । ପୁଣି ବ୍ୟକ୍ତିବିଶେଷ, ସମାଜ ବା ଜାତିର ଅନ୍ୟାନ୍ୟ ବ୍ୟକ୍ତିମାନଙ୍କ ପ୍ରତି କିପରି ବ୍ୟବହାର ଦେଖାଇବାକୁ ହେବ, ଏ ବିଷୟରେ ଅନଭିଜ୍ଞ ହୋଇ, ସେମାନଙ୍କ ପ୍ରତି ନାନା କୁବ୍ୟବହାର ପ୍ରଦର୍ଶନ କରିଥାନ୍ତି ଏବଂ ସେଥିପାଇଁ ତାଙ୍କର ଜୀବନ ସର୍ବଦା ବିପତ୍ତିସଙ୍କୁଳ ହୋଇ ରହିଥାଏ । ଏହି ସ୍ଖଳନ ବା ଭ୍ରମ ପ୍ରମାଦରୁ ରକ୍ଷା ପାଇବା ନିମନ୍ତେ ମାନବ ସ୍ୱଭାବତଃ ନାନା ପ୍ରକାର ଚେଷ୍ଟା କରୁଥିବାର ଦେଖାଯାଏ । ଏହି ଉଦ୍ଦେଶ୍ୟରେ ଶାରୀରିକ, ମାନସିକ ଓ ଆର୍ଥିକ ଦଣ୍ଡମାନ ସମାଜରେ ପ୍ରବର୍ତ୍ତିତ ହେଉଅଛି ଏବଂ ସମୟ ସମୟରେ ନିର୍ବାସନ ବା ପ୍ରାଣବିନାଶ ପର୍ଯ୍ୟନ୍ତ ଉପାୟ-ମାନ ମଧ୍ୟ ପ୍ରଯୋଜିତ ହେଉଅଛି । ଏହା ଅବଶ୍ୟ କରଣୀୟ । ମାତ୍ର

ମନେ ରଖିବାକୁ ହେବ, ଏହି ସ୍ଖଳନର ନିରାକରଣ ଉପରୋକ୍ତ ଉପାୟ-ମାନଙ୍କରେ ନାହିଁ—ଅଛି କେବଳ ଅନ୍ତଃଶକ୍ତି ଓ ଅନ୍ତୋନ୍ନତିରେ । ଉପରୋକ୍ତ ଉପାୟଗୁଡ଼ିକ କେବଳ ବାହ୍ୟାରଚ; ସୁତରାଂ ସେଗୁଡ଼ିକ ସ୍ୱାଧୀନପ୍ରାଣ ମାନବର ସ୍ୱାଧୀନତାପ୍ରସୂତ ସ୍ଖଳନପ୍ରବୃତ୍ତିର ପୂର୍ଣ୍ଣ ସଂସ୍କାର କରି ନ ପାରନ୍ତି । ଚୌର୍ଯ୍ୟ ପ୍ରଭୃତି ନାନା ଦୁଷ୍କାର୍ଯ୍ୟର ନିବୃତ୍ତି ନିମିତ୍ତ ଯେଉଁ ସବୁ ରାଜନୈତିକ ଓ ସାମାଜିକ ଦଣ୍ଡମାନ ଅବଲମ୍ବିତ ହୋଇଅଛି, ସେମାନଙ୍କ ମଧ୍ୟରୁ କୌଣସିଟି ଅଦ୍ୟ ପର୍ଯ୍ୟନ୍ତ ଏହି ଦୁଷ୍ପ୍ରବୃତ୍ତିଗୁଡ଼ିକର ନିରାକରଣରେ ସମ୍ପୂର୍ଣ୍ଣରୂପେ କୃତକାର୍ଯ୍ୟ ହୋଇ ନାହିଁ । ଦେଖାଯାଏ, ଦୁର୍ଦ୍ଧର୍ଷ ଛାତ୍ରର ଦୁର୍ଦ୍ଧର୍ଷତା ଦୂର କରିବା ସକାଶେ ଶିକ୍ଷକ ନାନା ପ୍ରକାର ଦଣ୍ଡ ଓ ଭୟର ଆଶ୍ରୟ ନେଇ ସୁଦ୍ଧା ତାହାର ସେ ପ୍ରବୃତ୍ତିକୁ ସମୂଳେ ଉତ୍ପାଟନ କରି ପାରନ୍ତି ନାହିଁ । କାରଣ, ଛାତ୍ର ପ୍ରକାଶ୍ୟଭାବରେ ସେହି ପ୍ରବୃତ୍ତି ପ୍ରଦର୍ଶନ ନ କଲେ ସୁଦ୍ଧା ଅନ୍ତରରେ ସର୍ବଦା ତାହାଦ୍ୱାରା ଅଭିଭୂତ ହୋଇ ବାଦଗରେ ସ୍ଖଳିତ ହେବାକୁ ସଚେଷ୍ଟ ଥାଏ । ସେହିପରି ଚୋର ପୋଲିସ ପ୍ରଭୃତିଙ୍କ ଭୟରେ ଚୌର୍ଯ୍ୟବୃତ୍ତି-ଅବଲମ୍ବନ କରିବାକୁ ବାହ୍ୟ ଅନିଚ୍ଛା ଓ ଉଦାସୀନତା ପ୍ରଦର୍ଶନ କଲେହେଁ ଗୁପ୍ତ ଭାବରେ ସର୍ବଦା ଉପାୟ ଅନ୍ୱେଷଣ କରୁଥାଏ ଏବଂ ସୁବିଧା ପାଇଲେ ତତ୍‌କ୍ଷଣାତ୍ ତାହାର ପ୍ରବୃତ୍ତି ଚରିତାର୍ଥ କରି ଦିଏ । ଏହିପରି କେତେକ ବ୍ୟକ୍ତି ସାମାଜିକ ଓ ବ୍ୟକ୍ତିଗତ ନିନ୍ଦାରୁ ର.. ପାଇବା ଲାଗି ବାହାରେ 'ଧର୍ମ' 'ଧର୍ମ' ବୋଲି ଅସ୍ଫାଳନ କଲେ ସୁଦ୍ଧା, ଭିତରେ ଅଧର୍ମ ପ୍ରତି ଅସ୍ଥା ଦମନ କରି ନ ପାରି ନାନା ପ୍ରକାର କୁକାର୍ଯ୍ୟରେ ନିଯୁକ୍ତ ରହିଥାନ୍ତି ଓ ଅନ୍ୟ କେତେକ ସମାଜଭୟ ଓ ଲୋକନିନ୍ଦାରୁ ରକ୍ଷା ପାଇବା ନିମିତ୍ତ ବାଣୀରେ ନିଃସ୍ୱାର୍ଥପରତା ଓ ଦେଶହିତୈଷିତାରେ ଉନ୍ମତ୍ତ ହେଲେ ମଧ୍ୟ ଲୁକ୍‌କାୟିତ ଭାବରେ ସ୍ୱାର୍ଥସିଦ୍ଧିରେ ନିରତ ରହିଥାନ୍ତି । ଏହି ବାସ୍ତବ ଘଟନାମାନ ଦେଖି କିଏ ନ କହିବ ଯେ, ବାହ୍ୟ ଉପାୟରେ ମାନବର ଦୁଷ୍ପ୍ରବୃତ୍ତି ଓ ସ୍ଖଳନ ସମ୍ପୂର୍ଣ୍ଣରୂପେ ଦୂରୀଭୂତ ହୋଇ ନ ପାରେ ? ସେଥିପାଇଁ ଏପରି ଉପାୟ ଅବଲମ୍ବନ କରିବା

ଉଚିତ, ଯଦ୍ଦ୍ୱାରେ ଏହି ପ୍ରବୃତ୍ତିଗୁଡ଼ିକ ସମୂଳେ ଧ୍ୱଂସପ୍ରାପ୍ତ ହୋଇ ମାନବପ୍ରାଣରେ ନବୀନ ବଳ ଓ ପୁଣ୍ୟ ସଂସ୍କାର ସମାହିତ ହେବ । ଏହି ଜିଗୀଷୁ, ଦୁଷ୍ପ୍ରବୃତ୍ତିମାନଙ୍କର ଅଧୀନ ମାନବପ୍ରାଣରେ ବାହ୍ୟ ଭୟ ଓ ଦଣ୍ଡବିଧାନ ନୁହେଁ; କେବଳ ଅସୁସଂସ୍କାରେଚ୍ଛୁ ମାନବର ହୃଦୟନିଃସୃତ, ତଥା ସମସ୍ତ ଆବେଗର ସହିତ ପରିଗୃହୀତ, ଅନ୍ତଃପୁଞ୍ଜୀଭୂତ ଅନୁତାପ । ଅବଶ୍ୟ ବାହ୍ୟଦଣ୍ଡ-ବିଧାନ ଜୀବନ ସଂସ୍କାରରେ ଗୃହୀତ ନ ହେଲେ, ଜୀବନକ୍ଷେତ୍ରରେ ତାହାର କାର୍ଯ୍ୟକାରିତା ଅସମ୍ଭବ ହୋଇଥାଏ । ମାନବ ନିଜର ଅବଧେୟ କାର୍ଯ୍ୟ ସକାଶେ ଅନୁତପ୍ତ ନ ହେଲେ, ବାହାରର କୌଣସି ଦଣ୍ଡ ତାହାକୁ ସର୍ବଦା ସତ୍ପଥରେ ନେଇ ନ ପାରେ ।

ଅନୁତାପ କେବଳ ବିବେକ ସାହାଯ୍ୟରେ ଅବୈଧ କାର୍ଯ୍ୟମାନଙ୍କର ସମାଲୋଚନା ଓ ତଜ୍ଜନିତ ଦୁଃଖାନୁଭୂତି ଏବଂ ସଂସ୍କାରଲିପ୍ସା । ନାନା ପ୍ରଲୋଭନରେ ଆକୃଷ୍ଟ ହୋଇ ଯେତେବେଳେ ମାନବ କର୍ମର ପ୍ରକୃଷ୍ଟ ପଥରୁ ବିଚ୍ୟୁତ ହୁଏ, ସେତେବେଳେ ତାହାର ପ୍ରଜ୍ଞା ବା ବିବେଚନାଶକ୍ତି ହୀନପ୍ରଭ ଥାଏ; ମାତ୍ର ଯେତେବେଳେ ସେହି ବିବେକଶକ୍ତି ପୁନର୍ବାର ସମସ୍ତ ପ୍ରଭାର ସହିତ ଦେଦୀପ୍ୟମାନ ହୁଏ, ସେତେବେଳେ ସେ ନିଜର ବିଗର୍ହିତତା ଉପଲବ୍ଧି କରି ଦୁଃଖରେ ଅଭିଭୂତ ହୋଇପଡ଼େ ଏବଂ ପୁନର୍ବାର ନବୀନ ଉଦ୍ୟମରେ କାର୍ଯ୍ୟର ପ୍ରକୃତ ପଥରେ ଅଗ୍ରସର ହେବାକୁ କୃତସଂକଳ୍ପ ହୁଏ । ଏହାହିଁ ଅନୁତାପ ଓ ଜୀବନକ୍ଷେତ୍ରରେ ତାହାର କାର୍ଯ୍ୟକାରିତା । ଏହାର ପରିଣାମ ମାନବଜୀବନର ଅଶାନ୍ତି ବର୍ଦ୍ଧନ ନୁହେଁ—ବରଂ ତାହାର ସୁଖ-ଶାନ୍ତି-ସମ୍ପାଦନ । ସୁତରାଂ ଆମ୍ଭେମାନେ ଏହି ଅନୁତାପକୁ ଗୋଟିଏ ଶକ୍ତି, କେବଳ ସେତିକି ନୁହେଁ, ଗୋଟିଏ ଗଠନଶକ୍ତି ବୋଲି ମନେ କରୁଁ ।

ଅନୁତାପର ଏହି ଗଠନଶକ୍ତି ଜୀବନର ସର୍ବ ଦିଗର ଉନ୍ନତିର ମୂଳ ନିଦାନ । ଧର୍ମ ବୋଲ, ଜ୍ଞାନ ବୋଲ, ସୁଖ ବୋଲ, ସକଳ ଦିଗରେ

ଏହି ଅନୁତାପଜନିତ କ୍ରନ୍ଦନର ଉପାଦେୟତା କାର୍ଯ୍ୟ କରି ଆସୁଅଛି । ବାସ୍ତବିକ ଯଦି ମାନବ ପ୍ରକୃତରେ ଧର୍ମପରାୟଣ ହେବାକୁ—ଅସୀମ ସହିତ ଈଶ୍ୱରଙ୍କର ପ୍ରକୃତ ସମ୍ବନ୍ଧ ପ୍ରତ୍ୟକ୍ଷଭାବରେ ଉପଲବ୍ଧି କରିବାକୁ ଇଚ୍ଛା କରେ, ତାହା ହେଲେ ତାହାକୁ ଏହି ଅନୁତାପାନଳରେ ଦଗ୍ଧୀଭୂତ ହେବାକୁ ହେବ, ତଜ୍ଜନିତ କ୍ରନ୍ଦନର ଆଶ୍ରୟ ନେବାକୁ ହେବ । ଯେତେବେଳେ ମାନବହୃଦୟ କର୍ମକ୍ଷେତ୍ରରେ ସ୍ୱୀୟଦୁର୍ବଳତାଜନିତ ସ୍ଖଳନ ସକାଶେ ଲଜ୍ଜିତ ଓ ସନ୍ତପ୍ତ ହୋଇ, ସେଥିରୁ ନିଷ୍କୃତିଲାଭ କରିବାକୁ ଚେଷ୍ଟା କରେ ଏବଂ ତାହା ଫଳରେ ନବୀନ ବଳ ଓ ନବୀନ ସ୍ପୃହାର ଉଦ୍ବୁଦ୍ଧରୂପ ସତ୍ୟ-ପବିତ୍ରତା ପଥେ ଧାବମାନ ହୁଏ, ସେତେବେଳେ ଯାଇଁ ବୁଝିବାକୁ ହେବ, ତାହାର ପ୍ରାଣରେ ଧର୍ମଭାବ ବିକଶିତ ହୋଇଅଛି । ଅବଶ୍ୟ ଅନେକେ କହି ପାରନ୍ତି, "ଅନୁତାପ ସବୁ ସମୟରେ ଧର୍ମମୂଳରେ ନିହିତ ହୋଇ ନ ଥାଏ; କାରଣ ମାନବ ମଧ୍ୟ ବିଶ୍ୱ ବ୍ରହ୍ମାଣ୍ଡର ସମସ୍ତ ବସ୍ତୁ ବିଷୟରେ ସମ୍ୟକ୍ ଜ୍ଞାନ ଲାଭ କରି, ସେହି ଜ୍ଞାନଜନିତ ବିସ୍ମୟରେ ନିମଗ୍ନ ହେବା ସଙ୍ଗେ ସଙ୍ଗେ ବିଶ୍ୱର ସହିତ ନିଜର ସମ୍ବନ୍ଧ ସ୍ଥିର କରି ପାରେ, ଏବଂ ତାହାର ଫଳସ୍ୱରୂପ ପବିତ୍ର ଆନନ୍ଦ ମଧ୍ୟ ଉପଭୋଗ କରି ପାରେ । ସୁତରାଂ ଏପରି ଅବସ୍ଥାରେ ମାନବ କୌଣସି ସ୍ଖଳନର କବଳରେ ନ ପଡ଼ି, ସ୍ୱାଧୀନଭାବରେ ଧର୍ମଭାବର ବିକାଶ ସାଧନ କରି ପାରେ ।" ମାତ୍ର ଏଥିରୁ ବୁଝିବାକୁ ହେବ ନାହିଁ ଯେ, ଅନୁତାପ ଧର୍ମଭାବର ବିକାଶରେ ସାହାଯ୍ୟ କରେ ନାହିଁ । ଏହା ଧର୍ମଭାବର ଉତ୍ପତ୍ତିର ଏକମାତ୍ର ସହକାରୀ ହୋଇ ନ ପାରେ, ତଥାପି ଏହା ନିଃସନ୍ଦେହରେ କୁହା ଯାଇ ପାରେ ଯେ, ଏହା ଧର୍ମଭାବର ବିକାଶରେ ସାହାଯ୍ୟ କରିଥାଏ । କେବଳ ଏତିକି ନୁହେଁ, ବରଂ ଅନୁତାପଜନିତ ପ୍ରେରଣାବଳରେ ଧର୍ମଭାବ ମାନବ-ହୃଦୟରେ ବିଶେଷଭାବରେ ଦୃଢ଼ୀଭୂତ ହୋଇ ତାହାର ଭବିଷ୍ୟତକୁ କ୍ରମଶଃ ପ୍ରମାଦଶୂନ୍ୟ କରି ଦେଇଥାଏ । ବାସ୍ତବିକ ନିଜର ବିଗର୍ହିତତା ନିମିତ୍ତ ଅଶ୍ରୁକଣା ବିସର୍ଜନ କରି ମାନବ ଯେତେବେଳେ ତାହାର କଳୁଷିତପ୍ରାଣର ଶୁଦ୍ଧି ସମ୍ପାଦନ କରେ ଏବଂ ତାହା ସଙ୍ଗେ ସଙ୍ଗେ ଯେତେ-

ବେଳେ ସେ ଅବଚଳିତ ଚିତ୍ତରେ ତାହାର ଧର୍ମପନ୍ଥା ଅବଲମ୍ବନ କରେ, ସେତେବେଳେ ତାହାର ପ୍ରାଣରେ ଯେଉଁ ଶାନ୍ତି ଓ ପବିତ୍ରତା ଉପଲବ୍ଧ ହୁଏ, ତାହାର ତୁଳନା ବିଶ୍ୱ ଜଗତରେ ଅଛି କିଏ । ତେଣୁ କହୁଁ, ଅନୁତାପପରିପୂତ ଜୀବନ ଅନ୍ୟାନ୍ୟ ଜୀବନ ଅପେକ୍ଷା ବହୁ ପରିମାଣରେ ଉନ୍ନତ ଓ ଦୃଢ଼ୀଭୂତ । ନାନା ପ୍ରବୃତ୍ତିର ଅଧୀନ ହୋଇ ଆମ୍ଭେମାନେ ଯେଉଁ ଅବୈଧ କାର୍ଯ୍ୟମାନ ସମ୍ପାଦନ କରୁଁ, ସେଥିନିମିତ୍ତ ଗଭୀର ଅନୁତାପ ଅନୁଭବ ନ କରି କାର୍ଯ୍ୟକ୍ଷେତ୍ରରେ ଅଗ୍ରସର ହେଲେ ଜୀବନ କ୍ରମଶଃ ସେହି ବିପଥରେ ଅଭ୍ୟସ୍ତ ହୋଇପଡ଼େ ଏବଂ ଏହି ଅଭ୍ୟାସର ପରିଣାମ କେବଳ ଗୋଟିଏ କଳଙ୍କିତ ଜୀବନ ଛଡ଼ା କିଛି ନୁହେଁ । ମାତ୍ର ପକ୍ଷାନ୍ତରରେ ଯଦି ଅମ୍ଭେମାନେ ଜୀବନର ସ୍ଖଳନ ନିମିତ୍ତ ହୃଦୟର ବେଦନା ଅନୁଭବ କରି ଅମ୍ଭମାନଙ୍କ ପ୍ରକୃତ ଗନ୍ତବ୍ୟପଥ ସ୍ଥିର କରୁଁ, ତାହାହେଲେ ଭବିଷ୍ୟତରେ ଏହି ସ୍ଖଳନର କୌଣସି ସମ୍ଭାବନା ରହେ ନାହିଁ । ଫଳତଃ ଜୀବନ ନିଷ୍କଳଙ୍କ ଓ ଧର୍ମମୂଳକ ହୋଇପଡ଼େ । ସୁତରାଂ ଅନୁତାପ ଜୀବନର ଉତ୍କର୍ଷ ବିଧାନରେ ଗୋଟିଏ ପ୍ରଧାନ ସହାୟ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେହିପରି ମାନବର ଜ୍ଞାନାର୍ଜନ ଓ ସୁଖସାଧନରେ ମଧ୍ୟ ଅନୁତାପ ତାହାର ଶୋଧନଶକ୍ତି ପ୍ରକାଶ କରିଥାଏ । ଜ୍ଞାନପିପାସୁ ତାହାର ପ୍ରାଣରେ ନିଜ କର୍ତ୍ତବ୍ୟର ମହତ୍ତ୍ୱ ଓ ଦାୟିତ୍ୱ ଉପଲବ୍ଧି ନ କଲେ କୌଣସି ମତେ ସିଦ୍ଧି ଲାଭ କରି ପାରିବ ନାହିଁ । ମାତ୍ର ଏହି ମହତ୍ତ୍ୱ ଓ ଦାୟିତ୍ୱର ଉପଲବ୍ଧି ପ୍ରାଣର ବ୍ୟାକୁଳତାରୁ ଉଦ୍ଭୂତ ନ ହେଲେ, ତାହାର ଜ୍ଞାନଚର୍ଚ୍ଚାରେ ସମସ୍ତ ଚେଷ୍ଟା ପଣ୍ଡ ହୋଇଯିବ । ନିଜର ଅଜ୍ଞାନତା ଉପଲବ୍ଧି କଲା ପରେ ହୃଦୟମଧ୍ୟରେ ଯେଉଁ ଶୋଚନାର ଉତ୍ପତ୍ତି ହୁଏ, ତାହାର ଉତ୍ତାପରେ ପରିଶୋଧିତ ହୋଇ କାର୍ଯ୍ୟ କରିବା ଦ୍ୱାରା ମାନବ ଯେଉଁ ପବିତ୍ର ସିଦ୍ଧି ଓ ଆନନ୍ଦ ଲାଭ କରେ, ତାହା କେବେହେଁ ଅନ୍ୟ ଉପାୟରେ ଅର୍ଜିତ ହୋଇ ପାରିବ ନାହିଁ । ସୁଖ ସମ୍ବନ୍ଧରେ ଠିକ୍ ସେହି କଥା । ପ୍ରକୃତ ସୁଖସମ୍ଭୋଗ ଏବଂ ତାହାର ମାଧୁର୍ଯ୍ୟର ଉପଲବ୍ଧି ଦାୟିତ୍ୱହୀନ ଓ ସହଜ-ଜୀବନଧାରୀ ମାନବପ୍ରାଣରେ କୌଣସି କାଳେ ଉପଲବ୍ଧ ହୋଇ ନାହିଁ,

କ ହେବ ନାହିଁ । ନିଜର ଦୁଃଖର କାରଣ, ସମସ୍ତ ଅବୈଧତା ଦୂର କରି ପ୍ରକୃତ ପଥରେ ପରିଚାଳିତ ହେବାରେ ମାନବର ପ୍ରକୃତ ସୁଖ ନିହିତ ଅଛି । ଯେତେବେଳ ପର୍ଯ୍ୟନ୍ତ ମାନବ ନିଜର ଅବୈଧତାରେ ଦୁଃଖିତ ଓ ଅନୁତପ୍ତ ହୋଇ ନାହିଁ ଏବଂ ଯେପର୍ଯ୍ୟନ୍ତ ସେହି ଦୁଃଖ ଓ ଅନୁତାପରୁ ଉତ୍ପନ୍ନ ନିଷ୍ଠାରେ ଗୃହୀତ ହୋଇ ନିଜ ଜୀବନର ଉତ୍କର୍ଷ ବିଧାନ କରି ନାହିଁ, ସେ ପର୍ଯ୍ୟନ୍ତ ତାହାର ପ୍ରକୃତ ସୁଖଲାଭ କରିବାର କୌଣସି ଅଧିକାର ଅଛି ନାହିଁ ବୋଲି ଭାବିବାକୁ ହେବ ।

(୨୭)

# ଗୁରୁ ଓ ଶିଷ୍ୟ

( ସାମାଜିକ ପ୍ରବନ୍ଧ )

ଶ୍ରୀ ବିପିନବିହାରୀ ଗୁପ୍ତ

କଠ ଉପନିଷଦ୍ ଯେଉଁ ଯେଉଁ ଦ୍ରବ୍ୟ, ଯେତେ ଯେତେ ଦ୍ରବ୍ୟ ଆମ୍ଭମାନଙ୍କ ନିମିତ୍ତ ବାଢ଼ି ଦେଇଅଛି, ତନ୍ମଧ୍ୟରେ ଯମ-ନଚିକେତାଙ୍କର ଏକାନ୍ତ ଜୀବନତତ୍ତ୍ୱବିଚାର ପ୍ରଧାନ ବିଷୟବସ୍ତୁ । ଯମ ଗୁରୁ, ନଚିକେତା ଶିଷ୍ୟ । ଶିଷ୍ୟ ଜ୍ଞାନାନ୍ୱେଷୀ; ଇନ୍ଦ୍ରିୟଗତ ବା ବିଷୟଗତ ଜ୍ଞାନର ନୁହେଁ, ଅତୀନ୍ଦ୍ରିୟ ପଦାର୍ଥର, ଯାହା ଇନ୍ଦ୍ରିୟ-ଜଗତ-ସୃଷ୍ଟିର କାରଣ । ଗୁରୁ ମହୋଦୟଙ୍କୁ ଶିଷ୍ୟଙ୍କର ପ୍ରଶ୍ନ ହେଉଛି, 'ମୋତେ ସେହି ବିଦ୍ୟା ସହିତ ସାକ୍ଷାତ କରାଇ ଦିଅନ୍ତୁ, ଯାହାର ଅବଲମ୍ବନରେ ମୁଁ ବିଶ୍ୱବ୍ରହ୍ମାଣ୍ଡକୁ ଚିହ୍ନି ପାରିବି, ଆତ୍ମା-ପରମାତ୍ମା ସମ୍ବନ୍ଧ ବୁଝି ପାରିବି, ମୋତେ ସେହି ମାର୍ଗର ସଙ୍କେତ ଦିଅନ୍ତୁ, ଯାହାକୁ ଅନୁସରଣ କରି ମୁଁ ବ୍ରହ୍ମଲୋକରେ ପହଞ୍ଚି ପାରିବି, ମୃତ-ଜୀବନକୁ ଅମୃତ କରି ପାରିବି ।'

ବିଦ୍ୟା ମୂଳତଃ ଦୁଇ ଜାତୀୟ; ପରା ବିଦ୍ୟା, ଅପରା ବିଦ୍ୟା । ସଂସାରର ଏକ ଏକ ବିଷୟକୁ ବିଚ୍ଛିନ୍ନ ପ୍ରକାରରେ ଅନୁଭବ କରିବା,

ବିଷୟ ବିଷୟୀର ବହିଃପ୍ରଦେଶ ସହିତ ଇନ୍ଦ୍ରିୟ ସମ୍ପର୍କ ଘଟାଇବା, ସାଂସାରିକ ସୁଖ ଦୁଃଖରେ ମଜ୍ଜି ରହିବା, ଅପରା ବିଦ୍ୟା; ପରା ବିଶ୍ୱ-ଭୁବନକୁ ଏକଯୋଗରେ, ସମ୍ପୂର୍ଣ୍ଣଭାବରେ ଚିନ୍ତା କରିବା, ତାହାର ଅନ୍ତର ପ୍ରଦେଶରେ ପହଞ୍ଚି ପାରିବା, ତାହାଠାରେ ମୂଳକାରଣ ତଥା ଅନ୍ତିମ ଜୀବନର ସାକ୍ଷାତରେ ଆସିବା, ପରା ବିଦ୍ୟାର କାର୍ଯ୍ୟ । ଉଭୟ ବିଦ୍ୟା ପ୍ରୟୋଜନ-ନିର୍ଦ୍ଦିଷ୍ଟ । ଅପରା ବିଦ୍ୟା ସାହାଯ୍ୟରେ ସଂସାରର ଅନିତ୍ୟବସ୍ତୁ, ଅନିତ୍ୟ ସୁଖ (ଯଥା—ଧନ ଦୌଲତ) କୁ ତଥା ବିଷୟଗତ କର୍ତ୍ତୃତ୍ୱକୁ ଆମ୍ଭେମାନେ ଅର୍ଜ୍ଜନ କରି ପାରିଥାଉଁ । ପରା ବିଦ୍ୟାବଳରେ ଦୃଶ୍ୟମାନ କ୍ଷୟଶୀଳ ଜଗତକୁ ଅତିକ୍ରମ କରି ଅଦୃଷ୍ଟ ଅକ୍ଷୟ ପଦାର୍ଥକୁ ନିଜ ଅଧିକାରରେ ଆଣି ପାରିଥାଉଁ, ଚିରନ୍ତନ ସୁଖର ଉପଭୋଗୀ ହୋଇଥାଉଁ । ନଚିକେତା ଏହି ପଦାର୍ଥର ପ୍ରତ୍ୟାଶୀ ।

ଜଣେ ବ୍ୟକ୍ତିଙ୍କର ପ୍ରଶ୍ନ ପଚାରିବା ଓ ଅନ୍ୟ ଜଣେ ବ୍ୟକ୍ତିଙ୍କର ସେ ପ୍ରଶ୍ନର ଉତ୍ତର ଦେବାରେ ଆମ୍ଭେମାନେ ସାଧାରଣତଃ ଧରି ନେଇ ଥାଉଁ ଯେ, ପ୍ରଥମଟି ଅଜ୍ଞ, ଦ୍ୱିତୀୟଟି ବିଜ୍ଞ । ପ୍ରଥମଟି ଅଭାବଗ୍ରସ୍ତ, ଦ୍ୱିତୀୟଟି ଅଭାବପୂରକ । ବାସ୍ତବରେ କିନ୍ତୁ ଏ ଦୁହିଙ୍କର ସମ୍ପର୍କ ତଦ୍ରୂପ ନୁହେଁ । ପ୍ରଶ୍ନ ପଚାରିବାରେ ବିଜ୍ଞତା ଅଛି । ଯେ ଶୂନ୍ୟମସ୍ତିଷ୍କ ସେ ପ୍ରଶ୍ନ କରିବାରେ ଅସମର୍ଥ । ଯାହାର ଅର୍ଥବୋଧ ଅଛି, ସେହି ବ୍ୟକ୍ତି ପ୍ରଶ୍ନ କରି ପାରେ, ପ୍ରଶ୍ନ ପରେ ପ୍ରଶ୍ନ ଉତ୍ଥାପନ କରି, ପ୍ରଶ୍ନ-ପ୍ରଶ୍ନର ମାର୍ଗ ଧରି ସେହି କଥାବସ୍ତୁକୁ ନାନା ଦିଗରେ ଖେଳାଇ ପାରେ, ତନ୍ନ ତନ୍ନ କରି ବୁଝି ପାରେ; ମଧ୍ୟ ବୁଝାଇ ପାରେ । ପୁଣି ପ୍ରଶ୍ନ ପ୍ରଶ୍ନ ଭିତରେ ପ୍ରଭେଦ ବିଦ୍ୟମାନ । ସବୁ ପ୍ରଶ୍ନ ଏକ ଜାତୀୟ ନୁହେଁ । ଯାହାର କ୍ଷମତା ଯେତେ ଅଧିକ, ସେ ସେତିକିର ଗୂଢ଼ ପ୍ରଶ୍ନ କରିପାରେ । ନଚିକେତାଙ୍କ ଦ୍ୱାରା ଯେଉଁ ପ୍ରଶ୍ନ ଉତ୍ଥାପିତ ହୋଇଅଛି, ସେ ପ୍ରଶ୍ନ ଅନ୍ୟ ଲୋକ ପକ୍ଷରେ ସମ୍ଭବ ନ ହୋଇପାରେ । ନଚିକେତାଙ୍କ ପ୍ରଶ୍ନ ନଚିକେତାଙ୍କ ଜ୍ଞାନପ୍ରଶସ୍ତିର ପରିଚାୟକ ।

ଯେପରି ସେପରି ଲୋକ ଗୁରୁ କି ଶିଷ୍ୟ ହୋଇ ନ ପାରେ । ସେହି ସେହି ସ୍ଥାନ ପାଇବାକୁ ହେଲେ, ତଦନୁରୂପ ଯୋଗ୍ୟତା ଥିବା ଆବଶ୍ୟକ । ଶିଷ୍ୟ ଶିକ୍ଷକତ୍ୱର ମୂଳ ସୋପାନ ହେଉଛି ବିଶ୍ୱାସ;—ବିଶ୍ୱାସ ପରସ୍ପରର ଶକ୍ତିରେ ଓ ବିଶ୍ୱର ସୃଷ୍ଟିତତ୍ତ୍ୱରେ । ଏହି ତତ୍ତ୍ୱର ବ୍ୟାଖ୍ୟାନ କରିବା ଯୋଗ୍ୟତା ଗୁରୁଙ୍କଠାରେ, ଗ୍ରହଣ କରିବାର ଯୋଗ୍ୟତା ଶିଷ୍ୟଠାରେ ଥିବାର କଥା । ଜ୍ଞାନର ଆରମ୍ଭରେ ବିଶ୍ୱାସ । ବିଶ୍ୱାସ ଜ୍ଞାନର ପୂର୍ବତନ ସ୍ତର । କେତୋଟି ବସ୍ତୁରେ ପ୍ରତ୍ୟୟ ଥାଇ ତତ୍ତ୍ୱ ସାହାଯ୍ୟରେ ଅନ୍ୟ ବସ୍ତୁମାନଙ୍କୁ ଆମ୍ଭେମାନେ ପ୍ରମାଣ କରିଥାଉଁ; ବସ୍ତୁ-ଜ୍ଞାନ-ପ୍ରାପ୍ତିରେ କ୍ଷମ ହୋଇଥାଉଁ । ଛାତ୍ର ନାମଧାରୀ ଯେଉଁ ଲୋକ ଜ୍ଞାତବ୍ୟ ବିଷୟ ପ୍ରତି ଗୁରୁଙ୍କର ଥିବା କ୍ଷମତା, ପୁଣି ନିଜେ ଅର୍ଜି ପାରିବା କ୍ଷମତା ପ୍ରତି ସନ୍ଦେହ ଯୁକ୍ତ, ସେ ଛାତ୍ରର ପଦବୀ ନେଇ ନ ପାରେ, ପଦାର୍ଥ ଜ୍ଞାନ ପାଇ ନ ପାରେ । ଛାତ୍ରର ଦ୍ୱିତୀୟ ଯୋଗ୍ୟତା ସଂଯତ, ନିୟନ୍ତ୍ରିତ ଜୀବନ, ଏପରି ଜୀବନ ଯେ, ତହିଁରେ ଜ୍ଞାନବୀଜ ପଡ଼ିବା ମାତ୍ରେ କାର୍ଯ୍ୟକାରୀ ହୋଇ-ଥାଏ । ଏହା ତପସ୍ୟାର ଫଳ । ତପସ୍ୟାର ଫଳ ଦ୍ୱିବିଧ । ତପସ୍ୟା-ବଳରେ ଶିଷ୍ୟ ମନ୍ଦ ପ୍ରବୃତ୍ତିଗୁଡ଼ିକୁ ଦମନ କରି ବାହାର ଲାଳସା ପିପାସାର ପ୍ରଲୋଭନକୁ ଏଡ଼ି ଦେଇ, ନିଜ ଜୀବନରେ ଅନ୍ତର୍ବହିଃ ପ୍ରଦେଶରେ ପବିତ୍ରତା ଓ ଏକାଗ୍ରତା ଆଣିଥାଏ; ଏ ବିଷୟ ସେ ବିଷୟ ପ୍ରତି ଧାବମାନ ନ ହୋଇ ଏକ ଲକ୍ଷ୍ୟ ସାଧନାରେ ନିଯୁକ୍ତ ରହି, ଏହାକୁ ଜୀବନର ବ୍ରତ କରିଥାଏ ।

ଯେ ଗୁରୁ, ସେ ଜନ୍ମରୁ ଗୁରୁ ନୁହନ୍ତି । ଛାତ୍ରଜୀବନର ମାର୍ଗ ଧରି ଯଥାପଥ ଜ୍ଞାନର ଅଧିକାରୀ ହୋଇ, ସେ ଗୁରୁ ଆସନରେ ପ୍ରତିଷ୍ଠିତ । ଏକ କାଳରେ ଯେ ଗୁରୁ, ପୂର୍ବବର୍ତ୍ତୀ କାଳର ସେ ଛାତ୍ର । ଛାତ୍ରରୁ ଗୁରୁଙ୍କର ସୃଷ୍ଟି, ପୁଣି ଗୁରୁଙ୍କ ହେତୁରୁ ଛାତ୍ରଙ୍କର ସୃଷ୍ଟି । ଅତଏବ ଛାତ୍ରର ଯୋଗ୍ୟତା ଗୁରୁଙ୍କଠାରେ ବିଦ୍ୟମାନ । ଏ ଯୋଗ୍ୟତା ଛଡ଼ା ଗୁରୁଙ୍କଠାରେ ଅଧିକ କ୍ଷମତା ମଧ୍ୟ ବର୍ତ୍ତମାନ । ଏହି କ୍ଷମତାବଳରେ ଶିଷ୍ୟଙ୍କର

ଯୋଗ୍ୟତା ମୂଲ୍ୟ କଷିବାରେ ଏବଂ ବାଧ ଯୋଗ୍ୟତାକୁ ପୂର୍ଣ୍ଣତା ପଥ ଦେଖାଇ ଦେବାରେ ଗୁରୁ ସମର୍ଥ।

ଗୁରୁଙ୍କର ଦକ୍ଷତା ସ୍ୱକୀୟ ଚେତନର ପ୍ରସାର ଘଟାଇବାରେ। ଗୁରୁଗତ କ୍ଷମତା ଯେତେ ଯେତେ ଶିଷ୍ୟ ଜୀବନରେ ପ୍ରତିଫଳିତ ହୁଏ, ଗୁରୁଙ୍କର ଯୋଗ୍ୟତା ସେତେ ପରିମାଣରେ ପରିପୁଷ୍ଟ ହେଉଥାଏ। ଗୁରୁ ବହୁ ଶାସ୍ତ୍ରରେ ପଣ୍ଡିତ, ତଥାପି ସେ ଶିଷ୍ୟ ସହିତ ଶାସ୍ତ୍ର ଅଲୋଚନା କରିବା ପାଇଁ ସର୍ବଦା ପ୍ରସ୍ତୁତ। କେବଳ ପାଣ୍ଡିତ୍ୟ ଅର୍ଜିଥିବା ନୁହେଁ; ତାହି ସଙ୍ଗେ ବିନୟ ମିଶ୍ରିତ ରହିଥିବା ପାଣ୍ଡିତ୍ୟର ଲକ୍ଷଣ। ଗୁରୁ ଯେବେ ଭାବନ୍ତି ଯେ ସେ ଯାହା ସାଧି ପାରିଅଛନ୍ତି, ତାହା ଅନ୍ୟ ପକ୍ଷରେ ଅସାଧ୍ୟ, ଯେବେ ସେ ଏହିପରି ଧାରଣା ପୋଷିଥାଆନ୍ତି ଯେ, ସେ ଏକା ସେହିପରି ପଣ୍ଡିତ ହୋଇ ପାରନ୍ତି; ଅନ୍ୟ ସମସ୍ତେ ତାଙ୍କର ନିମ୍ନ ଦେଶରେ ମାତ୍ର ରହି ପାରନ୍ତି, ତେବେ ସେ ଗୁରୁପଦବୀର ଅଯୋଗ୍ୟ। ଗୁରୁ ସାଧକ, ନିଜେ ଶିଷ୍ୟ ଥାଇ, କଠୋର ବ୍ରତର ସାଧନାରେ ସେ ଗୁରୁ ଆସନର ଯୋଗ୍ୟ ହୋଇ ପାରିଛନ୍ତି। ଏଣୁ ଗୁରୁଙ୍କର ବିଶ୍ୱାସ ଏହି ଯେ, ସେ ଯାହା ଅର୍ଜି ପାରିଛନ୍ତି, ଅନ୍ୟମାନେ ସେହିପରି ସାଧନା ସାଧି ତାହାକୁ ଅର୍ଜି ପାରିବେ। ଗୁରୁ ଅତିମାନବ; ପୁଣି ଅନେକ ଅତି-ମାନବ ସୃଷ୍ଟି କରିବା ଗୁରୁଙ୍କର କର୍ମ। ଯମ ଏକ ଅତିମାନବ; ନଚିକେତାଙ୍କୁ ଶିଷ୍ୟରୂପରେ ପାଇ, ସେ ଦ୍ୱିତୀୟ ଅତିମାନବର ସ୍ରଷ୍ଟା।

ସୃଷ୍ଟିକାର୍ଯ୍ୟ ପ୍ରଧାନତଃ ଗୁରୁଙ୍କର, କିନ୍ତୁ ପୂର୍ଣ୍ଣତଃ ନୁହେଁ। ଯେଉଁମାନଙ୍କର ଶିକ୍ଷାକାର୍ଯ୍ୟରେ ଅଭିଜ୍ଞତା ଅଛି, ସେମାନେ ନିଶ୍ଚୟ ସ୍ୱୀକାର କରିବେ ଯେ, ଯଥାର୍ଥ ବିଦ୍ୟାର୍ଥୀ ଗୁରୁଙ୍କ ଉପରେ ଶିକ୍ଷାର ସମସ୍ତ ଦାୟିତ୍ୱ ଲଦି ଦିଏ ନାହିଁ। ସେ ଗୁରୁଙ୍କର ଆଶ୍ରୟରେ, କିନ୍ତୁ ସ୍ୱକୀୟ ଶ୍ରମନିଯୁକ୍ତି ଫଳରେ ବିଦ୍ୟା ହାସଲ କରିବାରେ କ୍ଷମ ହୋଇଥାଏ। ବିଦ୍ୟା ଗୁରୁ-ଶିଷ୍ୟ ଉଭୟଙ୍କର ସୃଷ୍ଟି। ଉଭୟଙ୍କଠାରେ ମାନସଘଟିତ କ୍ରିୟା ପ୍ରତିକ୍ରିୟାର ଏକୀଭୂତ ବିକାଶ।

"ଅରଣ୍ୟୋର୍ନିହିତୋ ଜାତବେଦାଃ" *
(—କଠୋପନିଷତ୍, ୨ ଅଧ୍ୟାୟ, ୧ମ ବଲ୍ଲୀ, ୮ମ ମନ୍ତ୍ର ।)
(ଦୁଇଟି ଅରଣିର ସଂଘର୍ଷରୁ ଅଗ୍ନି)

ଗୁରୁ ଶିଷ୍ୟଙ୍କର ସମ୍ବନ୍ଧ ବହିର୍ଜଗତର ସମ୍ପର୍କ ନୁହେଁ । ଏ ସମ୍ବନ୍ଧ ଅନ୍ତଗତ, ମାନସଘଟିତ ଦାନ-ପ୍ରତିଦାନର ସମ୍ବନ୍ଧ । ଜଣେ ଦାତା, ଅନ୍ୟଟି ଗ୍ରହୀତା । ଦାନ-ଗ୍ରହଣ ସମ୍ପର୍କ ଭିକ୍ଷୁକର ସମ୍ପର୍କ ନୁହେଁ । ଯେ ଭିକ୍ଷା ମାଗେ, ସେ ଶକ୍ତି-ଶୂନ୍ୟତାର ପରିଚୟ ଦିଏ । କିନ୍ତୁ ଦାନ କାର୍ଯ୍ୟରେ ଦାତା ଶକ୍ତିମାନ୍, ଗ୍ରହୀତା ମଧ୍ୟ ଶକ୍ତିମାନ୍ । ଶକ୍ତି ନ ଥିଲେ, କେହି ଦାନ ଦେଇ ନ ପାରେ; ପୁଣି ଶକ୍ତି ନ ଥିଲେ ଅନ୍ୟ ବ୍ୟକ୍ତି ଦାନକୁ ଗ୍ରହଣ କରି ନ ପାରେ । ଶିକ୍ଷା-ସମ୍ବନ୍ଧରେ ଠିକ୍ ଏହି କଥା । ଗୁରୁ ଯେ କେବଳ ପଦାର୍ଥବାନ୍, ଶିଷ୍ୟ ଯେ ପଦାର୍ଥହୀନ—ଏପରି ନୁହେଁ । ଶିକ୍ଷା କାର୍ଯ୍ୟ ପ୍ରତି ନିରୀକ୍ଷଣ କଲେ, ବିଷୟଟି ସହଜରେ ହୃଦୟଙ୍ଗମ କରି ହୁଏ । ଶିଷ୍ୟ ଯାହା ଯେତେବେଳେ ଶିକ୍ଷା ପାଏ, ତାହା ସଙ୍ଗେ ସଙ୍ଗେ ତାହାର ମସ୍ତିଷ୍କଗତ ହୁଏ ନାହିଁ । ଶିକ୍ଷକଙ୍କ ଦ୍ୱାରା ବିଷୟଟି ଉତ୍ଥାପିତ ହେଲେ ଶିଷ୍ୟର ମସ୍ତିଷ୍କରେ ଏକ ପ୍ରତିକ୍ରିୟା ସଂଘଟିତ ହୋଇଥାଏ । ବିଷୟଟିର ଅର୍ଥ କଅଣ, ଏହା କେଉଁ ପ୍ରଦେଶର ଅନ୍ତର୍ଭୁକ୍ତ; ଏଥିରୁ ଅନ୍ୟ କେଉଁ ବିଷୟ ଅନୁଶୀଳନ କରାଯାଇ ପାରେ, ଏହିପରି ଓ ଏତତ୍ ସମ୍ପର୍କୀୟ ବିବିଧ ପ୍ରଶ୍ନ ଶିଷ୍ୟଠାରେ ଜାଗ୍ରତ ହୋଇ ଉଠେ । ଯେବେ ଏପରି ଛାତ୍ର ଥାଆନ୍ତି; ଯେଉଁମାନଙ୍କଠାରେ ଗୁରୁବାକ୍ୟ କିଛିମାତ୍ର ସ୍ପନ୍ଦନ ଘଟାଏ ନାହିଁ । ତେବେ ସେମାନେ ନାମତଃ ଛାତ୍ର । ସେମାନେ ସେହିପରି ଅବସ୍ଥାରେ ରହିଥିବା ପର୍ଯ୍ୟନ୍ତ ଶିଷ୍ୟପଦ ପାଇ ନ ପାରନ୍ତି । ଆଉ କେତେକ ଛାତ୍ର ଥାଇ ପାରନ୍ତି, ଯାହାଙ୍କଠାରେ ଶିକ୍ଷାଜନିତ ପ୍ରତିକ୍ରିୟା ଘଟିଥାଏ; କିନ୍ତୁ ଉପଯୁକ୍ତ ପ୍ରତିକ୍ରିୟା ଘଟେ ନାହିଁ । ଅର୍ଥାତ୍, ଏମାନେ ବିଷୟଟିର ଉଚିତ ଅର୍ଥ ବୁଝିବାରେ ଅଥବା ତତ୍ ସମ୍ପର୍କୀୟ ଉଚିତ ପ୍ରଶ୍ନ ଧରିବାରେ ଅକ୍ଷମ ହୋଇଥାଆନ୍ତି । ଏ ଶ୍ରେଣୀର ଛାତ୍ର ଛାତ୍ରନାମର ଯୋଗ୍ୟ; ପରନ୍ତୁ

* "ଦୁଇଟି ଅରଣି ମଧ୍ୟରେ ଅଗ୍ନି ନିହିତ" ଏହିଟି ପ୍ରକୃତ ଅର୍ଥ—

ଏମାନଙ୍କର ସ୍ଥାନ ନିମ୍ନ ସ୍ତରରେ । ଯେଉଁ ଶିଷ୍ୟର ମାନସ ପ୍ରଦେଶ ଶିକ୍ଷା-ପଦ୍ଧତିଦ୍ୱାରା ଚିକଣ ହେଲେ ଅଙ୍କୁରିତ ହୁଏ ନାହିଁ, ସେ ଗ୍ରହୀତା ସ୍ଥାନର ଅଯୋଗ୍ୟ । ଏ ଲୋକର ବର୍ତ୍ତମାନ ଶୂନ୍ୟ, ଭବିଷ୍ୟତ୍ ମଧ୍ୟ ତଦ୍ରୂପ । କିନ୍ତୁ ଯାହାଠାରେ କୌଣସି ପ୍ରକାର, ଏପରି କି ଅଶୁଦ୍ଧ ପ୍ରକାର ଅଙ୍କୁରଣ ଘଟେ, ସେ ଲୋକର ସାମୟିକ ଅଯୋଗ୍ୟତା ଥିଲେହେଁ ଏ ଅଯୋଗ୍ୟତା ଦୁରପନେୟ ନୁହେଁ । ବୃକ୍ଷମାନ ମୂଳଚ୍ଛିନ୍ନ ନ ସଜୀବ ରହିଥିଲେ ସେ ଅଶୁଦ୍ଧ ମାର୍ଗବାଟେ କ୍ରମେ ଶୁଦ୍ଧମାର୍ଗକୁ ଆସିପାରେ । ଶିକ୍ଷକ ତାହାକୁ ଏପରି ମାର୍ଗକୁ ଆଣି ପାରନ୍ତି ।

ବିଦ୍ୟା ଦାନ, ଇତର ବସ୍ତୁର ଦାନଠାରୁ ସମ୍ପୂର୍ଣ୍ଣ ପୃଥକ୍ । ଅନ୍ୟ ପାର୍ଥିବ ବସ୍ତୁର ଦାନରେ ଏକ ପକ୍ଷର ଅଳ୍ପ ବହୁତ କ୍ଷତି ହୋଇଥାଏ; ଅନ୍ୟ ପକ୍ଷର ତଦନୁକ୍ରମେ ଲାଭ ଆସିଥାଏ; ଅର୍ଥାତ୍ ଦାତା ନିଜର ଅଳ୍ପତା ଘଟାଇ ଗ୍ରହୀତାକୁ ଅଧିକ କରନ୍ତି । ବିଦ୍ୟାମାନ ଏକାଧାରରେ ଗୁରୁଶିଷ୍ୟ ଉଭୟଙ୍କର ଉପାର୍ଜନ, ଏକ କାର୍ଯ୍ୟରେ ଏକ କାଳରେ ଉଭୟେ ଲାଭବାନ୍ । ଗୁରୁଶିଷ୍ୟଙ୍କର ପରସ୍ପରଠାରେ ଦାନ ପ୍ରତିଦାନ ଘଟୁଥିବା ହେତୁରୁ ଏ ଦ୍ୱିବିଧ ଲାଭ ସମ୍ଭବ ହୁଏ । ଗୁରୁ ଯେ କେବଳ ଦାତା, ଶିଷ୍ୟ ଯେ କେବଳ ଗ୍ରହୀତା; ଦାନ ଯେ ଏକ ପ୍ରଦେଶରେ ଉତ୍ପନ୍ନ ଅନ୍ୟ ପ୍ରଦେଶରେ ନିବଦ୍ଧ, ଏପରି ନୁହେଁ । ବିଦ୍ୟାଦାନରେ ଦାତା ମଧ୍ୟ ଗ୍ରହୀତା ଗ୍ରହୀତା ମଧ୍ୟ ଦାତା ଅଟେ । ଶିକ୍ଷାକାର୍ଯ୍ୟରେ କେବଳ ଶିଷ୍ୟର ଉନ୍ନତି ଘଟିଥାଏ, ଏହା ଯଥାର୍ଥ ସତ୍ୟ ନୁହେଁ । ଗୁରୁଶିଷ୍ୟ ପରସ୍ପର ସମ୍ବନ୍ଧାନ୍ୱିତ ହେବାରେ ଉଭୟଙ୍କ ଜୀବନରେ ବିକାଶ ଘଟେ । ଶିଷ୍ୟ ଯାହାଥାଏ; ଗୁରୁଙ୍କୁ ପାଇ ସେତିକି ମାତ୍ର ରହେ ନାହିଁ; କିମ୍ବା ଗୁରୁ, ଶିଷ୍ୟକୁ ଯେଉଁ ଅବସ୍ଥାରେ ପାଆନ୍ତି, ସେହି ଅବସ୍ଥାରେ ତାହାକୁ ରଖି ଦିଅନ୍ତି ନାହିଁ ।

ପୁଣି ଶିଷ୍ୟକୁ ଶିକ୍ଷା ଦେବାକୁ ଯାଇ, ଶିଷ୍ୟଜୀବନର ସଂଗଠନରେ ନିଯୁକ୍ତ ରହି, ଗୁରୁ ଶିଷ୍ୟର ଅଭିବୃଦ୍ଧି ସଙ୍ଗେ ନିଜର ଅଭିବୃଦ୍ଧି ମଧ୍ୟ ସାଧି ପାରିଥାଆନ୍ତି । ଦାନ ପ୍ରତିଦାନର ଫଳରେ ଶିଷ୍ୟର ଅନ୍ତର୍ନିହିତ

ପଦାର୍ଥ ଯେପରି ଉଦ୍‌ବୁଦ୍ଧ ହୁଏ, ଗୁରୁଙ୍କର ତାହା ସେହିପରି ମାର୍ଜନା ପାଏ । ଶିକ୍ଷାର ଆରମ୍ଭରେ ଗୁରୁ ଓ ଶିଷ୍ୟ ଯେଉଁ ଯେଉଁ ସ୍ତରରେ ଥାଆନ୍ତି, ଶିକ୍ଷାର ଅବସାନରେ ସେମାନେ ସେହି ସେହି ସ୍ତରରେ ରହନ୍ତି ନାହିଁ । ଶିକ୍ଷା ପାଇ ଶିଷ୍ୟ ଗୁରୁଙ୍କୁ ଅତିକ୍ରମ କରିଥାଏ ବା ତାହାଙ୍କର ସମକକ୍ଷ ହୋଇଥାଏ, ଅଥବା ତନ୍ନିମ୍ନ ସ୍ଥାନରେ ରହି ଯାଇଥାଏ । କିନ୍ତୁ ଉଭୟେ ସ୍ୱକୀୟ ସ୍ତର ଅପେକ୍ଷା ଉଚ୍ଚ ସ୍ତରରେ ଉପସ୍ଥିତ ହୋଇ ପାରି ଥାଆନ୍ତି ଓ ସ୍ତର ସ୍ତର ମଧ୍ୟରେ ସମନ୍ୱୟ ଆଣି ପାରି-ଥାଆନ୍ତି । ଶିକ୍ଷା ଗୁରୁଶିଷ୍ୟ ଉଭୟଙ୍କୁ ଯେଉଁ ପ୍ରଦେଶକୁ ନେଇ ଯାଇଥାଏ, ସେହି ପ୍ରଦେଶ ଗୁରୁ ଶିଷ୍ୟ-ପ୍ରଦେଶର ସଂଯୋଗ ମାତ୍ର ନୁହେଁ; ତାହା ଏକ ବୃହତ୍ତର ମହତ୍ତର ଭୂମଣ୍ଡଳ, ଯହିଁରେ ଗୁରୁକ୍ଷେତ୍ର ଓ ଶିଷ୍ୟ କ୍ଷେତ୍ର ଉଭୟେ ଅଙ୍ଗୀଭୂତ; ଉଭୟ ପୁଣି ତାହାର ଅଂଶିତ ।

ପୁଣି ଗୁରୁଶିଷ୍ୟଗତ ଦାନ-ପ୍ରତିଦାନକୁ ଭୌତିକ ବସ୍ତୁ ଦେଣ ନେଣ ବେପାର ସହିତ ତୁଳନା କରାଯାଇ ନ ପାରେ । ଶିକ୍ଷା ଦେବା ପୂର୍ବରୁ ଯମ ନଗେକେତାଙ୍କଠାରୁ ଶିକ୍ଷା ପାଇଁ ଉଚିତ ମୂଲ୍ୟ ଦାବୀ କରି ନ ଥିଲେ, ପାଇ ନ ଥିଲେ ମଧ୍ୟ ଶିକ୍ଷାଦକ୍ଷିଣ ଦ୍ରବ୍ୟ କଣାବିକା ସାମଗ୍ରୀ ନୁହେଁ, ତାହା ବଜାର ସଉଦାଠାରୁ ସମ୍ପୂର୍ଣ୍ଣ ଭିନ୍ନ । ବଜାର ସଉଦା ମୂଲ୍ୟ ନେଇ ବିକିବା ପାଇଁ ବଢ଼ା ରହିଥାଏ; ଏହି ଏହି ସାମଗ୍ରୀ ଏତେକ ମୂଲ୍ୟରେ ବିକା ହୋଇଥାଏ, କଣା ହୋଇଥାଏ । ଶିକ୍ଷା ଅମୂଲ୍ୟ ପଦାର୍ଥ । ଶିକ୍ଷାର ସ୍ଥାନ ପାର୍ଥିବ ମୂଲ୍ୟ କଗଡର ବାହାରରେ, ଏପରି କଗଡର ଉପରରେ ମଧ୍ୟ । ଏତଦ୍ ବ୍ୟତୀତ ପାର୍ଥିବ ବସ୍ତୁ କିଣିବା ସମୟରେ ଭଲ ମନ୍ଦ ପରୀକ୍ଷା କରି ତେବେ ଯାଇ ଆମ୍ଭେମାନେ ଗ୍ରହଣ କରିଥାଉଁ; ଗ୍ରହଣ କଲା ଉତ୍ତାରୁ ମଧ୍ୟ ସାମଗ୍ରୀ ମନ୍ଦ ଥିବାର ଜାଣି ପାରି ତାହାକୁ ଫେରସ୍ତ ଦେଇଥାଉଁ । କିନ୍ତୁ ଶିକ୍ଷାଗତ ପଦାର୍ଥ ପ୍ରତି ଏ ପ୍ରକାର ପରୀକ୍ଷା ପ୍ରୟୋଗ କରାଯାଇ ନ ପାରେ । ଶିକ୍ଷା ଦେବା-ପାଇବାରେ ଗୁରୁଦତ୍ତ ପଦାର୍ଥ ଶିଷ୍ୟର ମାନସ-କ୍ଷେତ୍ର ଉପରେ କ୍ରିୟା ଘଟାଇ ସଙ୍ଗେ ସଙ୍ଗେ ତାହା ସେହି ମାନସ ରାଜ୍ୟର

ବସ୍ତୁଭୂତ ହୋଇଥାଏ । ଏପରି ଅଲୌକିକ ପଦାର୍ଥର ଯଥା—ଗୁରୁ-ଶିଷ୍ୟଗତ ଶିକ୍ଷା ବନ୍ଧନର ଔଚିତ୍ୟାନୌଚିତ୍ୟ—ପରୀକ୍ଷା ଅସ୍ମମାନଙ୍କ ପକ୍ଷରେ କଷ୍ଟସାଧ୍ୟ । ତେବେ ଶିକ୍ଷାକାର୍ଯ୍ୟ ଯଥାର୍ଥ ରୂପେ ସମାହିତ ହୋଇଅଛି, ଯମ ଯେ ନଚିକେତାଙ୍କୁ ଉପଯୁକ୍ତ ଶିକ୍ଷା ଦେଇଅଛନ୍ତି-- ତାହାର ପ୍ରମାଣ କଅଣ ? ପ୍ରମାଣ ସ୍ୱୟଂ ଭଗବାନ । ଭଗବାନଙ୍କୁ ସମ୍ମୁଖରେ ରଖି ଶିକ୍ଷାକାର୍ଯ୍ୟ ଅମ୍ଭେମାନେ ସମାଧା କରିଥାଉଁ । ଯାହା ମାନବ ପରୀକ୍ଷାର ସମ୍ଭବଯୋଗ୍ୟ ନୁହେଁ, ତାହା ଭଗବାନଙ୍କ କାମିତ ନିର୍ଦ୍ଦିଷ୍ଟ ।

ଯମ ମୃତ ପ୍ରଦେଶର କର୍ତ୍ତା । ସେ ଅମୃତ ଲୋକର ବ୍ୟାଖ୍ୟା ଦେଇ ପାରନ୍ତି କି ? ଦେଲେ ବା କପରି ? ବୋଧହୁଏ ଶିଷ୍ୟଙ୍କଠାରୁ ପରିପୂର୍ଣ୍ଣ ସହଯୋଗ ପାଇ । ମୃତପୁରର ରାଜାଙ୍କର ଅମୃତଭୁବନ ସମ୍ବନ୍ଧରେ ସଦ୍‌ଜ୍ଞାନ ଥିବାର ସ୍ୱୀକାର କରାଯାଇ ପାରେ, କାରଣ ଅମୃତର ପରିଚୟ ନ ପାଇ ମୃତ ସହିତ ଉତ୍ତମରୂପେ ପରିଚିତ ହେବା ସମ୍ଭବଯୋଗ୍ୟ ନୁହେଁ । ଏପରି ପରିଚୟ ଥିଲେ ମଧ୍ୟ, ଉକ୍ତ ଭୁବନର ସମୁଚିତ ବ୍ୟାଖ୍ୟାନ ଉପଯୁକ୍ତ ଶିଷ୍ୟର ଉପଯୁକ୍ତ ଆଲୋଚନା ଅବଶ୍ୟକ କରେ । ଶିଷ୍ୟର କୌତୂହଳ—ମହତ୍ତ୍ୱ ଗୁରୁନିବଦ୍ଧ ପଦାର୍ଥକୁ କେବଳ ଉନ୍ମୁକ୍ତ କରେ ନାହିଁ; ସେ ପଦାର୍ଥକୁ ମଣ୍ଟସ୍ଥାନ୍ କରିବାରେ ସାହାଯ୍ୟ କରିଥାଏ ।

ନଚିକେତା ପାଇଲେ, ଯାହା ସେ ଖୋଜୁଥିଲେ । ପାଇଲେ ନିଜ ଅନୁଧ୍ୟାନରୁ ନୁହେଁ, ତଥାପି ନିଜର ଅନୁଧ୍ୟାନ—ନିୟୋଜନ ହେତୁରୁ ପାଇଲେ, ଗୁରୁଙ୍କର ଶିକ୍ଷାଦାନରୁ ନୁହେଁ । ତଥାପି ଗୁରୁଙ୍କର ମନ୍ଦାପେକ୍ଷା କାରଣରୁ । ଶିକ୍ଷା ଏକ ଏକ ଲୋକର ନୈଜିକ ସଂସ୍କରଣ ନୁହେଁ; ତାହା ଗୁରୁ ଶିଷ୍ୟଙ୍କର ମିଳିତ ଚେଷ୍ଟାର ସମୂହ ଉପାର୍ଜନ । ଏହି ଅର୍ଥରେ ଗୁରୁ ଶିଷ୍ୟଙ୍କର ସନ୍ନିକୃଷ୍ଟ ବ୍ୟକ୍ତି । ଏମାନଙ୍କ ମଧ୍ୟରେ ପ୍ରଭେଦ ପଦାର୍ଥଗତ ନୁହେଁ, ମାତ୍ରାଗତ । ଜଣେ ଅଗ୍ରରେ ଅନ୍ୟ ଜଣକ ପଶ୍ଚାତ୍ ଭାଗରେ ।

ଗୁରୁ ଓ ଶିଷ୍ୟଙ୍କୁ ପୃଥକ୍ ପୃଥକ୍ ଶ୍ରେଣୀରେ ଆମ୍ଭେମାନେ ବିଭାଗ କରି ନ ପାରୁଁ । ଏପରି ପାର୍ଥକ୍ୟ ଥିଲେ, ସ୍ୱୀକୃତ ହେଲେ, ଏକର ଆକର୍ଷଣ ଅନ୍ୟଠାରେ ପ୍ରତ୍ୟାକର୍ଷଣ ଘଟାଇ ନ ପାରେ । ଯଦି ବା ଘଟାଏ, ଆକର୍ଷଣ-ପ୍ରତ୍ୟାକର୍ଷଣ ପ୍ରଣିଧାନର ବିଷୟୀଭୂତ ହୋଇ ନ ପାରେ । ଆମ୍ଭମାନଙ୍କ ଦେଶରେ ଶିଷ୍ୟଙ୍କୁ ଗୁରୁଙ୍କ ଗୃହରେ ରହିବାକୁ ହେଉଥିଲା, ଏମାନଙ୍କ ମଧ୍ୟରେ ସ୍ଥାନଗତ ବା କାଳଗତ ସମ୍ପର୍କ ଆଣିବା ପାଇଁ ନୁହେଁ, ଏମାନଙ୍କୁ ଏକାତ୍ମା କରିବା ପାଇଁ । ଗୁରୁ ଶିଷ୍ୟ ଏକଜାତୀୟ ପଦାର୍ଥ, ଏମାନେ ଏକ ଆଦର୍ଶ ପ୍ରତି ନିଯୁକ୍ତ, ଏକ ସମୂହଭୂତ, ଯେଣୁ ଏମାନେ ଏକ ସମୂହ ଅନ୍ତର୍ଗତ ଶିଷ୍ୟର ସୁଖରେ ଗୁରୁ ସୁଖୀ, ଶିଷ୍ୟର ଦୁଃଖରେ ଗୁରୁ ଦୁଃଖୀ । ଶିକ୍ଷାରେ ଶିକ୍ଷକଙ୍କର ଦୃଷ୍ଟି ନିଜଠାରେ ନ ଥାଏ । ସେ ଦୃଷ୍ଟି ଶିଷ୍ୟ ଉପରେ ।

ଶିଷ୍ୟ ଯେତେବେଳେ ଜ୍ଞାନ ପରେ ଜ୍ଞାନ ଆହରଣ କରୁଥାଏ ପ୍ରଗତି ପଥରେ ଅଗ୍ରସର ହେଉଥାଏ; ଶିଷ୍ୟର ଯେତେବେଳେ କ୍ରମ ବିକାଶ ଘଟୁଥାଏ, ଗୁରୁଙ୍କ ମନ ଆନନ୍ଦରେ ଭରି ଯାଉଥାଏ । ପକ୍ଷାନ୍ତରରେ ଶିଷ୍ୟର ସ୍ଖଳନ ଘଟିଲେ, ଗୁରୁ ଜୀବନରେ ବାଧା ପଡ଼ୁଥାଏ ।

କ୍ରୋଧାନ୍ଧ ହୋଇ ଉଦ୍ଦାଳକ ପୁତ୍ରକୁ ମୃତ୍ୟୁମୁଖରେ ଠେଲିଦେଲେ ମଧ୍ୟ ନଚିକେତା ନିଜର ଯୋଗ୍ୟତାବଳରେ ମୃତ୍ୟୁରୁ ଅମୃତ ରସ ବାହାର କରି ପାରିଥିଲେ, ଏକ ପ୍ରଶ୍ନରେ ଅମରତ୍ୱ ମାର୍ଗର ସଙ୍କେତ ପାଇ, ଅନ୍ୟ ପ୍ରଶ୍ନରେ ଯମଙ୍କଠାରୁ ନଚିକେତା ଅମରତ୍ୱ ପ୍ରତିଷ୍ଠାନର ବିଶଦ ବିବରଣ ମାଗିଥିଲେ । ପ୍ରଶ୍ନଘାତ ଯମ ବିଚଳିତ ହୋଇ ପଡ଼ିଲେ, ପ୍ରଶ୍ନଘଟିତ ସମସ୍ୟାରୁ ଅବ୍ୟାହତି ଲୋଡ଼ିଲେ । ପ୍ରଶ୍ନର ଯଥାର୍ଥ ଉତ୍ତର ଦେବା ଯମଙ୍କର କ୍ଷମତାତୀତ ଏହା ମଧ୍ୟ ସ୍ୱୀକାର କଲେ । ଯେ ତଜ୍ଜ୍ଞ ସେ କେବେ ନିଜକୁ ସର୍ବଜ୍ଞ ବୋଲି ଧରି ନିଅନ୍ତି ନାହିଁ । କିନ୍ତୁ ନଚିକେତାଙ୍କର ଦୃଢ଼ତା, କଷ୍ଟାବସ୍ଥାରେ ବିଚ୍ୟୁତ ହୋଇ ପୁଣି ଉତ୍ତର ନେବାର ଯୋଗ୍ୟତା ତାହାଙ୍କଠାରେ ଥିବାର ଯଥେଷ୍ଟ ନିଦର୍ଶନ ପାଇ,

ଯମ ମୁକ୍ତ ଆତ୍ମାର ସ୍ୱରୂପ ନିର୍ଣ୍ଣୟରେ ନିଯୁକ୍ତ ହେଲେ * । ପ୍ରଶ୍ନୋତ୍ତରରେ କେବଳ ନଚିକେତା ଯେ ବ୍ରହ୍ମଜ୍ଞାନ ପାଇଥିଲେ, ତାହା ନୁହେଁ ଯମଙ୍କଠାରେ ବ୍ରହ୍ମଜ୍ଞାନର କର୍ମଲତା ମଧ୍ୟ ଘଟିଥିଲା ।

ଶିକ୍ଷା ବୈଷୟିକ କାରବାର ନୁହେଁ, ଆଧ୍ୟାତ୍ମିକ ବେଭାର । ଶିକ୍ଷାରେ ଯେଉଁ ପଦାର୍ଥ ବିନିମୟ ଘଟେ, ଯାହା ଆମ୍ଭମାନଙ୍କର ଅଧିକାରରେ ଆସେ, ତାହା ପାର୍ଥିବ ସମ୍ପଦ ନୁହେଁ—ସ୍ୱର୍ଗୀୟ ବିଭବ । ଏ ବିଭବ ମାନବ ତଥା ଦେବ ଲୋକଙ୍କର ବିଭବ । ମାନବଠାରେ ମାନବିକ ଜାଗରଣ, ମାନବିକତାର ଶ୍ରୀବୃଦ୍ଧିକରଣ ଶିକ୍ଷାର ଧର୍ମ । ହାତୀ, ଘୋଡ଼ା, ଧନ, ସମ୍ପଦ, ବିତ୍ତକାମ୍ୟ ଭୋଗ ଉପଭୋଗ ଯମ ନଚିକେତାଙ୍କୁ ଯାଚିଥିଲେ; ମାତ୍ର ଏପରି ବିଷୟକୁ ଏ ପ୍ରକାର ସମସ୍ତ ବିଷୟକୁ ଶିଷ୍ୟ ନାସ୍ତି କରିଥିଲେ । ଏହି ଏହି ବିଷୟ କ୍ଷୟଶୀଳ ବିଷୟ ଯେ ଶିକ୍ଷାର ଉପଯୁକ୍ତ ଦାନ ହୋଇ ନ ପାରେ, ଯମ ତାହା ଉତ୍ତମ ରୂପେ ଅବଗତ ଥିଲେ ତଥାପି ଶିଷ୍ୟର ଶିଷ୍ୟତ୍ୱ ପରୀକ୍ଷା କରିବା କ୍ଷୁଦ୍ର ବସ୍ତୁର ପ୍ରଲୋଭନ ସେ ଦେଖାଇଥିଲେ । କିନ୍ତୁ ନଚିକେତା ଅଟଳ ରହିଲେ । ଯଥାର୍ଥ ବିଦ୍ୟାର୍ଥୀ ଅଳ୍ପ ପ୍ରୟୋଜନ ମେଣ୍ଟାଇବାରେ କେବେହେଁ ଶାନ୍ତ ହୁଏ ନାହିଁ । ଯଥାର୍ଥ ଗୁରୁ ଯଥାର୍ଥ ଶିଷ୍ୟକୁ କେବଳ ଅସ୍ଥାୟୀ ବିଷୟଗୁଡ଼ିକର ପରିଚୟ ବା ସାମୟିକ ଉପକାର ମାତ୍ର ଦିଅନ୍ତି ନାହିଁ; କି ଶିଷ୍ୟ ଏପରି ଶିକ୍ଷା ଗୁରୁଙ୍କଠାରୁ ପାଏ ନାହିଁ । ସେ ପାଏ ଆଧ୍ୟାତ୍ମିକ ସମ୍ଭାର । ନଚିକେତା ଏହି ସମ୍ଭାରର ପ୍ରାର୍ଥୀ ।

ଶିକ୍ଷା ଚିନ୍ତା-ଜଗତ୍, ଅର୍ଥ-ଜଗତ୍ ସହିତ ସମ୍ପୃକ୍ତ, ଏହି ଦୁଇ ଜଗତ ଅତିଭୌତିକ ପଦାର୍ଥ । ଅତିଭୌତିକ ଜଗତ୍ ଭୌତିକ ଜଗତର ଉପରେ; ପ୍ରକୃତି ସେ ତାର ମଝିରେ । ଅତିଭୌତିକ କ୍ଷମତାରେ

---

* ନଚିକେତାଙ୍କ ପିତା ଉଦ୍ଦାଳକ ପୁତ୍ରକୁ ଶାସ୍ତି ଦେବା ଅଭିଳାଷରେ ଯମଙ୍କ ନିକଟ ପଠାଇଥିଲେ । ନଚିକେତା ଯମଙ୍କ ନିକଟରୁ ଶିକ୍ଷା ପାଇବା ଲାଗି ଯମଙ୍କ ଗୃହରେ ଅନଶନ କରିଥିଲେ । ଯମ ତାଙ୍କୋଟି ପ୍ରଶ୍ନର ଉତ୍ତର ଦେବାକୁ ସ୍ୱୀକୃତ ହେବାରୁ ଅନଶନ ଭାଙ୍ଗିଥିଲେ ।

କ୍ଷମତାବାନ୍ ହୋଇ, ଭୌତିକ ପ୍ରଦେଶକୁ ଅମ୍ଭେମାନେ ନିଜର କର୍ତ୍ତୃତ୍ୱରେ ଆଣି ପାରିଥାଉଁ । ଚିନ୍ତାଜଗତ୍‌ର ଶାସନ ବସ୍ତୁଜଗତ ଉପରେ; ଆତ୍ମାମଣ୍ଡଳର ଶାସନ ଶରୀରଖଣ୍ଡ ଉପରେ । ପୁରୁଷର ପରାକ୍ରମରେ ପ୍ରକୃତିଜଗତ ପରାଭୂତ । ମାନବର ଭବିଷ୍ୟତ ଜ୍ଞାନରେ ମାନବର ବର୍ତ୍ତମାନ ଆଲୋକିତ । ଏହି ଏହି ସାମଗ୍ରୀ ଶିକ୍ଷାର ବସ୍ତୁଭୂତ । ଚିନ୍ତାର ଧାରା ସହିତ ସୁପରିଚିତ ହୋଇ ଘଟନା ଜଗତର କ୍ରମ ସହିତ ଅମ୍ଭେମାନେ ପରିଚିତ ହୋଇଥାଉଁ । ଭାବ ଭାବନାର ଗତିମାର୍ଗକୁ ଅନୁଧ୍ୟାନ କରି ବିଷୟଜଗତକୁ ଅମ୍ଭେମାନେ ଆୟତ୍ତ କରି ପାରିଥାଉଁ; ଆତ୍ମା ତତ୍ତ୍ୱ ବୁଝି ପାରି ଶରୀରତତ୍ତ୍ୱ ଅମ୍ଭେମାନେ ବୁଝି ପାରିଥାଉଁ । ନିତ୍ୟ ବସ୍ତୁରେ ନିବିଷ୍ଟ ରହି ଅନିତ୍ୟର ମୋହ ଏଡ଼ି ପାରିଥାଉଁ ।

ପଦାର୍ଥ-ପଦାର୍ଥ ମୂଲ୍ୟ ନିରୂପଣ, ପଦାର୍ଥ-ପଦାର୍ଥର ସ୍ଥାନ ନିର୍ଦ୍ଦେଶ-କରଣ ଶିକ୍ଷାର କାର୍ଯ୍ୟ । କପା ଚଷିବା, ସୂତା-କାଟିବା, କନା ବୁଣିବା ପ୍ରଭୃତି ଶିକ୍ଷାର ଅଙ୍ଗ ହୋଇପାରେ, କିନ୍ତୁ ଏଇତକ କାର୍ଯ୍ୟ କରିଦେଲେ ସେହି ସେହି କାର୍ଯ୍ୟରେ ଦକ୍ଷ ହୋଇ ପଡ଼ିଲେ, ଶିକ୍ଷାର କର୍ମ ଶେଷ ହୁଏ ନାହିଁ । ଏପରି ବସ୍ତୁର ଉତ୍ପାଦନରେ ନିଯୁକ୍ତ ରହି ମାନସିକ ଏକାଗ୍ରତା, ଚରିତ୍ରର ପବିତ୍ରତା, ମାନବର ଜଡ଼ତା ସାଧି ପାରିଲେ, ପ୍ରବୃତ୍ତି ନିବୃତ୍ତି ରିପୁ-ଗୁଡ଼ିକୁ ଦମନ କରି ପାରିଲେ, ଶିକ୍ଷାର ଧର୍ମ ପାଳିତ ହୁଏ । ଏହି ଏହି ବୃତ୍ତିର ଅଭ୍ୟାସ ନେଲେ, ଦୁଇ ଗୃହ ପଇସା ଆସି ପାରେ, ପ୍ରାଣୀ ଶରୀର ବଞ୍ଚି ପାରେ, କିନ୍ତୁ ଏତଦ୍ଦ୍ୱାରା ମାନବର ଆତ୍ମା ପରିତୃପ୍ତ ହୁଏ ନାହିଁ । ଶିକ୍ଷାକୁ ଅନ୍ନାହାର ପରିଧାନ ପ୍ରଭୃତି ଶାରୀରିକ ପ୍ରୟୋଜନ ସିଦ୍ଧି ଉପାଦାନ ରୂପେ ଗ୍ରହଣ କରିବାରେ ଶିକ୍ଷାର ପରିସର କ୍ଷୁଦ୍ର ହୋଇଯାଏ । ଶିକ୍ଷାର ମୁଖ୍ୟବସ୍ତୁରେ ବାଧା ଆସିଥାଏ । ଶିକ୍ଷାର ନିୟୋଜନ ଶିକ୍ଷା ପାଇଁ; ମାନବ ଜୀବନର ସଂସ୍କୃତି ପାଇଁ । ଶିକ୍ଷା ଫଳରେ ଧନାଗମନ, କ୍ଷମତା ଅର୍ଜ୍ଜନ ଘଟି ପାରେ; କିନ୍ତୁ ଏଣୁ ତେଣୁ ବସ୍ତୁ ପାଇ, ସାର ପଦାର୍ଥକୁ ହରାଇ, କେହି କେବେ ଯଥାର୍ଥ ସୁଖଶାନ୍ତିର ଅଧିକାରୀ ହୋଇ ନ ପାରେ । ପରିପୂର୍ଣ୍ଣ

ସୁଖ ଶାନ୍ତି ନ ଆସିବା ପର୍ଯ୍ୟନ୍ତ ଶିକ୍ଷାର କାର୍ଯ୍ୟ ଅପୂର୍ଣ୍ଣ ରହିଯାଏ । ଜୀବନର ସାରତତ୍ତ୍ୱରେ ଉପଗଦାର ହେବା • ଶିକ୍ଷାର୍ଥୀର କାମନା । ନଚିକେତା ଏହି ପଦାର୍ଥର ଦାବୀଦାର ।

ଯାହା ଜୀବନମୟ ସାଧନାର ଚୂଡ଼ାନ୍ତ ନିର୍ଯ୍ୟାସ ତାହା ମାନବର ଅନୁତ୍ତମ ପଦାର୍ଥ । ଏହି ପଦାର୍ଥ ଭୂଇଁରେ ପଡ଼ି ନ ଥାଏ ବା ଏଠି ସେଠି ବଣ୍ଟି ଦିଆଯାଏ ନାହିଁ । ଏ ପଦାର୍ଥକୁ ଅଳ୍ପ ଲୋକେ ପାଇ ପାରି ଥାଆନ୍ତି, ଦେଇ ନେଇ ପାରି ଥାଆନ୍ତି, ଦେଇ ପାରିବା ପୁରୁଷ ମଧ୍ୟରେ ଯମ, ନେଇ ପାରିବା ପୁରୁଷ ମଧ୍ୟରେ ନଚିକେତା । ଗୁରୁଙ୍କ ଯୋଗ୍ୟତା, ଶିଷ୍ୟଙ୍କ ଯୋଗ୍ୟତା, ଅନୁଶୀଳନ ମାର୍ଗର ଯୋଗ୍ୟତା ଏହି ତିନି ବସ୍ତୁର ଯଥାଯଥ ନିଯୁକ୍ତି ଉପରେ ଶିକ୍ଷାକାର୍ଯ୍ୟ ନିର୍ଭର କରେ । ଏଥିମଧ୍ୟରୁ ପ୍ରଥମ ଦୁଇ ବସ୍ତୁର ପ୍ରୟୋଜନ ଅଧିକ, କାରଣ ଗୁରୁଶିଷ୍ୟ ଉଭୟଙ୍କଠାରେ ଉତ୍ତମତା ଥିଲେ, ଶିକ୍ଷାପ୍ରଣାଳୀ ସ୍ୱତଃ ଉତ୍ତମ ହୋଇ ଉଠେ । ନଚିକେତା ଉପଯୁକ୍ତ ଶିକ୍ଷା ନିମିତ୍ତ ଉପଯୁକ୍ତ ଶିଷ୍ୟ । ଯମ ଏବଂବିଧ ଶିକ୍ଷା ନିମିତ୍ତ ଉପଯୁକ୍ତ ଗୁରୁ । ଶିକ୍ଷାପଦ୍ଧତି ଏପରି ପଦ୍ଧତି ଯେ, ଏତଦ୍ଦ୍ୱାରା ପଦାର୍ଥ ଦାନ କରି ପଦାର୍ଥ ସଂଗ୍ରହ କରାଯାଇ ଥାଏ, ପଦାର୍ଥକୁ ବିତରଣ କରିବାରେ ପଦାର୍ଥର ବୃଦ୍ଧି ଘଟୁଥାଏ । ଗୁରୁଶିଷ୍ୟଙ୍କର ସମ୍ବନ୍ଧ ଏପରି ସମ୍ବନ୍ଧ ଯେ ଏକକାଳରେ ଘଟିତ ହେଲେ ମଧ୍ୟ ତାହା ପରବର୍ତ୍ତୀ କାଳରେ ସେହିପରି ରହିଥାଏ; ଗୁରୁଶିଷ୍ୟଙ୍କ ଜୀବନ ଏପରି ଜୀବନ ଯେ, ଜଣେ ଅନ୍ୟକୁ ବଡ଼ କରିବାକୁ ଯାଇ ନିଜେ ମଧ୍ୟ ବଡ଼ ହୋଇଯାଏ । ଯମ ନଚିକେତାଙ୍କର ପାରସ୍ପରିକ ତତ୍ତ୍ୱାଲୋଚନା ଶିକ୍ଷକତାର ମୂର୍ତ୍ତିମନ୍ତ ନିଦର୍ଶନ । ଶିକ୍ଷା ନିମିତ୍ତ ଏହାହିଁ ଆମ୍ଭମାନଙ୍କର ଏକାନ୍ତ ଅବଲମ୍ବନ ।

"ଆଶ୍ଚର୍ଯ୍ୟୋ ବକ୍ତା କୁଶଳୋଽସ୍ୟ ଲବ୍ଧାଶ୍ଚର୍ଯ୍ୟୋ ଜ୍ଞାତା କୁଶଳାନୁଶିଷ୍ଟଃ"

[ କଠୋପନିଷଦ୍, ୧ମ ଅଧ୍ୟାୟ, ୨ ବଲ୍ଲୀ, ୭ମ ମନ୍ତ୍ର ]

( ୨୮ )

# ଅସୀମର ଆହ୍ୱାନ

( ଶ୍ରୀ କପିଳେଶ୍ୱର ଦାସ, ଏମ୍., ଏ., ବି. ଇଡ଼ )

ମୁକ୍ତି ପାଇଁ ପ୍ରେରଣା ମନୁଷ୍ୟର ଅନ୍ତର୍ନିହିତ । ସସୀମର ଅସୀମରେ ପର୍ଯ୍ୟବସାନ୍ହି ମୁକ୍ତି । ଅସୀମ ଆମର ଅତି ପରିଚିତ, ଅତି ନିକଟ, ଅତି ଘନିଷ୍ଠ; ତଥାପି ଅତି ଅଜ୍ଞାତ, ଅତି ଦୂର, ଅତି ଅପରିଚିତ । ଅସୀମରେ ଆମର ଜନ୍ମ ବର୍ଦ୍ଧନ ଓ ଅବସାନ; ଅସୀମକୁ ଆମେ ପ୍ରତି ମୁହୂର୍ତ୍ତରେ ଦେଖୁଛୁ, ଅନୁଭବ କରୁଛୁ, ସ୍ପର୍ଶ କରୁଛୁ, ଅସୀମ ସହିତ ଖେଳୁଛୁ; ତଥାପି ମନେ ହୁଏ, ଅସୀମ ଯେପରି କୌଣସି ଦୂରାଗତ ଅତିଥି, ସ୍ୱପ୍ନପୁରୀର ମାୟା, ସ୍ୱର୍ଗଲୋକର କଳ୍ପନା । ଏଠାରେହିଁ ସୃଷ୍ଟିର ବୈଚିତ୍ର୍ୟ, ଜୀବନର ରହସ୍ୟ ।

ଅସୀମ ପ୍ରତି ମନୁଷ୍ୟର ଆକାଂକ୍ଷା, ତୃଷ୍ଣା, ଶ୍ରଦ୍ଧା ପ୍ରବଳ । ଜାଣି ଶୁଣି ବା ନ ଜାଣି ନ ଶୁଣି ମନୁଷ୍ୟ ଅସୀମ ଆଡ଼କୁ ଚିର ଅଭୁକ୍ଷ । ଏହି ଆକର୍ଷଣ ବା ଇଚ୍ଛାହିଁ ମନୁଷ୍ୟର ବହୁଳ କ୍ରିୟାକଳାପରେ, ବହୁଳ ଉଦ୍ୟମର ମୂଳରେ ଥାଏ । ଧର୍ମ ସସୀମଠାରୁ ଅସୀମ ପର୍ଯ୍ୟନ୍ତ ମାର୍ଗକୁ ସୁଗମ, ସଂଯତ, ଶୃଙ୍ଖଳିତ କରେ; କଳା ତାହାକୁ ସୌନ୍ଦର୍ଯ୍ୟରେ ସମ୍ମୋହନ ରୂପ ଦିଏ; ବିଜ୍ଞାନ ତାହାର କେତୋଟି ଅଦୃଷ୍ଟ ସଙ୍କେତ

ହଏ; ଜୀବନ ତାହାର ପ୍ରତିରୂପ ନେଇ ଅଙ୍କନ କରେ । ସବୁ ସେହି ଅସୀମର ଦ୍ୟୋତକ, ପ୍ରକାଶକ; ଅସୀମର ଆହ୍ୱାନରେ ସମସ୍ତେ ଚଞ୍ଚଳ, ଅଗ୍ରଗାମୀ ।

ବାସ୍ତବ ସାଂସାରିକ ଜୀବନରେ ମନୁଷ୍ୟର ତୃପ୍ତି ନାହିଁ । ସେ କୌଣସି ଗୋଟିଏ ପଦାର୍ଥ ପାଇବାକୁ ଇଚ୍ଛା କରେ, ତାହା ପାଏ; କିନ୍ତୁ ତହିଁରେ ସେ ସନ୍ତୁଷ୍ଟ ହୁଏ ନାହିଁ । ଅଧିକ କିଛି ପାଇବାକୁ ପୁଣି ବ୍ୟଗ୍ର, ଅଧୀର ହୋଇ ଉଠେ । ସେ ଭାବନା କରେ, ଗୋଟିଏ ଅବସ୍ଥାରେ ପହଞ୍ଚିଲେ ସେ ନିତ୍ୟସୁଖ ଲାଭ କରିବ, ସେ ଅବସ୍ଥାରେ ପହଞ୍ଚେ; କିନ୍ତୁ ଦେଖେ ତହିଁରେ ସୁଖର ସତ୍ତା ନାହିଁ, ତାହା ଯେପରି ଗୋଟିଏ ନିଛକ ଶୂନ୍ୟତା । ସେ ପୁଣି ଅନ୍ୟ ଅବସ୍ଥାରେ ଉପନୀତ ହେବାର ଉପକ୍ରମ କରେ । ଏହିପରି ତାହାର ଲାଗି ଥାଏ ନିରନ୍ତର ଅସୁଖ-ଅଶାନ୍ତିଜନିତ ନିରବଧି ସଂଘର୍ଷ । ଏ ସଂଘର୍ଷର ମୌଳିକ ତଥ୍ୟ ସେ ପ୍ରାୟ ବୁଝେ ନାହିଁ, ଏଣୁ ବିଶେଷ କ୍ଲେଶ ଅନୁଭବ କରେ । ଏହାହିଁ ସଂସାର ମାର୍ଗର ଅଭ୍ୟସ୍ତ ଲକ୍ଷଣ ।

ଏ ସଂଘର୍ଷ ହିଁ ସାକ୍ଷ୍ୟ ଦିଏ, ମନୁଷ୍ୟ ମୁକ୍ତ ନୁହେଁ । ସେ ଅଳ୍ପରେ ସନ୍ତୁଷ୍ଟ ନୁହେ, ଅଧିକ ଅଧିକ ଆଶା କରେ । ଯେଉଁ ଅବସ୍ଥାରେ ପହଞ୍ଚିଲେ ଆଉ ଆଶା କରିବାକୁ କିଛି ନ ଥିବ, ପୂର୍ଣ୍ଣକାମ ହେବ, ସେ ଅବସ୍ଥାକୁ ଊଣାରେ ମନୁଷ୍ୟ କେବେ ସନ୍ତୁଷ୍ଟ ନୋହିବ । ସେ ଅବସ୍ଥା ବା ଠିକ କହିଲେ ଅବସ୍ଥାତୀତ ଅବସ୍ଥା ହିଁ ଅସୀମ । କିନ୍ତୁ ମନୁଷ୍ୟ ସସୀମ ଜଗତକୁ ଭ୍ରମରେ ଅସୀମ ବୋଲି ଗ୍ରହଣ କରେ । ଏହା କିନ୍ତୁ ଅସମ୍ଭବ; ସେଥିପାଇଁ ତାହାର କଷ୍ଟ । ଜ୍ଞାନୀ ଲୋକେ ଏ ପରିସ୍ଥିତିର ଅସମ୍ଭାବନା, ବ୍ୟର୍ଥତା ବୁଝନ୍ତି; ଏଣୁ ସାଧାରଣ ଲୋକଙ୍କଠାରୁ ଭିନ୍ନ ପନ୍ଥା ଅବଲମ୍ବନ କରନ୍ତି । କିନ୍ତୁ ଏହା ବୋଲି ସାଧାରଣ ଲୋକ ମଧ୍ୟ ଅସୀମ ଆଡ଼କୁ ଅଗ୍ରସର ନ ହୁଅନ୍ତି, ଏ କଥା କହି ହେବ ନାହିଁ । ତେବେ ପ୍ରଭେଦ

ଏଣେକ ହୋଇ ପାରେ, ଜ୍ଞାନୀ ଯେଉଁ ଲକ୍ଷ୍ୟ ପ୍ରତି ସଚେତ, ସାଧାରଣ ଅଚେତ; ଜ୍ଞାନୀର ପଥ ସରଳ, ସାଧାରଣର କୁଟିଳ; ଜ୍ଞାନୀ ଦୂରଗାମୀ, ସାଧାରଣ ଅଳସ୍ୟପରାୟଣ; ଜ୍ଞାନୀ ଏବେ, ଏଠାରେ ଏହ ଜୀବନରେ ମୁକ୍ତ; ସାଧାରଣର ମୁକ୍ତି ବହୁଜୀବନ, ବହୁ ଅଭ୍ୟାସ ସାପେକ୍ଷ । ତଥାପି ସେହି ଅଖଣ୍ଡ ଆନନ୍ଦରେ ସମସ୍ତଙ୍କର ସଞ୍ଚାର, ଶେଷରେ ସେହି ଆନନ୍ଦରେ ସମସ୍ତଙ୍କର ପ୍ରବେଶ । ସେଥିପାଇଁ ପରା ଉପନିଷଦ ବଜ୍ରଗମ୍ଭୀର କଣ୍ଠରେ କହୁଛି, "ମହତ୍ର ଆନନ୍ଦରୁ ଜଗତର ସୃଷ୍ଟି, ମହତ୍ ଆନନ୍ଦରେ ଜଗତର ସ୍ଥିତି, ସେହି ମହତ୍ ଆନନ୍ଦରେ ପୁଣି ତାହାର ଲୟ ।"

କିନ୍ତୁ ପ୍ରଶ୍ନ ଉଠିପାରେ, ମନୁଷ୍ୟ କାହିଁକି ଭୌତିକ ସଂସାରରେ ସୁଖୀ ନ ହେବ ? ଜଗତର ସୀମାକୁ ମନୁଷ୍ୟ କପରି ଅତିକ୍ରମ କରିବ ? ଏ ଶିକ୍ଷା କି ନୈରାଶ୍ୟବାଦ ( Pessimism ) ନୁହେଁ ? କଠୋର ଅନୁଭୂତ ଉତ୍ତର ଦିଏ, ନା, ଏ ଶିକ୍ଷା ନୈରାଶ୍ୟବାଦ ନୁହେଁ, ଏହା କଠୋର ବାସ୍ତବ । ମନୁଷ୍ୟ ବାହାରେ ମନୋରଞ୍ଜନ ଭାବରେ ଯାହା କଳ୍ପନା କାହିଁକି, ହୃଦୟର ଗଭୀର ଅନ୍ତରାଳରେ ଏ ସତ୍ୟ ଉପଲବ୍ଧି କରେ । ଜୀବନରେ ସୁଖ ଗୁଣେ ଲଭିଲେ ଦୁଃଖ ଦଶଗୁଣ ବଢ଼େ । ଫୁଲରେ କୀଟ ଥାଏ, ଚନ୍ଦ୍ରରେ କଳଙ୍କ ଥାଏ । ଆମର ଶାନ୍ତି, ସୁଖ ଭଙ୍ଗ କରିବାପାଇଁ କୌଣସି ନା କୌଣସି କାରଣ ଅତର୍କିତ ଭାବରେ ଆମ ଆଗରେ ଠିଆ ହୁଏ । ମନୁଷ୍ୟ ସହସ୍ର ସହସ୍ର ବର୍ଷ ହେଲା ଏ ମର୍ତ୍ତ୍ୟ-ଲୋକରେ ବାସ କରିଛି, ବିରାଟ ସଭ୍ୟତାର ଦୃଢ଼ ଦୁର୍ଗ ତୋଳିଛି ବୋଲି ଦମ୍ଭ ଧରୁଛି; ତଥାପି ଏ ବିଂଶ ଶତାବ୍ଦୀରେ ଦେଖୁଛି, ପ୍ରଥମ ଶତାବ୍ଦୀ ଅପେକ୍ଷା ତାହାର ଜୀବନ କୌଣସି ପ୍ରକାର ନିରାପଦ ନୁହେଁ । ଧନର ଅଭାବ ନାହିଁ, ବିଳାସରେ ସେ ମାତିଛି । ତଥାପି ଅଭାବ ଅପେକ୍ଷା ବିଳାସର ଆଧିକ୍ୟ ଅଧିକ ବାଧା ଦେଉଛି । ସମର ହୁଙ୍କାର ଶୁଭୁଛି । ସେତେବେଳେ ତାହାର ବିଳାସର, ସୁଖର ସ୍ୱପ୍ନ ଅଦୃଶ୍ୟ ହୋଇ ଯାଉଛି; ସେ ଦରିଦ୍ରରୁ ଦରିଦ୍ରତମ ହେଉଛି । ଆଧୁନିକ ଜୀବନରେ ନାନା

ସୁବିଧାର ସୃଷ୍ଟି ହେଉଛି; ଜୀବନକୁ ସୁଖମୟ କରିବା ପାଇଁ ବିଜ୍ଞାନ ଅଶ୍ୱର୍ଯ୍ୟଜନକ ଅବିଷ୍କାର କରୁଛି । ତଥାପି ବିଜ୍ଞାନର ପ୍ରତ୍ୟେକ ଅବିଷ୍କାର ଏପରି ଗୋଟିଏ ଗୋଟିଏ ସମସ୍ୟା ଆଣି ଥୋଉଛି, ଯାହାର ସମାଧାନରେ ଜଗତ୍ ସ୍ତମ୍ଭିତ ହେଉଛି । ପରମାଣୁ ବୋମା ଗୋଟିଏ ମାତ୍ର ଦୃଷ୍ଟାନ୍ତ । ଏ ସବୁ ସତ୍ତ୍ୱେ ଯଦି କିଏ କହେ, ଜଗତରେ ମନୁଷ୍ୟ ଅସୁଖୀ ନୁହେଁ, ତେବେ ବାସ୍ତବିକ ସେ କ ମିଥ୍ୟାବାଦୀ ନୁହେ ?

ଶେଷ ବିଶ୍ଳେଷଣରେ ଏ ଅସୁଖର କାରଣ କ'ଣ ? ପ୍ରାଚୀନମାନେ ବହୁପୂର୍ବରୁ ଏହା କହିଛନ୍ତି । ସୁଖ ଓ ଦୁଃଖ ମନୁଷ୍ୟ ମନର ଅବସ୍ଥାନ୍ତର ମାତ୍ର । ଖ୍ୟାତ ଇଂରେଜ କବି 'ମିଲଟନ୍' ସେଥିପାଇଁ ପଦ ଗାଇଛନ୍ତି, "ମନହିଁ ସ୍ୱର୍ଗକୁ ନରକରେ, ନରକକୁ ସ୍ୱର୍ଗରେ ପରିଣତ କରେ ।" ଶରୀର ଓ ମନକୁ ମନୁଷ୍ୟ ସର୍ବସ୍ୱ ମନେ କରେ । ଶରୀର ଓ ମନ ତ ସ୍ଥିର ବସ୍ତୁ ନୁହେ, ଏଣୁ ସେ କଷ୍ଟ ଭୋଗ କରେ । ଆଜି ଆମ ଶରୀର ସୁସ୍ଥ, କାଲି କନ୍ତୁ ଭୀଷଣ ରୋଗାକ୍ରାନ୍ତ । ଅଳଗାଣ ଘେ ଡ଼ା ପରି ମନର ଦ୍ରୁତ ଅସ୍ଥିର ଅବସ୍ଥା କିଏ ପ୍ରତି ମୁହୂର୍ତ୍ତରେ ଅନୁଭବ ନ କରୁଛି ? ସେଥିପାଇଁ ଦେଶ କବି ତାହାକୁ ଲକ୍ଷ୍ୟ କରି ଗାଇଛନ୍ତି, 'ପ୍ରଭଞ୍ଜନର ବେଗ, ଅଳ୍ପେକ ଗତି ।' ଏପରି ପରିବର୍ତ୍ତନଶୀଳ, କ୍ଷୟଶୀଳ ପଦାର୍ଥ ଉପରେ ନିର୍ଭର କଲେ, ବାଧା ଛଡ଼ା ଆଉ କ'ଣ ମିଳିପାରେ ? ସେଥିପାଇଁ ଅଖଣ୍ଡ ଶାନ୍ତି ଲଭିବାକୁ ହେଲେ, ମନାତୀତ ହେବାକୁ ହେବ ।

ଏଠାରେ ପୁଣି ପ୍ରଶ୍ନ ଉଠିପାରେ, ମନାତୀତ କିପରି ? ମନ ବାହାରେ ଆଉ କ'ଣ ଥାଇପାରେ ? ତାହା କ'ଣ କେବଳ ଶୂନ୍ୟ ନୁହେଁ, ଅପରିକଳ୍ପିତ ଧ୍ୱଂସାବଶେଷ ନୁହେଁ ? ତାହା କିପରି ଶ୍ରେୟ ? ଏଠାରେହିଁ ଅସ୍ତିକତା-ନାସ୍ତିକତାର ମୌଳିକ ମତଭେଦ । ମନାତୀତ ରାଜ୍ୟ ଅଛି । ସୃଷ୍ଟିର ପ୍ରାକ୍‌କାଳରୁ ପ୍ରକୃତ ଯୋଗୀ, ଋଷି, ସିଦ୍ଧ, ସାଧକ ସେହି ରାଜ୍ୟରେ ପହଞ୍ଚିଛନ୍ତି ଏବଂ ତଦ୍ଦ୍ୱାରା ସ୍ଥାୟୀ ନିତ୍ୟ ଶାନ୍ତିସୁଖ ଲାଭ କରିଛନ୍ତି । ପୁଣି ଲୌକିକ ଜୀବନ ଉପରେ ସେହିମାନେହିଁ ଅପରିମିତ

ପ୍ରଭବ ବିସ୍ତାର କରିଛନ୍ତି ଓ କରୁଛନ୍ତି । ପୁଣି ଅନେକ-ଯେଉଁମାନେ ଶେଷ ଲକ୍ଷ୍ୟରେ ଉପନୀତ ହୋଇ ନାହାନ୍ତି ଅଥଚ ଅସୀମ ପଥରେ ପଥିକ ହୋଇଛନ୍ତି—ସେମାନଙ୍କର ଜୀବନବୃତ୍ତ ଯେଉଁ ଗୌରବ ବିକିରଣ କରୁଛି, ଅପରୋକ୍ଷ ପ୍ରମାଣ ଥାଉଁ ଥାଉଁ ତହିଁରେ କିଏସେ ସନ୍ଦେହ କରିବ ? (ପରୋକ୍ଷ ଅନୁଭୂତିରେ, ଶ୍ରବଣରେ, ଦୂର ଦର୍ଶନରେ ସଂଶୟ ଜନ୍ମିପାରେ । କିନ୍ତୁ ସମ୍ମୁଖରେ ନିର୍ମଳ ଭାବରେ ଅସନ୍ଦିଗ୍ଧ ଚିତ୍ତରେ ଅନୁଭବ କରୁଥିବା ବେଳେ ଅବିଶ୍ୱାସର ପ୍ରଶ୍ନ କାହିଁ ?)

ସଂସାର-ବାଦୀ ଏଠାରେ ପୁଣି ତର୍କିପାରେ, ଅଚ୍ଛା, ଏ ଅସାଧାରଣ ଅପ୍ରାକୃତ ଉର୍ଦ୍ଧ୍ୱଚେତନ ବିଷୟ ନେଇ ଆମେ ଏତେ ବ୍ୟତିବ୍ୟସ୍ତ ହେବାର ପ୍ରୟୋଜନ କଅଣ ? ସଂସାର ଜଞ୍ଜାଳ ତ ଆମକୁ ବଳେଇ ପଡୁଛି, ଅଜ ଅଖଣ୍ଡ 'ଶାନ୍ତି' ଅନ୍ୱେଷଣ କାହିଁକି ? ବାସ୍ତବ ଜୀବନର ଦୁଃଖକଷ୍ଟ ବୁଝାଇବା ପାଇଁ ଆମେ ଆଗେ ଲଢ଼େଇ କରିବା; ମର୍ତ୍ତ୍ୟରେ ସ୍ୱର୍ଗଲୋକର ଅବତରଣ ପାଇଁ ଅସ୍ତ୍ର ଭିଡ଼ିବା; ମର୍ତ୍ତ୍ୟରୁ ସ୍ୱର୍ଗକୁ ପଳେଇଯିବା ପାଇଁ ବ୍ୟାକୁଳ ହେବା କାହିଁକି ? କଥାଟା ଯୁକ୍ତିଯୁକ୍ତ, ବୀରତ୍ୱବ୍ୟଞ୍ଜକ ବୋଧ ହେଉଛି । କିନ୍ତୁ ଅସଲ କଥା, ଯୁଗଯୁଗ ଧରି ତାହା ପରୀକ୍ଷିତ ହୋଇଛି, ତହିଁରେ ଅଭାବ ଦେଖାଯାଇଛି । ଜଗତ ସେ ପଥ ବହୁକାଳ ଅବଲମ୍ବନ କରିଛି, କିନ୍ତୁ ଏବେ ମଧ୍ୟ ଜଗତରେ ଯେଉଁ ଘୋର ବିଶୃଙ୍ଖଳା ଦେଖା-ଯାଉଛି, ତହିଁରୁ ନିସ୍ତାର ପାଇବାର ବାଟ ଦିଶୁ ନାହିଁ । (ଯେଉଁମାନେ ଅସୀମ ପଥରେ ଗୁଲିଛନ୍ତି, ସେମାନେ 'ପଳାତକ-ବାଦୀ' ନୁହନ୍ତି । ଅନ୍ତରର ଆଦର୍ଶମୂଳକ ଆକାଂକ୍ଷା ସେମାନଙ୍କୁ ସେହି ପଥରେ ଚଳାଏ । ସେହି ଆଦର୍ଶ ଲାଗି ସେମାନେ ସର୍ବସ୍ୱ ତ୍ୟାଗ କରିବା ପାଇଁ ପ୍ରସ୍ତୁତ; ସାଂସାରିକ ଜଞ୍ଜାଳ ପ୍ରତି ସେମାନେ ସମ୍ପୂର୍ଣ୍ଣ ନିରୁଦ୍‌ବେଗ ।) ପ୍ରକୃତ କବି, ବୈଜ୍ଞାନିକ, ଆବିଷ୍କାରକ—ଯେଉଁମାନେ ମାନବର ଇତିହାସ ପୃଷ୍ଠାରେ ସଙ୍କେତ ଦେଇ ଯାଇଛନ୍ତି, ନୂଆ ନୂଆ ମାର୍ଗରେ ମାନବକୁ ଚଳାଇବା ପାଇଁ ଅନେକ

ସଙ୍ଗାତ କରିଛନ୍ତି—ସେମାନେ ଏହି କୋଟୀର ଲୋକ । କିନ୍ତୁ ସେମାନେ ମଧ୍ୟ ଅସୀମ ପଥର ପ୍ରାରମ୍ଭରେ—ଲକ୍ଷ୍ୟ ଅଦ୍ଭୁତ ବହୁ ଦୂରରେ ।

ମୁକ୍ତି ତ ଲକ୍ଷ୍ୟ । ତଥାପି ମନୁଷ୍ୟର ସ୍ୱଭାବ ଓ ପ୍ରାକୃତିକ ପରିସ୍ଥିତି ଭେଦରେ ଏ ଲକ୍ଷ୍ୟ ସାଧନର ପ୍ରକାର ଓ ମାର୍ଗ ବଦଳେ । "ମୁଁ ଚଞ୍ଚଳ ପ୍ରକୃତିର ଲୋକ । ଚଞ୍ଚଳତାକୁ ମୁଁ ଭଲ ପାଏ, ଅନ୍ୟର ସେବାରେ ନିଜକୁ ନିୟୋଜିତ କରିବାପାଇଁ ଭଲ ପାଏ । ଅନ୍ୟକୁ ସାହାଯ୍ୟ କରିବାରେ ମୋର ଆନନ୍ଦ, ଅନ୍ୟର ସ୍ୱାର୍ଥସାଧନ ଲାଗି ମୋର ସ୍ୱାର୍ଥ ବଳି ଦେବା ପାଇଁ ମୁଁ ପ୍ରସ୍ତୁତ । ସକଳ ମାନବଜାତି ମୋର ବନ୍ଧୁ । ମୋର ଦୃଷ୍ଟିରେ ବଡ ସାନ ଭେଦ ନାହିଁ । ଏହି ପଥରେ ପଥିକ ହୋଇ କ୍ରମେ ମୋର କ୍ଷୁଦ୍ର ଅହଂକାର ସେବା-ଯଜ୍ଞର ପୂତ ଅଗ୍ନିରେ ଦଗ୍ଧୀଭୂତ ହୁଏ, ମୁଁ ଜଗତ୍-ବିଜୟୀ ହୁଏ । କ୍ଷୁଦ୍ର ସ୍ୱାର୍ଥହିଁ ମଣିଷ ସଂସାରରଜ୍ଜୁରେ ବାନ୍ଧି ରଖେ, ତାହା ନ ଥିଲେ ଆଉ ଭୟ କାହିଁ ? ଏପରି ଭାବରେ ମୁଁ ଜୀବନ୍ମୁକ୍ତ ହୁଏ ।" ଏହାହିଁ ଆମର ପ୍ରାଚୀନ ଶାସ୍ତ୍ରକଥିତ କର୍ମଯୋଗ । ଦୈନିକ ଜୀବନରେ ମଧ୍ୟ ଆମେ ଦେଖୁଁ, ଜଣେ ଜଣେ ଲୋକର ଅସାଧାରଣ ତ୍ୟାଗ ଆମର ଗୌରବାସ୍ପଦ ହୁଏ । ସେ ତ୍ୟାଗ କ୍ରମେ କ୍ରମେ ବଢି ଯେତେବେଳେ ଶେଷ ସୀମାରେ ପହଞ୍ଚେ, ସେତେବେଳେ ବ୍ୟକ୍ତିତ୍ୱ-ବୁଦ୍‌ବୁଦ ଅସୀମ ସାଗରର ଅଗାଧ ଜଳରାଶିରେ ନିମଜ୍ଜିତ ହୁଏ । କର୍ମ-ଯୋଗର ଏ ବୈଶିଷ୍ଟ୍ୟ ।

ଆଉ କେତେକ ଅଛନ୍ତି, ଯେଉଁମାନଙ୍କର ସ୍ୱଭାବ ବିଚାରବନ୍ତ । ସେମାନଙ୍କର କର୍ମରେ ସେତେ ପ୍ରବୃତ୍ତି ଜନ୍ମେ ନାହିଁ, ଗମ୍ଭୀର ଚିନ୍ତାହିଁ ସେମାନଙ୍କ ଜୀବନର ଲକ୍ଷଣ । ସେମାନେ ମର୍ମେ ମର୍ମେ ଅନୁଭବ କରନ୍ତି, ଜଗତ କ୍ଷଣିକ; କିଛି ଚିର ନୁହେଁ, ସବୁ ପରିବର୍ତ୍ତନଶୀଳ । ସବୁର ଉପରେ ରାଜା—ମୃତ୍ୟୁ । ବନ୍ଧୁ, ବାନ୍ଧବ, ମିତ୍ର, କୁଟୁମ୍ବ ସମସ୍ତେ ଦିନେ ଦିନେ ଛାଡ଼ି ଯାଆନ୍ତି । ଯାହା ରହିବ ନାହିଁ ତାହା ଉପରେ ସୁଖ ପାଇଁ

କର୍ମର ବନ୍ଧନ ବା ବାଧ୍ୟକତା । ସେଥିପାଇଁ ସେପରି ଲୋକେ 'ନେତି ନେତି' ନ୍ୟାୟରେ ସବୁ ପରିହାର କରି ଶାଶ୍ୱତ, ଅବ୍ୟୟ, ଅମରତ୍ୱ ପ୍ରାପ୍ତ ହୁଅନ୍ତି—ଯାହାକୁ ଅଗ୍ନି ଦଗ୍ଧ କରି ପାରେ ନାହିଁ, ସଲିଳ ଆର୍ଦ୍ର କରିପାରେ ନାହିଁ, କାଳ ଧ୍ୱଂସ କରି ପାରେ ନାହିଁ । ଏହାହିଁ ମୁକ୍ତି । ଏହାହିଁ ଜ୍ଞାନଯୋଗର ବୈଶିଷ୍ଟ୍ୟ ।

ପୁଣି କେତେକ ଅଛନ୍ତି, ଯେଉଁମାନଙ୍କର ସ୍ୱଭାବ ଅନ୍ତର୍ଦୃଷ୍ଟି, ଆତ୍ମ-ବିଶ୍ଳେଷଣମୂଳକ, ସେମାନେ ଦେଖନ୍ତି, ମନୁଷ୍ୟ ସୁଖ ପଛରେ ଧାଏଁ, କିନ୍ତୁ ସୁଖ କେବେ ଧରା ଦିଏ ନାହିଁ । ଏହାର କାରଣ ତନ୍ନ ତନ୍ନ ଆଲୋଚନା କରି ସେମାନେ କହନ୍ତି, 'ମନର ମୂଳେ ଏ ଜଗତ', ବାହ୍ୟ ଘଟଣାର ପ୍ରାପ୍ତି ତାହିଁରେ କିଛି ସମ୍ପର୍କ ନାହିଁ । ବାହ୍ୟ ଘଟଣା ସହିତ ଆମେ ଯେଉଁ ଭାବରେ ପ୍ରତିକ୍ରିୟା କରୁ, ସେପରି ଭାବରେ ସୁଖୀ ବା ଅସୁଖୀ ହେଉ । ମନକୁ ଆୟତ୍ତ କଲେ ଜଗତ ଆୟତ୍ତ ହୁଏ, ଯେହେତୁ ଦୃଷ୍ଟ ଜଗତ ମନର ପ୍ରତିବିମ୍ବ ମାତ୍ର । ତେବେ ମନକୁ କିପରି ଆୟତ୍ତ କରାଯିବ ? ଧ୍ୟାନ ଧାରଣା ଦ୍ୱାରା ତାହା କରିହେବ । ମନ ଡିଅଁ ମାରୁଥିବା ମାଙ୍କଡ଼ ପରି; ସବୁବେଳେ ଏଣେ ତେଣେ ଧାଉଁଥାଏ । ତାକୁ ଧରିବାକୁ ଚେଷ୍ଟା କଲେ ପ୍ରଥମେ ସେ ଅଧିକ ଅମାନିଆ ହୋଇ ନାନା ଉପଦ୍ରବ ଜନ୍ମାଏ । ତଥାପି ଦୃଢ଼ ଅଭ୍ୟାସ, କଠୋର ସଂଯମ, ଗଭୀର ଧାରଣାବଳରେ ମନକୁ ଏକାଗ୍ର କରି ଯାଇପାରେ । ମନ ଏକାଗ୍ର ହେଲେ ବିଶ୍ୱର ମୌଳିକ ସତ୍ତା ଉପଲବ୍ଧ ହୁଏ, ସର୍ବଲୋକର ରହସ୍ୟ ଗଣ୍ଠି ଫିଟିଯାଏ । ଯୋଗୀ ଏପରି ଭାବରେ ଜଗତକୁ ଜିଣେ, ନିଜର ଅଧିକାରୀ ହୁଏ, ମୁକ୍ତି ପାଏ । ଏହାହିଁ ରାଜଯୋଗର ବୈଶିଷ୍ଟ୍ୟ ।

ପୁଣି କେତେକ ଅଛନ୍ତି, ଯେଉଁମାନଙ୍କର ସ୍ୱଭାବ ଭାବପ୍ରବଣ । ସେମାନେ ଦେଖନ୍ତି ଜଗତର ଅନ୍ତରାଳରେ କୌଣସି ଅଦୃଷ୍ଟ ଇଙ୍ଗିତ ଅଛି । ଘଟଣାର ପ୍ରତିଘାତରେ ମନୁଷ୍ୟ ନିଜକୁ ନିଃସହାୟ ମନେ କରେ ।

ସେ ଦେଖେ ପ୍ରତିକୂଳ ଅବସ୍ଥାରେ ତାହାର ସକଳ ସ୍ଫୂର୍ତ୍ତି, ବୁଦ୍ଧି, କୌଶଳ, ବଳ କାହିଁ ଉଭେଇ ଯାଇଛି । ସେଥିପାଇଁ ସେ ବୋଧ କରେ ବାସ୍ତବିକ ଏପରି କୌଣସି ଅଦୃଶ୍ୟ ହସ୍ତ ଅଛି—ଯାହାକି ତାହାର ଭାଗ୍ୟ ନିୟନ୍ତ୍ରଣ କରୁଛି । ସେ ନିଜ ଇଚ୍ଛା ଅନୁସାରେ କୌଣସି କାର୍ଯ୍ୟ ସାଧନ କରି ପାରେ ନାହିଁ । ଜଗତ ଇତିହାସ ପୃଷ୍ଠାରେ ସେ ପଢ଼େ, କିପରି ଜଣେ ନେପୋଲିଅନ୍‌ର ଦୁର୍ଦ୍ଧର୍ଷ ସାମରିକତା ବ୍ୟର୍ଥ ହୋଇଥିଲା, ଜଣେ କାଇଜର୍‌ର ଗର୍ବ ଖର୍ବ ହୋଇଥିଲା, ଜଣେ ହିଟ୍‌ଲର ଧୂଳିରେ ମିଶି-ଯାଇଛି, ଉଦ୍ଧତ ସାମ୍ରାଜ୍ୟବାଦର ହିଂସ୍ରକ ମୁକୁଟ ତଳକୁ ଖସି ପଡ଼ୁଛି । ବାସ୍ତବିକ ଏପରି କୌଣସି ମହାପ୍ରୟାସୀ ଶକ୍ତି ଅଛି ଯାହାର ଅଙ୍କରେହିଁ ଆମେ ବଞ୍ଚୁଛୁ, କାର୍ଯ୍ୟକ୍ଷମ ହେଉଛୁ । ସେ ଅଙ୍କକୁ ଲଙ୍ଘି ଆମେ ଏକପାଦ ମଧ୍ୟ ଅଗ୍ରସର ହୋଇ ପାରିବୁ ନାହିଁ । ସେଥିପାଇଁ ମନୁଷ୍ୟ ସ୍ୱତଃପ୍ରବୃତ୍ତ ହୋଇ ବା ନ ହୋଇ ବଳ, ସାହାଯ୍ୟ, ରକ୍ଷା ପାଇଁ ସେହି ଶକ୍ତିକୁ ପ୍ରାର୍ଥନା କରେ । କ୍ରମେ କ୍ରମେ ଏ ପ୍ରାର୍ଥନାଦ୍ୱାରା ଚିତ୍ତ ଶୁଦ୍ଧ ହୋଇ ସେ ଦେଖେ, ସେ ଯେତେଦୂର ନିଜର କ୍ଷୁଦ୍ର ବ୍ୟକ୍ତିତ୍ୱ ଭୁଲି ସେହି ଶକ୍ତି ସଙ୍ଗେ ନିଜକୁ ସଂଯୋଜିତ କରି ପାରିବ, ସେତେଦୂର ସେ ପରମ ସୁଖ ପାଇବ । ବିରାଟ କଳାକାରର ସର୍ଜନମୂଳକ କାମନାରୁ ଜଗତର ସୃଷ୍ଟି । ସେ ସର୍ଜନର ଅଭିପ୍ରାୟ-ସୀମା ଭିତରେହିଁ ଆମର ବ୍ୟକ୍ତିତ୍ୱ ସୃଜିତ ହୋଇପାରେ । ତେବେ ମନୁଷ୍ୟ କି ଚିରଦାସ ? ତାହାର କି ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ନାହିଁ ? ନା, ଏପରି ବୁଝିବା ଭୁଲ । ସ୍ରଷ୍ଟାର ଏକୀକରଣରେ ହିଁ ତାହାର ପ୍ରକୃତ ବ୍ୟକ୍ତିତ୍ୱ ଫୁଟିଉଠେ । ସ୍ରଷ୍ଟାର ପଦପଙ୍କଜରେହିଁ ତାହାର ସକଳ ଆଶା-ଭରସା ପରିପୂର୍ଣ୍ଣ ହୁଏ । ସେ ପଦ-ପଙ୍କଜରୁ ବିଚ୍ଛିନ୍ନ ହେବାର ଔଦ୍ଧତ୍ୟ ହିଁ ମନୁଷ୍ୟକୁ କଷ୍ଟ ଦିଏ । ନିର୍ଝରିଣୀ ଝରଝର ନାଦରେ ଅବିରାମ ଗତିରେ ସମୁଦ୍ରରେ ନିଜକୁ ମିଶାଇ ଦେବା ପାଇଁ ଚାହୁଁଥାଏ । ସେତେବେଳେ ତାହାର ଜଳ ସ୍ୱଚ୍ଛ, ଜୀବନ ସଚଳ । କିନ୍ତୁ ତହିଁରୁ ଅଲଗା ହୋଇ ଯେତେବେଳେ ଗୋଟିଏ ପଲ୍ୱଳ ନିଜକୁ ସର୍ବେସର୍ବା ମନେ କରେ, ସେତେବେଳେ ସେ ହୁଏ ଅଚଳ, ମୃତ,

ଦୁର୍ଗନ୍ଧ । ସେହିପରି ବଚ୍ଛିନ୍ନ ବ୍ୟକ୍ତିତ୍ୱକୁ ବସ୍ତୁ ଭୂମାର ଅପ୍ରତିହତ ବିରାଟ ଗନ୍ଧରେ ମିଶାଇ ଦେଲେ ହିଁ ଆମେ ସେହି ଭୂମାର ଉତ୍ତରାଧିକାରୀ ହେଉଁ, ବଳବନ୍ତ ହେଉଁ, ମୁକ୍ତି-ସୁଧା ଅସ୍ୱାଦନା କରୁଁ । ପୁଣି ଉପାସନା ମାର୍ଗରେ ଦେଖୁ ସେହି ଶକ୍ତି, ସେହି ଭୂମା କେବଳ ବାହାରେ ନାହିଁ, ଆମର ଅନ୍ତରରେ ତାହା ସର୍ବଦା ●ସଞ୍ଚିତ । ଏହାହିଁ ଭକ୍ତିଯୋଗର ବୈଶିଷ୍ଟ୍ୟ ।

ଅସୀମର ପ୍ରରୋଚନାରେ ସବୁ ଧର୍ମର ସୃଷ୍ଟି । ଅସୀମର ଅହ୍ୱାନ ଚିରନ୍ତନ, ମଧୁର, ସାନ୍ତ୍ୱନାଦାୟକ, ଅଭୟକାରକ । ସେ ଅହ୍ୱାନ କି ଆମେ ଶୁଣିବା ନାହିଁ ?

( ୨୯ )

# ମାଗୁଣିର ଶଗଡ଼

## (ଏବେ ମଧ୍ୟ ବଞ୍ଚିଛି)

ଶ୍ରୀ ଗୋଦାବରୀଶ ମହାପାତ୍ର

ଖଲ୍ଲିକୋଟର ଦୁଇଲକ୍ଷ ପ୍ରଜାଙ୍କ ଭିତରେ ପ୍ରତିଦିନ ଯିବା ଆସିବା ଚାଲିଛି । କେତେ ସଂସାରରୁ ଯାଉଛନ୍ତି, କେତେ ସଂସାରକୁ ଆସୁଛନ୍ତି । ଏ ଖବର ରଖୁଛନ୍ତି ଗୃହ-ପରିବାର ବା ସାଇ ପଡ଼ିଶାର ଲୋକେ । କିନ୍ତୁ ଯେଉଁଦିନ ମାଗୁଣୀ ଏ ସଂସାର ଛାଡ଼ି ଚାଲିଗଲେ, ସେଦିନ ଖବରଟା ଖଲ୍ଲିକୋଟର ପୁରପଲ୍ଲୀ ସବୁ ଆଡ଼େ ବ୍ୟାପିଗଲା । ଯେ ଶୁଣିଲା ସେ ମୁହୂର୍ତ୍ତେ ହେଲେ ନୀରବ ରହି ଦୁଃଖରେ କହିଲା—ମାଗୁଣି ଚାଲିଗଲା ? ଆହା ! ବିଚରା ଚାଲିଗଲା ! !

ମାଗୁଣି କିଏ ? ଖଲ୍ଲିକୋଟର ସେ ରାଜା ନୁହେଁ, ଏ କଥା ନିଶ୍ଚୟ । ସେ ରାଜ୍ୟର ନେତା ନୁହେଁ, ଏକଥା ସମସ୍ତେ କହିବେ । ସେ କର୍ମୀ ନୁହେଁ, ଏକଥା ସମସ୍ତେ ଜାଣନ୍ତି । ସେ କେବେ ସତ୍ୟାଗ୍ରହରେ ଯୋଗ ଦେଇ ନାହିଁ । ତା ବେକରେ କିଏ ଫୁଲମାଳ ଲମ୍ବାଇ ନାହିଁ କି ତାହାର ବାହା ଗଳାରେ ମାଳା ଲମ୍ବାଇ ଦେବା ଦରକାର ପଡ଼ିନାହିଁ । ଜନସମୁଦ୍ର ଭିତରେ କରତାଳି ଗହଳରେ ସେ ବକ୍ତୃତା ଦେଇ ନାହିଁ

ବ ଧର୍ମ—ଦେଉଳରେ ଦେବଜନ୍ମରେ ସ୍ୱର୍ଗଲାଭ ପାଇଁ ଜପତପ କରି ନାହିଁ। ସେ କେବଳ କରିଛି ଗୋଟିଏ କାମ—ମୁଣ୍ଡର ଝାଳ ଭୂଣ୍ଡରେ ମାରି-ଜୀବନପଥରେ ଲଢ଼େଇ କରିଛି। ସେ ଲଢ଼େଇ ଦେଶପାଇଁ ନୁହେଁ, ଜାତିପାଇଁ ନୁହେଁ, ତା'ର ନିଜର ପେଟଚାଖଣ୍ଡକ ପାଇଁ। ଅହା! ବିଚରା ଚାଲିଗଲା।

ଗଡ଼ରେ ପଚାରିଲେ ତ ସମସ୍ତେ କହିବେ ମାଗୁଣି କିଏ? ଦୂରଜଙ୍ଗଲ ଘଡ଼ ପଲ୍ଲୀଗାଁରେ ମଧ୍ୟ ତାର ପରିଚୟ ମିଳି ପାରିବ। ମାଗୁଣି ଖଲ୍ଲିକୋଟର କେହି ନୁହେଁ, ସେ ଜଣେ ଶଗଡ଼ିଆ—ଦୁଇଟା ବଳଦ ଓ ସେ—ଏ ତିନିପ୍ରାଣୀ ଗୋଟାଏ ସଙ୍ଘ ଗଢ଼ିଥିଲେ। ଯାହା ତ ଦୁଇଲକ୍ଷ ଲୋକଙ୍କ ମନକୁ ଛୁଇଁଗଲା।

ପ୍ରତିଦିନ ଖଲ୍ଲିକୋଟ ଗଡ଼ରେ ସୂର୍ଯ୍ୟ ଉଇଁ ଓ ସୂର୍ଯ୍ୟ ଅସ୍ତ ହୁଏ। ଘନ ଘୋର ବର୍ଷା ଦିନେ ଲୋକେ ସୂର୍ଯ୍ୟ ନ ଦେଖି ମାଗୁଣିକୁ ଦେଖି ବେଳ ଜାଣନ୍ତି। ମାଘମାସର ଜାଡ଼ରେ ପିଣ୍ଡାରେ ଘୋଡ଼ି ଘାଡ଼ି ହୋଇ ଲୋକେ ବସିଥିଲା ବେଳେ ମାଗୁଣି ନିଜ ପରିଚିତ ସାଙ୍ଗ ଦୁଇଟିକୁ ଶଗଡ଼ରେ ଯୋଚି ପାହାଡ଼ ତଳେ ଗୀତ ବୋଲି ଚାଲିଯାଏ। ଲୋକେ କହନ୍ତି, ମାଗୁଣି ସେମାନଙ୍କର ଗୋଟାଏ ଘଣ୍ଟା। ବର୍ଷ ଦିନେ ବର୍ଷା ଘୁଞ୍ଚି ଯାଇପାରେ; ଶୀତଦିନେ ଖରାତାତି ଊଣା ହୋଇ ପାରେ, କିନ୍ତୁ ମାଗୁଣିର ଶଗଡ଼ ଦିନେ ହେଲେ ବନ୍ଦ ହୁଏ ନାହିଁ। ସେ କହେ ରଜାଙ୍କର ଯୋଡ଼ା ଯୋଡ଼ା ମୋଟରକାର ଅଛି ସତ, କିନ୍ତୁ ତାପରି ଇଞ୍ଜିନିୟର ନାହାନ୍ତି। ତା ଶଗଡ଼ ରଜାଘର ମୋଟରଠୁଁ ବଳେ। ବାରବର୍ଷର ଅତିପରିଚିତ ସାଥୀ କାଳିଆ ଓ କପିଳା ବଳଦ ଉପରେ ସେ ହାତ ମାରି ଅଙ୍ଗୁଳି ଦେଲେ ତା ଗାଡ଼ିରେ ପକ୍ଷ ଦିଆ ହୁଏ। ଯେତେବେଳେ ସେ ଶଗଡ଼ ଉପରେ ବସି ପଦେ ଗୀତ ବୋଲି ଦିଏ—"ରାମ ଯେ ଲକ୍ଷ୍ମଣେ ଗଲେ ମୃଗ ମାରି" ତାର ମୋଟର ଚାଲେ। ସେତେବେଳେ ଶ୍ୟାମଳ ତରୁପଞ୍ଜ ତଳେ, ଗିରି କନ୍ଦର ଭିତରେ ପ୍ରତିଧ୍ୱନି ଉଠେ। ଅର୍ଦ୍ଧସୁପ୍ତ କୁକୁଟ

କୁମ୍ଭାଟୁଅ ତାକୁ ଉତ୍ତର ଦଅନ୍ତି; ପଲ୍ଲୀର ବୁଲା କୁକୁର ଦଳ ଚମକି ଉଠି ଗାଁରେ ଚହଳ ପକାଇ ଦଅନ୍ତି । ଘଡ଼ ଘଡ଼ ଶବ୍ଦରେ ଶଗଡ଼ ଚାଲିଯାଏ ଷ୍ଟେସନ ଅଭିମୁଖେ ।

ପନ୍ଦର ବର୍ଷର ମାଗୁଣି ବାର ବର୍ଷର ସାଥି ବଳଦଙ୍କୁ ଧରି ଯେତେବେଳେ ଭଡ଼ା ବୋହୁ ଚାଲେ ସବୁଦି ଅଶୀବର୍ଷ ତଳର କାହାଣୀ ପାଣିପରି କହିଯାଏ । ସେ କହେ ଅତୀତ ତା ନିଜକଥା । ତାର କେବେ ବାପା ମା ଥିଲେ । ସେ କେବେ ସୁଖରେ ବଢ଼ି ଖଟରେ ଶୋଉଥିଲା, ସେ କେବେ ଘରେ ବସି ଦୁଇ ଓଳି ପେଟ ପୁରାଇ ଖାଉଥିଲା; ଅଭି, ଜଣକର ମଧୁର ବଚନ ଶୁଣି ଜୀବନର ସକଳ ଦୁଃଖ ଭୁଲି ଯାଉଥିଲା । ସେ ଗଢ଼ିଥିଲା ଗୋଟାଏ ସ୍ୱପ୍ନରାଜ୍ୟ । ସେ ରାଜ୍ୟର ସେ ଥିଲା ରାଜା । ରାଣୀ କରି ଯାହାକୁ ଆଣିଥିଲା ଜୀବନଟାକୁ ସେ ହସାଇ ହସାଇ ନଚାଉଥିଲା । ତାରି ଅଧରତଳେ ସେ ଅମୃତ ପିଉଥିଲା, ତାର ଚାହାଣୀ ଭିତରେ ସେ ଜଗତ ଦେଖୁଥିଲା, ତାର ନିଶ୍ୱାସରେ ସେ ସୁବାସ ବାରୁଥିଲା ଓ ତାର ପଦତଳେ ସେ ଫୁଲ ଫୁଟିବାର ଦେଖୁଥିଲା । କିନ୍ତୁ ସେ ସ୍ୱପ୍ନ ତାର ବେଶୀ ଦିନ ରହିଲା ନାହିଁ । ସ୍ୱପ୍ନମୟୀ ହସିହସି ଚାଲିଗଲା ଏ ସଂସାରର ସେ ପାଖକୁ । ଏ ପାଖେ ଏ ଦୁଇଟି ବଳଦ ଘେନି ଗାଁରୁ ଷ୍ଟେସନକୁ ଓ ଷ୍ଟେସନରୁ ଗାଁକୁ ଦିନକେ ଦୁଇଥର ଯାଇ ତାକୁ ଥରେ ଜନ୍ମରେ ଭେଟିବାକୁ ଚେଷ୍ଟା କରୁଥିଲା ।

ଶଗଡ଼ ବୋହିଲା ବେଳେ ଏକଥା ସେ ସମସ୍ତଙ୍କୁ ଶୁଣାଇ କନ୍ଦାଇ ପକାଏ । ନିଜେ ଦୁଇ ଟୋପାଲୁହ ନିଜର ଚୀରକାନିରେ ପୋଛି ଦେଇ ବଳଦ ଉପରେ ହାତମାରି ପୁଣି କହେ ଅଭି ଗୋଟାଏ ଗଳ୍ପ । ଲୋକଙ୍କ ବାଟ ସରିଯାଏ । କିନ୍ତୁ ତାର ଗଳ୍ପ ସରେ ନାହିଁ । ସେ କହେ ତା ଶଗଡ଼ରେ ନ ବସିଛି କିଏ ? ବସି ନ ଥିଲେ ବସି ନ ଥିବେ ଖଞ୍ଜକୋଟର ରଜା । କିନ୍ତୁ, ଦେବାନ କିଏ, ମାନେଜର କିଏ, ଓକିଲ କିଏ, ମହାଜନ କିଏ, ଏପରିକି ମହାପ୍ରଭୁଙ୍କ ଭକ୍ତ ପର୍ଯ୍ୟନ୍ତ କିଏ—ସମସ୍ତେ

ବସିଛନ୍ତି ତା ଶଗଡ଼ରେ । ଏ ସବୁ କଥା କହୁଥିବା ବେଳେ ସେ ଏତେ ଉତ୍ସାହରେ କହେ ଯେ ବେଳେ ବେଳେ ବଳଦ ଦୁଇଟା ଠିଆ ହୋଇ-ଗଲେ ମଧ୍ୟ ସେମାନଙ୍କୁ ଅଡ଼ାଏ ନାହିଁ । ଜାଣି ପାରିଲେ କହେ—ଏ ପଶୁ ଗୁଡ଼ାକ ମଧ୍ୟ ଏକଥା ଶୁଣିବାକୁ କାନଡେରିଛନ୍ତି ।

ମାଗୁଣିର ଶଗଡ ବଳଦ ଖଳକୋଠର ଗୋଟାଏ ବଡ଼ ଇତିହାସ ନ ହେଲେ ମଧ୍ୟ ସେ ଇତିହାସର କେତେଟା ଦୃଷ୍ଟି । ସେ ଇତିହାସ କହେ—ଏ ଶଗଡ଼ ରାଜ୍ୟର ସମ୍ପତ୍ତିକି ଚାଲିଛି । କେତେ ବାଳ ବିଧବା ଏହାରି ଉପରେ ବସି ଶାଶୁଘରୁ ବାପ ଘରକୁ ଫେରିଛନ୍ତି, କେତେ ସୁହାସିନୀ କୁଳବଧୂ ବାପଘରୁ ଶାଶୁ ଘରକୁ ମଧ୍ୟ ଯାଇଛନ୍ତି । ଖଜଣା ଗଣ୍ଡାକ ଦେଇ ନ ପାରି ଯେଉଁ ଦିନ ମଣ୍ଡଳ ଗାଁର ଗଦା ସ୍ୱରୂପ ଜେଲ ଗଲା ସେଇ ଦିନ ତା ଘରର ଛାମୁଣୀ ମୁଣ୍ଡା ଆଦି ଏଇ ଶଗଡ଼ରେ ବୁହା ହୋଇ ଆସି ରଜାଘର କଚେରୀ ଦୁଆରେ ଜମା ହୋଇଥିଲା । ଯେଉଁଦିନ ବେହାଳିଆ ଗାଁର ମଧୁ ରଥେ ନରହତ୍ୟା ଅପରାଧରେ ଧରା ହେଲେ ସେ ଦିନ ସେ ଏଇ ଗାଡ଼ିରେ ବସି ଯାଇଥିଲେ । ଏଇ ଗାଡ଼ିରେ ବସି ଓକିଲ ଆସି ରଜାଘର ପକ୍ଷ ନେଇଛନ୍ତି । ଏଇ ଗାଡ଼ିରେ ଭଉତ ନେତାଏ ହାତକଡ଼ା ପିନ୍ଧି କଚେରୀକୁ ଯାଇଛନ୍ତି । ଏଇ ଗାଡ଼ି ସୁଖ ଦେଖିଛି, ଦୁଃଖ ଦେଖିଛି । ଲୁହ ବୋହି ଏଇ ଗାଡ଼ିର ଶୁଖିଲା ପାଲଗଦି ଓଦା ହୋଇ ଯାଇଛି, ହସଖେଳରେ ଏଇ ଗାଡ଼ି କେତେ କମ୍ପିଛି ।

ଏଇ ସବୁ କଥା କହୁ ମାଗୁଣୀ ଯେତେବେଳେ ଗାଡ ଚଳାଏ ମନେ ହୁଏ ମାଗୁଣୀ ଗୋଟାଏ ଜୀବନ ଇତିହାସ । ଏଇପରି ଦଶ ପାଞ୍ଚଟା ଇତିହାସକୁ ଏକାଠି କଲେ ଓଡ଼ିଶାରେ ଗୋଟାଏ କୋଣାର୍କ ତିଆରି ହୁଅନ୍ତା ।

ଦିନେ ମାଗୁଣି ଶୁଣିଲା ତା ଗାଡରେ ଆଉ ଲୋକେ ବସିବେ ନାହିଁ । କାରଣ ସିଂହଘର ଗୋଟାଏ ମୋଟର ବାସ୍ ଆଣିଛନ୍ତି ।

ଶୁଣିଲା ମାତ୍ରେ ସେ ହସି ହସି ଆକାଶ ଫଟେଇ ଦେଲା । କହିଲା— ମୋଟର ବାସ୍ । ତା କଣ ମୋ କାଳିଆ ବଳଦକୁ ଟପି ଯିବ ? ଭଲ କରି ଆହାର ଦେଇ ଯେତେବେଳେ ହାତ ମାରି ଦେବ ଲୋକେ କଣ ମୋ ଗାଡ଼ି ଛାଡ଼ି ସେ ଗାଡ଼ିକି ଯିବେ ? ତାର ଏକଥା ଶୁଣି ସମସ୍ତେ ହସିଲେ ସତ, ମାତ୍ର ସେ ଖାତିର କଲା ନାହିଁ । ଦୁଇ ଗୁରୁଦିନ ଗଲା; ଦେଖୁ ଦେଖୁ ରାସ୍ତାରେ ମୋଟର ବାସ୍ ଆସି ପହଞ୍ଚିଲା । ଲୋକେ କହିଲେ ଏଥର ମାଗୁଣିର ବ୍ୟବସାୟ ବୁଡ଼ିଲା । ଏକାବେଳେକେ ୨୦ ଜଣଙ୍କୁ ଧରି ଘଣ୍ଟାକେ ଯେ ୪୦ ମାଇଲ୍ ଯିବ ମାଗୁଣୀକି ତାକୁ ବଳି ଯିବ ?

କଥା ସତ । ଦୈତ୍ୟ ଦାନବ ପରି ଗଡ଼ରେ ମୋଟର ବାସ୍ଟାକୁ ଦେଖି ମାଗୁଣୀର ମନରେ ଛନକା ପଶିଗଲା । ସେ କାହିଁ ପାରିଲା ନାହିଁ ସତ; କିନ୍ତୁ କାନ୍ଦ କାନ୍ଦ ହୋଇ ଭାବିଲା, ସେ ଦିନ ଯାଉଥିଲା କୋଦଳା ସଭାକୁ । କିଏ କହୁଥିଲେ କଳ କାରଖାନାଠୁଁ ହାତ କାରଖାନା ଭଲ । ତା ହେଲେ ମୋଟର କଳଠୁଁ କଣ ମୋ ଶଗଡ଼ ଭଲ ନୁହେଁ ? ଏତେ ଲୋକ ତ ସଭାରେ ବସି ଶୁଣୁଥିଲେ, ସେମାନେ କଣ ସେ ଦୁଃଖ ବୁଝିବେ ନାହିଁ । କର୍ମୀ ନ ବୁଝିଲେ ଯିବ ନେତାଙ୍କ ପାଖକୁ, ନେତା ନ ବୁଝିଲେ ଯିବ ଗାନ୍ଧିଙ୍କ ପାଖକୁ । ଦରିଦ୍ରର ସାଥି ସେ, ଗରିବଙ୍କ ବନ୍ଧୁ ସେ, ସେ କଣ କହିବେ ମାଗୁଣୀ ମରି ଯାଉ; ଅଉ ଏ ସିଂହେ ବଞ୍ଚନ୍ତୁ ?

ଷ୍ଟେସନରୁ ଚଢ଼ିକୁ ସିଂହଙ୍କ ବସ୍ ଗଲା; ମାଗୁଣିର ଶଗଡ଼ ମଧ୍ୟ ଗଲା । କିନ୍ତୁ ବସ୍ ପୁରନ୍ତି, ଶଗଡ଼ ଖାଲି । ମାଗୁଣି ଯେତେ ଅଗରୁ ବାଟ ଅଧରୁ ଉଠି ଷ୍ଟେସନରେ ଶଗଡ଼ ହାଜର କଲେ ମଧ୍ୟ ଲୋକେ ଚଢିଲେ ବସ୍ରେ । ଯେତେ ନୂଆ ଅଖାର ଗଦି ପକାଇଲେ ମଧ୍ୟ ଲୋକେ ଧାଇଁଲେ ବସ୍ ମୁହାଁକୁ । ଯେତେ ହାତ ଧରି ଡାକିଲେ ମଧ୍ୟ ଲୋକେ ଚାହିଁଲେ ବସ୍ ଅଡ଼କୁ । ଦିନେ ଗଲା, ଦୁଇ ଦିନ ଗଲା । ସେ ଦୁଇ ଓଳି ଖାଇ କରି ଆସୁଥିଲା, ଓଳିଏ ଖାଇ ବରି ଅଇଲା । ସେ ଭାତ ଖାଇ

ଅସୁଥିଲା, ଚୋରୁଣୀ ପିଇ ଅଇଲା । ସେ ଦୁଇ ଓଳରେ ଥରେ ପିଇ ଅସୁଥିଲା, ଟମେ ତନ ଓଳରେ ଚୁଲ୍ଲ ଲଗିଲା ନାହିଁ । ବାଳଅ କପଟର ଘନ ହାଡ଼ ଦଶିଗଲା । ସେମାନଙ୍କୁ ଧରି ସେ ଯେତେବେଳେ କାନ୍ଦିଲା—କିଏ କହିଲା ପାଗଳ, କିଏ ବା କହିଲା ବାୟା ।

ତା ପରେ ଯେଉଁଦିନ ମାଗୁଣିର କୁଡ଼ିଅ ଦୁଆର ଭାଙ୍ଗି ମାଗୁଣିର ଶବ କାଢିଲେ, ଦେଖିଲେ ହଣ୍ଡା କଡସ ତଳେ ପଞ୍ଚଣ ବାଣ୍ଡ ଖଣ୍ଡିକ ଶୁଆଇ ଦେଇ ମାଗୁଣୀ ଅଖି ବୁଜି ଦେଇଛି । ମଶାଣିରେ ନିଆଁ ଜଳିଲା, ଅକାଶରେ ପକ୍ଷୀ ଉଡ଼ି ଧୂଆଁ ପାର ହେଲେ, ପୃଥିବୀରେ ଦୁଇଲକ୍ଷ ଲୋକ ସେ ଖବର ପାଇ ଦୁଃଖରେ କହିଲେ—"ଅହା, ମାଗୁଣି ଚାଲିଗଲା !"

# ସ୍ୱାଧୀନ ଚିନ୍ତା

ଶ୍ରୀ ଜଳନ୍ଧର ଦେବ

ଆର୍ଯ୍ୟ ଜାତି ଅତି ପ୍ରାଚୀନ । ଆର୍ଯ୍ୟଶାସ୍ତ୍ର ମଧ୍ୟ ଅତି ପ୍ରାଚୀନ । ଆର୍ଯ୍ୟଶାସ୍ତ୍ର ଅଗାଧ । ଏହି ଆର୍ଯ୍ୟଶାସ୍ତ୍ରର ଉପଦେଶ ଅସୀମ; ନାନାପ୍ରକାର । ଆର୍ଯ୍ୟ ସନ୍ତାନଗଣ ଏହି ଉପଦେଶମାନଙ୍କୁ ଅନୁଧାବନ କରି ସ୍ୱକୀୟ ଓ ଜାତୀୟ ଚରିତ୍ର ଗଠନ କରିବେ ବୋଲି ନାନା ଭଙ୍ଗୀରେ ଲିଖିତ । ଭାରତୀୟ ଆର୍ଯ୍ୟ ସନ୍ତାନମାନେ ଆର୍ଯ୍ୟ ଉପଦେଶ ଓ ଆର୍ଯ୍ୟସତ୍ୟ ମାନି କରି ଜଗତରେ ଅଦ୍ୱିତୀୟ ଜାତି ହୋଇ ପାରିବେ ସ୍ୱବ ପ୍ରାଚୀନ ଆର୍ଯ୍ୟଗଣ ଯେଉଁ ଅମୂଲ୍ୟ ଉପଦେଶମାନ ସାଇତି ଯାଇଥିଲେ, ବୋଧହୁଏ, ପୃଥିବୀର ଅନ୍ୟ କୌଣସି ପ୍ରାଚୀନ ଜାତି ତାହା କରି ପାରି ନ ଥିଲେ । ସାହିତ୍ୟଭଣ୍ଡାରରେ ଅମୂଲ୍ୟ ଉପଦେଶ—ରତ୍ନମାନ ତ ଅଛି । ଆର୍ଯ୍ୟ ସନ୍ତାନମାନେ ମଧ୍ୟ ଅଛନ୍ତି । ଉପଦେଶ ରଚକମାନଙ୍କର ଆଶା ପୂର୍ଣ୍ଣ ହୋଇଅଛି କି ? ଆର୍ଯ୍ୟସନ୍ତାନ ଅଦ୍ୱିତୀୟ ଜାତି ବୋଲି ବିଖ୍ୟାତ କି? ଶ୍ରେଷ୍ଠ ବା ବୀର ବୋଲି ଯେ ଜଗତ୍ ବିଖ୍ୟାତ, ଏହା କିଏ ଅସ୍ୱୀକାର କରି ପାରିବ ?

* * * *

ମନୁଷ୍ୟର ଛଅଗୋଟି ପ୍ରଧାନ ଶତ୍ରୁ । ଏମାନଙ୍କୁ ଷଡ଼ରିପୁ ବୋଲିଯାଏ । ଯଥା—କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ । ଏହି ରିପୁଗଣ

ବାହ୍ୟଶତ୍ରୁ ନୁହନ୍ତି । ଏମାନେ ଦୈହିକ ଶତ୍ରୁ । ପ୍ରାଚୀନ କାଳରେ ଋଷିମାନେ କହୁଥିଲେ, ଏହି ଦୈହିକ ଶତ୍ରୁ ହିଁ ପ୍ରଧାନ ଶତ୍ରୁ । ମନୁଷ୍ୟର ବାହ୍ୟ ଶତ୍ରୁ ନଗଣ୍ୟ । ଏବେ ମଧ୍ୟ ସାଂସାରିକ ଉପଦେଷ୍ଟାମାନେ ଏହି ଉପଦେଶ ବାକ୍ୟ ବିତରଣରେ ବଡ଼ ମୁକ୍ତହସ୍ତ ।

"ଜାୟନ୍ତାଂ ଦୁର୍ଜ୍ଜୟା ଦେହେ ରିପବୋ ଚକ୍ଷୁରାଦୟଃ ।
ଜିତେଷୁ ନନୁ ଲୋକୋଽୟଂ ତେଷୁ କୃତ୍ସ୍ନସ୍ତ୍ୱୟା ଜିତଃ ।"

ଦେହସ୍ଥ ଚକ୍ଷୁ ଆଦି ଦୁର୍ଜ୍ଜୟ ରିପୁମାନଙ୍କୁ ଜୟ କର ଏହି ଶତ୍ରୁମାନଙ୍କୁ ଜିଣି ପାରିଲେ ତୁମ୍ଭେ ସମସ୍ତ ସଂସାରକୁ ଜୟକଲ । ଗୁରୁବର୍ଗଙ୍କର ଉପଦେଶ-ଗର୍ଭିତ ଗ୍ରନ୍ଥ ମଧ୍ୟରେ ଏହା ଗୋଟିଏ ଅତି ଉପାଦେୟ ଓ ଶିକ୍ଷଣୀୟ ଶ୍ଳୋକ । ବାସ୍ତବିକ ଯେଉଁ ବ୍ୟକ୍ତି ଇନ୍ଦ୍ରିୟ ଓ ମନକୁ ଜୟ କରିଅଛି, ଜଗତରେ ତାହାର ଶତ୍ରୁ ଅଉ କିଏ ରହିପାରେ ? ସେ ସର୍ବଜେତା ।

ଷଡ଼ରିପୁ ମଧ୍ୟରୁ ଲୋଭ ରିପୁ ଅତି ପ୍ରବଳ । ଏହି ଶତ୍ରୁ ମାନବ କୁଳକୁ ଅଭିଭୂତ କରି ରଖିଅଛି, ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ଏହାର ଅସୁରୀ ମୁଷ୍ଟିରୁ ନିଷ୍କୃତି ଲାଭ କରିବା ନିମନ୍ତେ ସାଧନା ଓ ମନସ୍ୱିତାର ପ୍ରୟୋଜନ । ମାତ୍ର ଲୋକେ ଏହାର ମୁଷ୍ଟିରୁ ନିଷ୍କୃତି ଲାଭ କରିବା ଅପେକ୍ଷା ଆବଦ୍ଧ ରହିବାକୁ ବାସନା କରନ୍ତି । ଅପାତରମ୍ୟ ବିଷୟ ନିମନ୍ତେ ଶତ୍ରୁର କରକବଳିତ ହୋଇ ରହିବା ମନୁଷ୍ୟତାର ଉଦଳ୍ପବିକ ନୁହେ କି ?

ସ୍ୱାର୍ଥପର ହୋଇ ପରଧନ ଲାଭ କାମନାର ନାମ ଲୋଭ । ଲୋଭ ନାନା ପ୍ରକାରରେ ଲୋକଙ୍କୁ ଅଧୀନ କରି ରଖିଅଛି । ଲୋଭର ନାଶ ମନୁଷ୍ୟର ପରମ ପୁରୁଷାର୍ଥ । ମନୁଷ୍ୟ ଲୋଭର ନାଶ ବିଷୟରେ ଚେଷ୍ଟିତ ହେବାର ଦେଖେ ଥାଉ, ତାହାର ଦାସ ହେବାକୁ ଶ୍ଳାଘ୍ୟ ମଣେ । ଲୋଭାସକ୍ତ ବ୍ୟକ୍ତି ପକ୍ଷେ ହିତୋପଦେଶ, ଏପରିକି ଉପନିଷଦ୍ ବାକ୍ୟ "ମା ଗୃଧଃ କସ୍ୟସ୍ୱିଦ୍ଧନଂ" ମଧ୍ୟ ବିଷତୁଲ୍ୟ ତ୍ୟାଜ୍ୟ ମନେ ହୁଏ ।

ଲୋଭ ବ୍ୟକ୍ତିଗତ । ସ୍ୱାର୍ଥପର ବ୍ୟକ୍ତିବିଶେଷର କାମନା ଅନୁସାରେ ଲୋଭ ନାନା ପ୍ରକାର । ପ୍ରବଞ୍ଚନା ଲୋଭର ସହଚର । ଯେଉଁଠାରେ ଲୋଭ ସେହିଠାରେ ପ୍ରତାରଣା । ଷଡ଼ରିପୁମାନଙ୍କ ମଧ୍ୟରୁ ଲୋଭ ଯେପରି ଆତ୍ମଗୋପନ କରିପାରେ, ଅନ୍ୟ ରିପୁମାନେ ସେପରି ଆତ୍ମଗୋପନ କରିପାରନ୍ତି ନାହିଁ । ଲୋଭ ସମସ୍ତ ଅନର୍ଥର ମୂଳରେ ।

ବ୍ୟକ୍ତି ଲୋଭର ଦାସ ହେଲେ ମାନବକେ ନୈତିକ ସମ୍ପତ୍ତିରୁ ବଞ୍ଚିତ ହୁଏ । ଲୋଭୀ ସ୍ୱାର୍ଥର ପୂଜକ—ଧର୍ମରେ ଦରିଦ୍ର ।

ବ୍ୟକ୍ତିଗତ ଲୋଭ ସମୟବିଶେଷରେ ସମାଜ ଓ ଦେଶର ସମୂଦାୟ ଅନର୍ଥର ମୂଳୀଭୂତ କାରଣ ହୁଏ । ଏଥିର ଉଦାହରଣ ବିରଳ ନୁହେଁ; ଇତିହାସ ଏଥିର ସାକ୍ଷୀ । (ଲୋଭର ବିପଦ ଏହି ଯେ, ବ୍ୟକ୍ତି ବା ସମାଜ ଓ ଜାତି ଯାହା ଉପରେ ବିଶ୍ୱାସ ସ୍ଥାପନ କରେ, ନିର୍ଭର ରଖେ, ସେହି ବ୍ୟକ୍ତି ଲୋଭର ଅନୁସରଣ କରିବାକୁ ବିଶେଷ ଯତ୍ନଶୀଳ ହୁଏ ଏବଂ ଲୋଭର ପ୍ରସାଦ ପ୍ରାପ୍ତ ହେଲେ ବ୍ୟକ୍ତି, ସମାଜ, ଜାତି ବା ଦେଶର କ୍ଷତି ପ୍ରତି ଭ୍ରୂକ୍ଷେପ ମଧ୍ୟ କରେ ନାହିଁ ।)

ରାଜା ଲୋଭର ଦାସ ହେଲେ ରାଜ୍ୟର କ୍ଷତି । ସୈନ୍ୟଚାଳକ ଲୋଭଗ୍ରସ୍ତ ହେଲେ ସୈନ୍ୟମାନଙ୍କର ନୈତିକ ବଳ ଓ ସଙ୍ଗେ ସଙ୍ଗେ ଶାରୀରିକ ବଳର ଅବସାଦ ଘଟେ, ଦେଶ ପରହସ୍ତଗତ ହୁଏ । ଇତିହାସ ଏଥିର ଅଜସ୍ର ସାକ୍ଷ୍ୟ ଦେବାକୁ ପ୍ରସ୍ତୁତ । ଯେଉଁ ସମ୍ପାଦକମାନଙ୍କ ମନ୍ତବ୍ୟକୁ ଲୋକେ ଦେଶର ତଥା ସମାଜର ହିତକର ଓ ମଙ୍ଗଳଜନକ ବୋଲି ଭାବନ୍ତି, ସେ ଲୋଭଗ୍ରସ୍ତ ହେଲେ ହିତର ବିପରୀତ ଫଳ ହୁଏ । ଲୋକେ ଭ୍ରାନ୍ତ ପଥରେ ଚାଳିତ ହୁଅନ୍ତି । ହିତୈଷୀ ନେତା ଓ ବକ୍ତାମାନେ ଅନେକ ସମୟରେ ବିଶ୍ୱାସରେ ବିଷ ମିଶାନ୍ତି—କେବଳ ପ୍ରଲୋଭନରେ ପଡ଼ି ।

୯ । ଭାରତରେ କେବଳ ଅଖଣ୍ଡ ସ୍ୱରାଜ୍ୟ । ଅଳମତି ବିସ୍ତରେଣ ।

*　　*　　*　　*

ଅଖଣ୍ଡ ପ୍ରକୃତି ଉପାସନାରେ ଭେଦାଭେଦ ଜ୍ଞାନ ନାହିଁ, ବିଧି ନିଷେଧ ନାହିଁ, ଧରାବନ୍ଧା ନିୟମ ନାହିଁ । ମନୁଷ୍ୟଜାତି ଏପରି ପୂଜା ଓ ଉପାସନାପଦ୍ଧତି ରଚନା କରି ନାହିଁକି, ଯାହା ଭେଦଜନକ ? ପୁଣ୍ୟ ବନସ୍ଥଳୀ, ପୁଣ୍ୟତୋୟା ସ୍ରୋତସ୍ୱିନୀ, ନୀଳ ପାରାବାର, ନୀଳ ନକ୍ଷତ୍ର-ମଣ୍ଡଳ, ଜୀବନବର୍ଦ୍ଧକ ସୂର୍ଯ୍ୟକର, ଅଖଣ୍ଡ ପ୍ରାଣବାୟୁ, ନିତ୍ୟପୁଷ୍ଟା ବସୁନ୍ଧରାର ଶସ୍ୟକ୍ଷେତ୍ର ନିତ୍ୟ ପବିତ୍ର । ଏମାନଙ୍କୁ ସ୍ପର୍ଶ କରିବାକୁ ସମସ୍ତଙ୍କର ଅଧିକାର । ମନୁଷ୍ୟ ପୁଣି ଏପରି ଦେବତାର ସୃଷ୍ଟି କରି ନାହିଁକି, ଯାହାକୁ ଉଦ୍ଭାବନକର୍ତ୍ତା ବା ତାଙ୍କର ଜାତିଭାଇ ବନ୍ଧୁ ଭିନ୍ନ ଅପର ଜାତି ସ୍ପର୍ଶ କଲେ ଦେବବିଗ୍ରହ ଅପବିତ୍ର ହେବ ! ଏପରି ମନ୍ଦିର କରି ନାହିଁକି; ଯେଉଁଠାକୁ କେତେକ ଜାତିର ମାତ୍ର ଗତିବିଧି ଅବାଧ, ଅନ୍ୟ ଜାତି ସେଠାକୁ ଗଲେ ମନ୍ଦିର ବା ଠାକୁର ସବୁ ଅପବିତ୍ର ହେବ !

ମନୁଷ୍ୟ ଏକ । ଜାତି ଏକାଧିକ ନାହିଁ । ଏକଥା ମନେ ରଖିବା ଅପେକ୍ଷା ଜାତି ହରାଇବା ଉଚିତ ନୁହେଁ କି ?

ଜଡ଼ବାଦୀ ( Materialist ) ଏ ଶବ୍ଦର ବ୍ୟବହାର ଅନେକଙ୍କ ପକ୍ଷରେ ବଡ଼ ଜଟିଳ । ବକ୍ତାମାନେ, ସମ୍ପାଦକମାନେ ପାଶ୍ଚାତ୍ୟ ଜାତିକୁ ଜଡ଼ବାଦୀ ବୋଲି ଶତମୁଖରେ ନିନ୍ଦା କରନ୍ତି, ଗାଳି ଦିଅନ୍ତି । ଏହା ସମୀଚୀନ କି ? ଜଗତ୍ ମଧ୍ୟରେ ହିନ୍ଦୁହିଁ କେବଳ ଜଡ଼ବାଦୀ, ଏହାହିଁ ମୋର ସମ୍ପୂର୍ଣ୍ଣ ଧାରଣା । ଅବାଲ୍ୟରୁ ଯେଉଁମାନେ ଧାତୁ ପାଷାଣ, କାଷ୍ଠର ବିଗ୍ରହ ପୂଜାଦ୍ୱାରା ପୁରୁଷାର୍ଥଲାଭର ଆଶା କରନ୍ତି, ସେମାନେ ଯେବେ ଜଡ଼ବାଦୀ ନୁହନ୍ତି, ତେବେ ଜଡ଼ବାଦୀ କେଉଁମାନେ ? ଯେଉଁମାନେ ଧନ, ପୁତ୍ର, ଭୂମି ପାଇବା ଇଚ୍ଛାରେ ଏବଂ ମୋକଦ୍ଦମାରେ ଜୟ କରିବା ନିମନ୍ତେ ବନ୍ଧ୍ୟା ସିଂହଦ୍ୱାରରେ ପ୍ରତିଜ୍ଞା ଲାଭ କରିବା

ଜମଦେ୍ର ମୃତ୍ତିକା କମ୍ବା ପାଷାଣନିର୍ମିତ ଦୁର୍ଗା ବା କାଳୀ ପ୍ରତିମାଠାରେ ପଶୁପ୍ରୋକ୍ଷଣ କରନ୍ତି, ସେମାନେ ଯେବେ ଜଡ଼ବାଦୀ ନୁହନ୍ତି, ତେବେ ଜଡ଼ବାଦୀ କିଏ ? ଯେଉଁ ଜାତି ଉଦ୍ୟୋଗର ପକ୍ଷପାତୀ ନୁହେଁ, କେବଳ ଜଡ଼ ସେବାଦ୍ୱାରା ଇଷ୍ଟଲାଭର ଆଶା କରେ, ସେ ଜଡ଼ବାଦୀ ନୁହେ କି ? ନିର୍ଜୀବ ପଦାର୍ଥର ପଦାନତ ହେବାକୁ ଯେଉଁମାନେ ଅଭ୍ୟସ୍ତ ସେମାନେ ନରର ପଦାନତ ବା ପରର ପଦାନତ ହେବାକୁ ଘୃଣାବୋଧ କରିବେ କାହିଁକି ? ହିନ୍ଦୁର ମନ ଜଡ଼ରେ ମୁଗ୍ଧ, ସୁତରାଂ ମୃଗଶିଶୁ ସ୍ନେହରେ ମୁଗ୍ଧ ଜଡ଼ ଭରତପ୍ରାୟ ଏମାନଙ୍କର ଜୀବନ ଜର୍ଜରୀଭୂତ । ଏଣୁ ଅର୍ଥଲାଭ କାମନାରେ ଅଣାଦେବୀର ସମକ୍ଷରେ ମନୁଷ୍ୟଙ୍କୁ ବଳି ଦେବାକୁ ଏମାନେ ଦ୍ୱିଧା ବୋଧ କରନ୍ତି ନାହିଁ ।

ଯେଉଁମାନେ ଅଧ୍ୟବସାୟଦ୍ୱାରା ଅର୍ଥ ଉପାର୍ଜନ କରନ୍ତି, ସେମାନେ କଦାପି ଜଡ଼ବାଦୀ ନୁହନ୍ତି ।

ଜେତା ଜାତିର ଧନ, ସମ୍ପତ୍ତି, ପ୍ରଭୁତ୍ୱ ଦେଖି ଜିତ୍ ଜାତି ବିସ୍ମିତ ହୁଅନ୍ତି । ଧନ ସମ୍ପତ୍ତି ଏବଂ ପ୍ରଭୁତ୍ୱ ପ୍ରାପ୍ତ୍ୟାଶାରେ ଜିତ ଜେତାର ଅନୁକରଣ କରିବାକୁ ବାଧ୍ୟ ହୁଏ । ପରାଧୀନ ପକ୍ଷରେ ଅନୁକରଣ ଅସମ୍ଭବ । ଏଣୁ ଅସତ୍ ଉପାୟରେ ଅର୍ଥାଗମର ପଥ ଖୋଜେ । ପ୍ରଭୁତ୍ୱ ତ ମିଳିବାର କଥା ନୁହେ । ଅସଦୁପାୟରେ ଜାତିଭାଇଙ୍କର ଅର୍ଥ ଶୋଷଣ କରେ ଏବଂ ଜାତିଭାଇଙ୍କ ଉପରେ ପ୍ରଭୁତ୍ୱ ଦେଖାଏ । ଏହା ଭାରତବାସରେ ଦେଖି ପାରନ୍ତି ।

ଜଗତରେ ଯେତେ ଜାତି ଅଛନ୍ତି—କି ସଭ୍ୟ କି ଅସଭ୍ୟ—ସମସ୍ତଙ୍କ ଅପେକ୍ଷା ଭାରତବାସୀ ପ୍ରତାରଣାପ୍ରବଣ ଓ ପ୍ରତାରଣାପୀଡ଼ିତ ।

ସ୍ୱାର୍ଥପରତା ଚତୁର୍ଦ୍ଦିଗରେ । ଏହାଠାରୁ ବଳି କଲେରା ଓ ପ୍ଲେଗ ମଧ୍ୟ ଅଧିକ ସାଂଘାତିକ ନୁହେ । ଜଣେ କେହି ଅସତ୍ ଉପାୟଦ୍ୱାରା

ଧନ ଉପାର୍ଜ୍ଜନରେ ବଡ଼ ଲୋକ ହେବାର ଦେଖିଲେ ଅନ୍ୟମାନେ ସେ ସୂତ୍ରରେ ବଡ଼ଲୋକ ହେବାକୁ ଅଗ୍ରହାନ୍ୱିତ । ଉପାୟ ସହଜଲଭ୍ୟ ନୁହେଁ, ଏହାହିଁ ସେମାନଙ୍କ ପକ୍ଷରେ ଦୁଃଖର ବିଷୟ । ଏହାକୁ ଦମନ କରି ନ ପାରିଲେ ଜାତୀୟ ଓ ସାମାଜିକ ଜୀବନ ସୁଦୂରପରାହତ । ଦେଖୁଛ କିଏ, ଦେଖାଉଛ ବା କିଏ ?

ବିଶ୍ୱାସ ଏକତାର ଭିତ୍ତି । ଏ ଦେଶବାସୀଙ୍କ ମନରେ ପରସ୍ପର ପ୍ରତି ବିଶ୍ୱାସର ଅଭାବ । ହୃଦୟରେ ବିଶ୍ୱାସ ସ୍ଥାନ ପାଇବ କିପରି ? ସମସ୍ତେ କି ସ୍ୱାର୍ଥ ଅନ୍ୱେଷଣରେ ନାହାନ୍ତି ? ଏବଂ ତାହା କି ସମସ୍ତଙ୍କୁ ଅବିଦିତ ଅଛି ?

ଅନ୍ୟ କଥା ତେଣେ ଥାଉ, ମନୁଷ୍ୟ ସହିତ ମନୁଷ୍ୟର ଘନିଷ୍ଠ ସମ୍ବନ୍ଧ । ଅନ୍ୟ ଆତ୍ମା ଅପେକ୍ଷା ମନୁଷ୍ୟ ମନୁଷ୍ୟ ଆତ୍ମାକୁ ବେଶି ଚିହ୍ନି ଅଛି । ଆତ୍ମା ବୋଇଲେ ଜୀବାତ୍ମା ଏବଂ ବିଶେଷରେ ମନୁଷ୍ୟ ଆତ୍ମା । ଶାସ୍ତ୍ରର ମତ, ବଡ଼ ପଣ୍ଡିତମାନଙ୍କର ମତ ପୋଷଣ ବା ଖଣ୍ଡନ ସ୍ୱାଧୀନ ଚିନ୍ତାର ଅନ୍ତରାୟ ।

"ନାୟମାତ୍ମା ବଳହୀନେନ ଲଭ୍ୟଃ" ଏହା ଗୋଟିଏ ଉପନିଷଦ୍ ପ୍ରବଚନ । ବଳହୀନଦ୍ୱାରା ଏହି ଆତ୍ମା (ମନୁଷ୍ୟାତ୍ମା) ଲଭ୍ୟ ନୁହେଁ । ଯାହାର ହୃଦୟରେ ବଳ ନାହିଁ, ସେ ଅପରକୁ ନିଜ ଆଡ଼କୁ ଟାଣି ଆଣି ପାରିବ ନାହିଁ । ଏକ ଆତ୍ମା ସହିତ ଅପର ଆତ୍ମାର ଚୁମ୍ବକ ଓ ଲୌହ ସମ୍ବନ୍ଧ । ଚୁମ୍ବକର ଯଥେଷ୍ଟ ବଳ ଥିଲେ ଲୁହାକୁ ଆଣି ଆପଣା ଦେହରେ ଲଗାଇ ପାରେ । ଯାହାର ହୃଦୟରେ ଅସୀମ ବଳ ଅଛି, ସେ ଅପରକୁ ନିଜର ପକ୍ଷପାତୀ କରିପାରେ । ଏ ବଳ ଅସ୍ତ୍ରବଳ ନୁହେଁ, ଧନବଳ ନୁହେଁ, ଶାରୀରିକ ସାମର୍ଥ୍ୟ ନୁହେଁ । ଏ ବଳଠାରେ ଅପର ବଳମାନେ ପରାସ୍ତ । ଯାହାର ହୃଦୟବଳ ଅଛି, ସେ ସତ୍ୟାଶ୍ରୟୀ, ଦୃଢ଼ପ୍ରତିଜ୍ଞ, ଅଟଳ, ନିର୍ଭୀକ । ସେ କାହାକୁ ଭୟ କରେ ନାହିଁ । ଅତ୍ୟାଚାରୀ ଅସ୍ତ୍ର

ଶସ୍ତ୍ର ଏବଂ ଶାରୀରିକ ବଳ ସତ୍ତ୍ୱେ ତାହାକୁ ଭୟ କରେ । ଯାହାର ହୃଦୟରେ ବଳ ଅଛି, ସେ କେବଳ ବଳବାନ୍ । ସେ ବିଶ୍ୱାସର ଅଧିକାରୀ ହୁଏ । ତାହାଠାରେ ଜଗତ୍ ବିଶ୍ୱାସ ସ୍ଥାପନ କରନ୍ତି । ଯେ ବଳହୀନ ଅର୍ଥାତ୍ ଯାହାର ହୃଦୟରେ ବଳ ନାହିଁ, ସେ କୃପାର ପାତ୍ର । ଲୋକେ ତାକୁ ବିଶ୍ୱାସ କରି ନ ପାରନ୍ତି । ଲୋକଙ୍କର ଭକ୍ତି ପ୍ରେମ—ବିଶ୍ୱାସ ଲାଭ କରିବା ତ ଦୂରର କଥା । ବଳହୀନ ହୋଇ ଅସ୍ୱାଭାବ କରିବାକୁ ଯିବା ବା ନେତା ବା ଲୋକଗୁରୁ ହେବାକୁ ବାସନା କରିବା ବାମନର ଚନ୍ଦ୍ରସ୍ପର୍ଶ ବାସନା ତୁଲ୍ୟ ଅଟେ ।

ସେହି ମହାତ୍ମା ବୁଦ୍ଧଦେବଙ୍କର ଶ୍ରୀଚରଣରେ ଅମ୍ଭମାନଙ୍କର ପ୍ରଣାମ; ଯେ ଦିନେ କହିଥିଲେ, "ଉପକାରୀ ବ୍ୟକ୍ତିକୁ ଖୋସାମତ କରିବ ନାହିଁ ।" ମନୁଷ୍ୟର ପରିବର୍ତ୍ତନଶୀଳ ହୃଦୟବଳର କଥା ସେ ଜାଣିଥିଲେ । ଅଳ୍ପ ଦୃଢ଼ପ୍ରତିଜ୍ଞ ହେବା ମନୁଷ୍ୟ ମାତ୍ରର ସାଧାରଣ ଧର୍ମ ନୁହେଁ, ଏହା ମଧ୍ୟ ବିଦିତ ଥିଲେ । କ୍ୱଚିତ୍ ଜଣେ ଦୃଢ଼ଜଣ ମିଳିବା ସମ୍ଭବ । ଯଦି କେହି ପରୋପକାର ବ୍ରତ ସାଧନା କଲାବେଳେ ତାକୁ ଲୋକେ ପ୍ରଶଂସା କରି ତାର ସାଧନାରୁ ତାକୁ ସ୍ଖଳିତ କରନ୍ତି, ତେବେ ଦେଶର ଓ ସମାଜର ଅମଙ୍ଗଳ । ଏହି ଚିନ୍ତାରେ ସେ ଉପରୋକ୍ତ ବାକ୍ୟ ଶିକ୍ଷା ଦେଇଥିଲେ । ଭାରତବାସୀ ଏ ଉପଦେଶ ମାନି ଯେବେ ଅଯଥା ପ୍ରଶଂସା କରିବା ଅଭ୍ୟାସ ଏକାବେଳକେ ତ୍ୟାଗ କରିଥାନ୍ତେ, ଆଜି ଭାରତରେ ଅନେକ ବଳବାନ୍ ପରୋପକାରୀ ବ୍ୟକ୍ତିର ଆବିର୍ଭାବ ହୋଇଥାନ୍ତା । ଜଡ଼ବାଦୀ ଭାରତବାସୀ ହିନ୍ଦୁ ଆଜି ସେହି ବୁଦ୍ଧପ୍ରତୀକ ଜଗନ୍ନାଥଙ୍କୁ ପ୍ରଣାମ କରୁଅଛନ୍ତି । ମାତ୍ର ପ୍ରକୃତ ବୁଦ୍ଧ ବଚନ ରକ୍ଷା ଓ ଅନୁକରଣ କରୁ ନାହାନ୍ତି ।

# ତେଲଙ୍ଗା ମୁକୁନ୍ଦ ଦେବ

ଶ୍ରୀ ହରେକୃଷ୍ଣ ମହତାବ

ନରସିଂହ ଜେନାଙ୍କ ଦୁଷ୍କାର୍ଯ୍ୟ ପାଇଁ ତାଙ୍କୁ ଶାସ୍ତି ଦେବାକୁ ବାହାରିଲେ ମୁକୁନ୍ଦ ହରିଚନ୍ଦନ । ଏ ଜଣେ ତେଲଙ୍ଗା ଓ ଏହାଙ୍କ ଗୃହ ଭାଇ ସହ ଏ ଅଗରୁ ଓଡ଼ିଶାରେ ଆସିଥିଲେ । ମୁକୁନ୍ଦ ହରିଚନ୍ଦନ ଗୋବିନ୍ଦ ବିଦ୍ୟାଧରଙ୍କ ସମୟରେ କଟକର ଶାସନକର୍ତ୍ତା ଥିଲେ ବୋଲି ମଧ୍ୟ କଥିତ ଅଛି । ସେ ସଶସ୍ତ୍ର ସୈନ୍ୟମାନଙ୍କୁ ନାରୀବେଶରେ ବନ୍ଦ ସବାରୀମାନଙ୍କ ଭିତରେ ଦୁର୍ଗ ଭିତରକୁ ପଠାଇ ନରସିଂହ ଜେନାଙ୍କ ମାରି ଦେଲେ ଓ ନରସିଂହଙ୍କ ସାନ ଭାଇ ରଘୁରାମ ଜେନାଙ୍କୁ ସିଂହାସନରେ ବସାଇଲେ । ରଘୁରାମଙ୍କ ସଙ୍ଗେ ମୁକୁନ୍ଦ ହରିଚନ୍ଦନଙ୍କର ମଧ୍ୟ ପଟିଲା ନାହିଁ; ଦୁହିଙ୍କ ଭିତରେ ଅନ୍ତର୍ବିବାଦ ଚାଲିଲା ।

ଏହି ସମୟରେ ପୂର୍ବ ବିଦ୍ରୋହୀ ରଘୁଭଞ୍ଜ ଛୋଟରାୟ ବଙ୍ଗର ମୁସଲମାନଙ୍କ ସାହାଯ୍ୟରେ ପୁଣି ବିଦ୍ରୋହ ଆରମ୍ଭ କଲେ । ଏ ପ୍ରକାର ଅନ୍ତର୍ବିବାଦ ବର୍ଷେ ସାତ ମାସ ଚାଲିଲା । ଏହାର ସୁବିଧା ନେଇ ମୁକୁନ୍ଦ ହରିଚନ୍ଦନ ନିଜେ ବିଦ୍ରୋହ କରି ଭୋଇବଂଶର ପ୍ରଧାନମନ୍ତ୍ରୀ ଦନେଇ ବିଦ୍ୟାଧରଙ୍କୁ ବନ୍ଦୀ କଲେ ଓ ତେଣେ ରଘୁଭଞ୍ଜ ଛୋଟରାୟଙ୍କୁ ପରାସ୍ତ କରି

ତାଙ୍କୁ ମଧ୍ୟ ବନ୍ଦୀ କଲେ । ଏସବୁ କଣ୍ଟକ ଗଲା ପରେ ସେ ରଘୁରାମ ଜେନାଙ୍କୁ ହତ୍ୟା କରି ୧୫୫୯ ଖ୍ରୀ: ରେ ଓଡ଼ିଶାରେ ରାଜା ହେଲେ । ନିତାନ୍ତ ଘୃଣ୍ୟ, ବିଶ୍ୱାସଘାତକତା ଓ କପଟ ହତ୍ୟା ମଧ୍ୟରେ ସେ ନିଜର ଭାଗ୍ୟ ଖୋଜି ଖୋଜି ଓଡ଼ିଶାର ରାଜସିଂହାସନ ପାଇଲେ ମଧ୍ୟ ସେ ତାଙ୍କ ରାଜତ୍ୱକାଳରେ ଯେଉଁ ବୀରତ୍ୱ ଦେଖାଇଛନ୍ତି ଓ ଶେଷରେ ରଣଭୂମିରେ ସେ ଯେପରି ପ୍ରାଣ ଦେଇଛନ୍ତି, ସେଥିପାଇଁ ତାଙ୍କ ପ୍ରତି ଇତିହାସ ବକ୍ଷରେ ଏକ କୋମଳ ସ୍ଥାନ ରହିଅଛି । ସେ ଥିଲେ ଓଡ଼ିଶାର ଶେଷ ସ୍ୱାଧୀନ ରାଜା । ଏଥିରେ ତାଙ୍କର ସବୁ ଦୋଷ ଢାଙ୍କି ହୋଇ ଯାଉଅଛି ।

ସେନାପତି ହିସାବରେ ମୁକୁନ୍ଦଦେବ ଧୁରନ୍ଧର ଥିଲେ ଓ ତାଙ୍କର ଯୋଜନାନୁସାରେ କଟକରେ ବାରବାଟୀ ଦୁର୍ଗ ନୂତନ ପ୍ରକାରରେ ନିର୍ମିତ ହୋଇଥିଲା । ତାଙ୍କର ସମସାମୟିକ ସନ୍ଥ କବି ଅଚ୍ୟୁତାନନ୍ଦ ଦାସ ତାଙ୍କ ରଚିତ 'ଅନନ୍ତଗୋଳି'ରେ ମୁକୁନ୍ଦ ଦେବଙ୍କୁ ନିମ୍ନଲିଖିତ ଭାବେ ବର୍ଣ୍ଣନା କରିଛନ୍ତି:—

"ଗୋଳ ରାଷ୍ଟ୍ରଦେବ ନୀଳାଦ୍ରିପୁର
ଭକ୍ତ ନୃପତି ରହିବେ ସେଠାର
× × × ×
ମୁକୁନ୍ଦଦେବ ତ୍ରିପୁରାରି ମୂର୍ତ୍ତି
ଯୁଗ ପାଲିଥିବ ତାହାଙ୍କୁ ଚିହ୍ନି ।"

'ଗରୁଡ଼ ଗୀତା'ରେ ମଧ୍ୟ ଉକ୍ତ କବି ଲେଖିଛନ୍ତି:—

"ତେଲଙ୍ଗା ମୁକୁନ୍ଦ ବୋଲି ରାଜା
ଗଜପତି ଦେଶରେ ହେବ ।
ବାରବାଟୀ କିଲ୍ଲା ସେହି ତୋଳାଇବ
ଭାରତି ସେ ରଖିଯିବ ।"

ମୁକୁନ୍ଦ ଦେବଙ୍କ ନିର୍ମିତ ବାରବାଟୀ ଦୁର୍ଗର ଚିହ୍ନ ବର୍ଣ୍ଣ ସୁଦ୍ଧା ଆଜି କାଲି ନାହିଁ । କେବଳ କଟକରେ ବାରବାଟୀଠାରେ ଏକ ପୁରାତନ ଓ ମୃତ ପାଷାଣ ବସ୍ତୁତ ଖାଇ ପୋଡି ହୋଇ ପଡ଼ି ଅତୀତର ଗୌରବମୟ ଇତିହାସକୁ ପରିହାସ କରୁଛି ମାତ୍ର । ଏ ଦୁର୍ଗର ବିଶେଷ ବିବରଣ ପାଠକ ଏ ପରିଚ୍ଛେଦ ଶେଷରେ ପାଇବେ ।

ଓଡ଼ିଶାର ଅନ୍ତର୍ବିବାଦର ସୁବିଧା ନେଇ ଖ୍ରୀ: ୧୫୬୦ ରେ ବଙ୍ଗର ସୁରିବଂଶୀୟ ସୁଲତାନ ଗିୟାସୁଦ୍ଦିନ ଇଲ୍ଲାଲ ସାହା ଯାଜପୁର ପର୍ଯ୍ୟନ୍ତ ଓଡ଼ିଶା ଅଧିକାର କରି ସେଠାରେ ଏକ ଟଙ୍କାଶାଳା ବସାଇଥିଲେ । ମୟୂରଭଞ୍ଜ ଓ କେନ୍ଦୁଝରର ରାଜାମାନଙ୍କ ସାହାଯ୍ୟରେ ଏହା ଯେ ସମ୍ଭବ ହୋଇଥିଲା, ଏହା ବେଶ ଅନୁମାନ କରାଯାଇପାରେ । ମୁକୁନ୍ଦଦେବ ଆକ୍ରମକମାନଙ୍କୁ ଘଉଡ଼ାଇ ଦେଇ ପୁଣି ହୁଗୁଳି ନଦୀଠାରେ ଓଡ଼ିଶାର ଉତ୍ତର ସୀମା ଧାର୍ଯ୍ୟ କଲେ ।

ସେହି ସମୟରେ ସେ ତ୍ରିବେଣୀଘାଟ ନିର୍ମାଣ କରିଥିଲେ; ତାହା ଆଜି ସୁଦ୍ଧା ରହିଛି । ସେହି ଦିନୁଁ ତାହା ବିଶେଷତଃ ଓଡ଼ିଶାବାସୀଙ୍କ ଦ୍ୱାରା ପ୍ରୟାଗତୀର୍ଥ ସଦୃଶ ପୁଣ୍ୟକ୍ଷେତ୍ର ବୋଲି ପରିଗଣିତ ହୋଇ ଆସୁଅଛି । କଥିତ ଅଛି ଯେ, ଗଙ୍ଗାଙ୍କୁ କଟକ ଆଣିବା ପାଇଁ ମୁକୁନ୍ଦ ଦେବଙ୍କ ମାତା ଲଗାଇଥିଲେ; ତାହା ହେଲେ ସେ ନିତି ଗଙ୍ଗାସ୍ନାନର ସୁଯୋଗ ପାଇଥାନ୍ତେ । ହୁଗୁଳିଠାରୁ ଗୋଟିଏ ଧାର ଆଣି ମହାନଦୀ ସହିତ ମିଶାଇବା ପାଇଁ ମାତାଙ୍କ ଅଗ୍ରହ ରକ୍ଷା ଉଦ୍ଦେଶ୍ୟରେ ମୁକୁନ୍ଦଦେବ ଚେଷ୍ଟା କରିଥିଲେ ଓ ସେ ଦିଗରେ କିଛି କାମ ମଧ୍ୟ ଆରମ୍ଭ ହୋଇଥିଲା ବୋଲି କିମ୍ବଦନ୍ତୀ ଅଛି ।

ସେ ସମୟରେ ମୋଗଲ ପଠାଣ ଓ ପଠାଣ ପଠାଣଙ୍କ ଭିତରେ ଭାରତୀୟ ରାଜନୀତି କ୍ଷେତ୍ରରେ ଯେଉଁ ସଂଘର୍ଷ ଚାଲିଥିଲା, ସେଥିରେ ଇଚ୍ଛା କରି ହେଉ ବା ଅନିଚ୍ଛାକ୍ରମେ ହେଉ ମୁକୁନ୍ଦ ଦେବ ଲିପ୍ତ ହୋଇଗଲେ । ସେ ସମୟର ଭାରତୀୟ ରାଜନୈତିକ ଅବସ୍ଥା ଏହି—

ଅଫଗାନ ନେତା ସେରଶାହା ମୋଗଲ ବାଦଶାହା ହୁମାୟୁନଙ୍କୁ ୧୫୪୧ ଖ୍ରୀ: ରେ ଭାରତରୁ ତଡ଼ି ଦେଇ ଦିଲ୍ଲୀ ସିଂହାସନରେ ଏକାଧିପତ୍ୟ ସ୍ଥାପନ କରନ୍ତି । ତାଙ୍କର ମୃତ୍ୟୁ ଘଟେ ୧୫୪୫ ଖ୍ରୀ:ରେ । ତାଙ୍କ ପରେ ଇସଲାମ୍ ଶାହା ଦିଲ୍ଲୀର ବାଦଶାହା ହୁଅନ୍ତି । ତାଙ୍କ ସମୟରେ ବଙ୍ଗ ଓ ବିହାର ଦିଲ୍ଲୀର ଶାସନାନ୍ତର୍ଭୁକ୍ତ ହେଲା । ୧୫୫୩ ଖ୍ରୀ:ରେ ଇସ୍‌ଲାମ୍ ଶାହାଙ୍କ ମୃତ୍ୟୁ ପରେ ଅଫଗାନମାନଙ୍କ ଭିତରେ ଅନ୍ତର୍ବିବାଦ ଘଟେ । ଇସଲାମ୍ ଶାହାଙ୍କ ପୁଅକୁ ହତ୍ୟା କରି ତାଙ୍କର ପିତୃବ୍ୟ ମହମ୍ମଦ ଅଦଲଶାହା ସିଂହାସନ ଅଧିକାର କଲେ । ତାଙ୍କ ବିରୋଧରେ ଗୃହଯୁଦ୍ଧ ଅଫଗାନ ପ୍ରାଦେଶିକ ଶାସକମାନେ ବିଦ୍ରୋହ କଲେ । ଇବ୍ରାହିମ୍ ଖାଁ ସୁର ମହମ୍ମଦ ଅଦଲ ଶାହାଙ୍କୁ ତଡ଼ି ଦେଇ ନିଜେ ବାଦ୍‌ଶାହା ହୋଇଗଲେ । ବଙ୍ଗର ଶାସକ ମହମ୍ମଦ-ଖାଁ ସୁର ସ୍ୱାଧୀନତା ଘୋଷଣା କଲେ । ପଞ୍ଜାବର ଶାସକ ସିକନ୍ଦର ଶାହା ଇବ୍ରାହିମ୍ ଖାଁ ସୁରଙ୍କ ବିରୁଦ୍ଧରେ ଅଭିଯାନ କରି ତାଙ୍କୁ ୧୫୫୪ ଖ୍ରୀ: ରେ ହରାଇଥିଲେ ଓ ଇବାହିମ୍ ସିଂହାସନ ଛାଡ଼ି ପଳାଇଲେ । ଇତି ମଧ୍ୟରେ ହୁମାୟୁନ ସଙ୍ଗବଦ୍ଧ ହୋଇ ପୁଣି ଭାରତ ଅଧିକାର ପାଇଁ ଆସି ପହଞ୍ଚିଲେ । ଅଦଲ୍ ଶାହାଙ୍କ ସେନାବାହିନୀ ଇବ୍ରାହିମ ଖାଁ ସୁରଙ୍କୁ ପୁଣି ଥରେ ପରାସ୍ତ କଲେ ଓ ଯୁଦ୍ଧରେ ମହମ୍ମଦ ଖାଁ ସୁର ନିହତ ହେଲେ । ଶେଷରେ ୧୫୫୫ ଖ୍ରୀ.ରେ ଅଦଲଶାହାଙ୍କ ପକ୍ଷ ହୁମାୟୁନଙ୍କଦ୍ୱାରା ପରାସ୍ତ ହେଲେ । ହୁମାୟୁନ ଦିଲ୍ଲୀ ସିଂହାସନ ଅଧିକାର କଲେ ସତ, ମାତ୍ର ମୋଟେ ଛଅମାସ ପରେ ସେ ମରିଗଲେ । ତାଙ୍କ ପରେ ଆକବର ଦିଲ୍ଲୀର ମୋଗଲ ବାଦଶାହା ହେଲେ । ଅଫଗାନମାନଙ୍କ ପ୍ରତିରୋଧ କିଛିକାଳ ମନ୍ଥର ଗତିରେ ଗଲା ଶେଷରେ ସମ୍ପୂର୍ଣ୍ଣ ଶାନ୍ତ ହେଲା; କିନ୍ତୁ ପ୍ରାଦେଶିକ ଶାସନ ନେଇ ସେମାନଙ୍କ ନିଜ ନିଜ ମଧ୍ୟରେ ବିବାଦ ଲାଗି ରହିଲା ।

ଇବ୍ରାହିମ ଖାଁ ସୁର ଦ୍ୱିତୀୟ ଥର ପରାସ୍ତ ହୋଇ ବଙ୍ଗଦେଶକୁ ଆସି ସେଠା ମସ୍‌ନଦ ଅଡ଼କୁ ଆଖି ପକାଇଲେ । ବଙ୍ଗର ସେତେବେଳର ଅଫଗାନ ସୁଲତାନ୍ ସୁଲେମାନ କର୍‌ରାଣୀ ତାଙ୍କୁ ନିଜର ପ୍ରତିଦ୍ୱନ୍ଦୀ ଜାଣି

ତାଙ୍କୁ ବନ୍ଦୀ କରିବାକୁ ଚେଷ୍ଟା କଲେ । ଇବ୍ରାହିମ ବଙ୍ଗରୁ ପଳାଇ ଆସି ଓଡ଼ିଶାରେ ଆଶ୍ରୟ ନେଲେ । ମୁକୁନ୍ଦ ହରିଚନ୍ଦନ କେବଳ ଯେ ତାଙ୍କୁ ଆଶ୍ରୟ ଦେଲେ ତାହା ନୁହେଁ, ତାଙ୍କର ଭରଣ ପୋଷଣର ମଧ୍ୟ ବିହିତ ବ୍ୟବସ୍ଥା କରିଦେଲେ । ଏ ହେଲା ସୁଲେମାନ୍ କର୍‌ରାଣୀଙ୍କର ଅସନ୍ତୋଷର କାରଣ । ତାଙ୍କର ଅସନ୍ତୋଷର ଦ୍ୱିତୀୟ କାରଣ ହେଉଛି ଯେ, ବଙ୍ଗର ମୁସଲମାନମାନେ ରଘୁଭଞ୍ଜ ଛୋଟରାୟଙ୍କୁ ସାହାଯ୍ୟ କରି ମୁକୁନ୍ଦ ହରିଚନ୍ଦନଙ୍କ ଦ୍ୱାରା ସ୍ଥାନୀୟରରେ ପରାସ୍ତ ହୋଇଥିଲେ । ତୃତୀୟ କାରଣ ହେଉଛି, ମୁକୁନ୍ଦ ଦେବଙ୍କ ଅକବରଙ୍କ ସହିତ ମିତ୍ରତା ସ୍ଥାପନ ।

ଅକବର ସେତେବେଳେ ରାଜନୈତିକ ଚାଲରେ ମୁକୁନ୍ଦ ହରି-ଚନ୍ଦନଙ୍କୁ ଗୋଟିଏ ରୂପେ ଚଳାଇବା ପାଇଁ ତାଙ୍କ ସହିତ ମିତ୍ରତା ସ୍ଥାପନ କଲେ । ଅବଶ୍ୟ ବଙ୍ଗବିଜୟର କଳ୍ପନା ଅକବରଙ୍କ ମନରେ ଖେଳୁଥିଲା ।

ମାତ୍ର ଓଡ଼ିଶା ରାଜାଙ୍କ ସହିତ ମିତ୍ରତା ସ୍ଥାପନ କରିବାର ପ୍ରତ୍ୟକ୍ଷ କାରଣ ହେଉଛି, ମୋଗଲମାନଙ୍କ ଭିତରେ ଗୃହବିବାଦ । ଅକବରଙ୍କ ରାଜତ୍ୱର ପ୍ରଥମାବସ୍ଥାରେ ହୁମାୟୁନଙ୍କର ଜଣେ ବିଶ୍ୱସ୍ତ କର୍ମଚାରୀଙ୍କ ପୁତ୍ର ଅଲକୁଲି ଖାଁ ବାରମ୍ବାର ଅକବରଙ୍କ ବିରୋଧରେ ବିଫଳ ବିଦ୍ରୋହ କରି ଶେଷରେ ବଙ୍ଗ ସୁଲେମାନ କର୍‌ରାଣୀଙ୍କ ସାହାଯ୍ୟ ନେବାପାଇଁ ଆସିଲେ । ସୁଲେମାନ୍‌କର୍‌ରାଣୀଙ୍କ ସଯୋଗ ଯେପରି ନ ଘଟେ, ସେଥିପାଇଁ ଅକବର ମୁକୁନ୍ଦଦେବଙ୍କ ସାହାଯ୍ୟ ଲୋଡ଼ିଥିଲେ ।

ଅକବର ହସାନ୍‌ଖାଁ ଖାଜାଞ୍ଚିକୁ ଦୂତରୂପେ ଓଡ଼ିଶାକୁ ପଠାଇଥିଲେ । ଏହାଙ୍କ ସାଙ୍ଗରେ ମହାପାତ୍ର ବୋଲି ଜଣେ ଓଡ଼ିଆ ମଧ୍ୟ ଆସିଥିଲେ । ମହାପାତ୍ର ସେତେବେଳେ ମୋଗଲ ଦରବାରର ଜଣେ ବରିଷ୍ଠ ବ୍ୟକ୍ତି ଥିଲେ । ସଙ୍ଗୀତ ବିଦ୍ୟା ଓ ହିନ୍ଦୀ ଭାଷାରେ କବିତା ଲେଖିବାରେ

ତାଙ୍କର ତୁଳନା ନ ଥିଲା ବୋଲି 'ଅକବର ନାମରେ'ରେ ବର୍ଣ୍ଣିତ ଅଛି । ଅକବର ଏହି ବାର୍ତ୍ତା ପଠାଇଥିଲେ ଯେ, ଯଦି ସୁଲେମାନ କର୍‌ରାଣୀ ଅଲ୍‌ଲୁଲ୍ ଖାଁଙ୍କୁ ସାହାଯ୍ୟ ଦିଅନ୍ତି, ତେବେ ମୁକୁନ୍ଦଦେବ ବଙ୍ଗ ଆକ୍ରମଣ କରନ୍ତୁ । ଦୂତମାନେ ଓଡ଼ିଶାରେ ଚାରିମାସ କାଳ ରହିଲେ । ତା ପରେ ପ୍ରଚୁର ବହୁମୂଲ୍ୟ ଉପହାର ଓ କେତେ ଘର ହାତୀ ଦେଇ ମୁକୁନ୍ଦ ହରିଚନ୍ଦନ ସେମାନଙ୍କୁ ବିଦା କଲେ । ସାଙ୍ଗେ ସାଙ୍ଗେ ସେ ନିଜ ଦୂତ ପରମାନନ୍ଦ ରାୟଙ୍କୁ ଅକବରଙ୍କ ଦରବାରକୁ ପଠାଇଲେ । ଖ୍ରୀଷ୍ଟୀୟ ୧୫୬୭ ସାଲରେ ମୁକୁନ୍ଦଦେବ ସୁଲେମାନ କର୍‌ରାଣୀଙ୍କ ଓଡ଼ିଶା ଆକ୍ରମଣ ଆଶଙ୍କା କରି ସୈନ୍ୟ ସହ ଅଗ୍ରେ ଯାଇ ଯେତେବେଳେ ଉତ୍ତର ସୀମାନ୍ତ ହୁଗୁଳି ନଦୀ ତୀରରେ ଅବସ୍ଥାନ କରୁଥିଲେ, ସେହି ସମୟରେ ଅକବରଙ୍କ ଦୂତମାନଙ୍କ ସହିତ କଥା କର୍ତ୍ତା ଓ ମୋଗଲ ଦରବାରକୁ ଦୂତ ପ୍ରେରଣ ଇତ୍ୟାଦି କାର୍ଯ୍ୟ ହୋଇଥିଲା ।

ଅକବର ମୁକୁନ୍ଦ ଦେବଙ୍କ ସହିତ ମିତ୍ରତା ସ୍ଥାପନ କରିବା ଫଳରେ ଅଲ୍ କୁଲ୍‌ଖାଁଙ୍କ ସହିତ ସୁଲେମାନ କର୍‌ରାଣୀଙ୍କ ସଂଯୋଗ ହୋଇ ପାରିଲା ନାହିଁ । ଅକବର ନିଶ୍ଚିନ୍ତ ହୋଇ ଚିତୋର ବିଜୟରେ ମାତିଲେ; ମାତ୍ର ଏଣେ ସୁଲେମାନଙ୍କ ସହିତ ମୁକୁନ୍ଦ ଦେବଙ୍କ ଶତ୍ରୁତା ବଢ଼ିଲା । ନିଜର ବିପଦ ବେଳେ ମୁକୁନ୍ଦଦେବ ଅକବରଙ୍କଠାରୁ କୌଣସି ସାହାଯ୍ୟ ପାଇଲେ ନାହିଁ । ଯେତେବେଳେ ସୁଲେମାନଙ୍କ ଦ୍ୱାରା ଓଡ଼ିଶା ଆକ୍ରମଣ କରାହୁଏ, ସେତେବେଳେ ଖାଣ-ଇ-ଖାନାନ୍ ମୁନିମଖାଁ ବିହାରର ଜାଗିରଦାର ହିସାବରେ ଅକବରଙ୍କ ପ୍ରତିନିଧି ଥିଲେ । ମାତ୍ର ସେ ମୁକୁନ୍ଦ ଦେବଙ୍କୁ କୌଣସି ପ୍ରକାରେ ସାହାଯ୍ୟ କଲେ ନାହିଁ । ଅଗତ୍ୟା ତାଙ୍କୁ ଏକାକୀ ଶତ୍ରୁର ସମ୍ମୁଖୀନ ହୋଇ ନିଜର ବଶ୍ୟର ଦୋଷ ପାଇଁ ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିଲା ।

ଖ୍ରୀ: ୧୫୬୭ ସାଲ ଶେଷରେ ଅକବର ଚିତୋର ଅଧିକାରରେ ବ୍ୟସ୍ତ ଥିବା ସମୟରେ ଅବସ୍ଥାର ସୁବିଧା ନେଇ ସୁଲେମାନ କର୍‌ରାଣୀ

ଓଡ଼ିଶା ଆକ୍ରମଣର ଯୋଜନା କଲେ । ସେ ଯୋଜନାନୁସାରେ ଦୁଇ ଦଗରୁ ଓଡ଼ିଶାକୁ ସେନା ପଠା ହୋଇଥିଲେ । ଗୋଟିଏ ବାହିନୀ ସିଧା ଦକ୍ଷିଣମୁହାଁ ହୋଇ ସୁଲେମାନଙ୍କ ନେତୃତ୍ୱରେ ଓଡ଼ିଶା ଆସିଲା; ଅନ୍ୟଟି ମୟୂର ଭଞ୍ଜ ଓ କେଉଁଝର ବାଟେ ସୁଲେମାନଙ୍କ ପୁତ୍ର ବାୟଜିଦ୍‌ଙ୍କ ନେତୃତ୍ୱରେ ଆସିଲା । ଯେଉଁ ବାହିନୀ ସିଧା ଦକ୍ଷିଣମୁହାଁ ଆସୁଥିଲା; ତାର ଗତି-ପଥରେ ମୁକୁନ୍ଦ ଦେବ 'କୋଟ ସୀମା' ( ବଙ୍ଗ ଦେଶର ହୁଗୁଳି ଜିଲ୍ଲାର ଦାମୋଦର ନଦୀତୀରସ୍ଥ କୋଟସିମୁଲ ) ଦୁର୍ଗରେ ଆଶ୍ରୟ ନେଲେ । ସେତେବେଳେ ମୁକୁନ୍ଦଦେବ ଇନ୍ଦ୍ରିୟାସକ୍ତ ହୋଇ ପଡ଼ିଥିଲେ ବୋଲି ମାଦଳା ପାଞ୍ଜି ଓ 'ଅକବରୀ ନାମା' ଉଭୟରୁ ମିଳେ । ସେ ନିଜେ ଦୁର୍ଗରେ ରହି ଦୁର୍ଗାଭଞ୍ଜ ଓ ଛୋଟରାୟଙ୍କୁ ଶତ୍ରୁ ସହିତ ଲଢ଼ିବାପାଇଁ ପଠାଇଥିଲେ । ଏ ଦୁହେଁ ଶତ୍ରୁର ଉତ୍କୋଚଦ୍ୱାରା ବଶ ହୋଇ ନିଜ ଅଧିପତି ମୁକୁନ୍ଦ ଦେବଙ୍କ ବିରୋଧରେ ଛିଡ଼ା ହେଲେ । ସେହି ଅନ୍ତର୍ବିଦ୍ରୋହ ଦମନ କରିବା ପାଇଁ ମୁକୁନ୍ଦଦେବ ଅନନ୍ୟୋପାୟ ହୋଇ ମୁସଲମାନମାନଙ୍କ ସହିତ ସନ୍ଧି କରି ଦୁର୍ଗାଭଞ୍ଜ ଓ ଛୋଟରାୟଙ୍କ ସହ ଲଢ଼ିଲେ । ଏହି ଯୁଦ୍ଧରେ ଛୋଟରାୟ ଓ ମୁକୁନ୍ଦଦେବ ନିହତ ହେଲେ ବୋଲି 'ଅକବରୀନାମା'ରୁ ଜଣାଯାଏ । ସେହି ସୂତ୍ରରୁ ଅଧିକ ମଧ୍ୟ ଜଣାଯାଏ ଯେ, ମୁକୁନ୍ଦଦେବ ଓ ଛୋଟରାୟଙ୍କ ମୃତ୍ୟୁ ପରେ ଦୁର୍ଗାଭଞ୍ଜ ରାଜା ହେବା ପାଇଁ ବସିଥିଲେ । ସୁଲେମାନ କୌଶଳରେ ଦୁର୍ଗାଭଞ୍ଜଙ୍କୁ ବନ୍ଦୀ କରି ହତ୍ୟା କଲେ ଓ ଶେଷରେ ଓଡ଼ିଶାର ଅଧିପତି ହେଲେ । ମାଦଳା ପାଞ୍ଜିରୁ ଜଣାଯାଏ ଯେ, ବାୟଜିଦ୍‌ଙ୍କ ନେତୃତ୍ୱରେ ଯେଉଁ ସୈନ୍ୟବାହିନୀ ମୟୂରଭଞ୍ଜ ବାଟେ ଆସୁଥିଲେ, ସେ ବାଂଶବଂଶ ନଦୀର ଉପର ମୁହଁରେ ପଡ଼ିଥିବା ଧଳଭୂମି ବାଟେ ମୟୂରଭଞ୍ଜର ପଶ୍ଚିମପଟ ଦେଇ ଅକସ୍ମାତ୍ କଟକ ଆକ୍ରମଣ କଲେ । ସେତେବେଳେ ମୁକୁନ୍ଦଦେବ ଅବରୁଦ୍ଧ ହୋଇ କୋଟସିମା ବା କୋଟସିମୂଲ ଦୁର୍ଗରେ ଥାଆନ୍ତି । ଏଣେ ଶତ୍ରୁସେନାଙ୍କ ଆକ୍ରମଣ ଫଳରେ କଟକ ଦୁର୍ଗର ସେନାପତି କୋନ ସାମନ୍ତସିଂହାର ନିହତ

ହେଲେ ଓ ରାଜପ୍ରାସାଦ ଲୁଣ୍ଠିତ ହେଲା । ଏ ବିଶୃଙ୍ଖଳରେ ସୁବିଧା ନେଇ ସାରଙ୍ଗଗଡ଼ର ଅଧ୍ୟକ୍ଷ ରାମଚନ୍ଦ୍ର ଭଞ୍ଜ ନିଜକୁ ରାଜା ବୋଲି ଘୋଷଣା କରିଦେଲେ । ଭଞ୍ଜରାଜଙ୍କ ଏଭଳି ଅପ୍ରତ୍ୟାଶିତ ବିଶ୍ୱାସଘାତକତାରେ ବିବ୍ରତ ହୋଇ ମୁକୁନ୍ଦଦେବ କୋଟସିମାଠାରେ ସୁଲେମାନଙ୍କର ରାଣୀଙ୍କ ସହିତ ସନ୍ଧି କରି କଟକ ଅାସିଲେ ।

ରାମଚନ୍ଦ୍ର ଭଞ୍ଜ ଓ ମୁକୁନ୍ଦ ହରିଚନ୍ଦନଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହେଲା । ଏହି ଯୁଦ୍ଧରେ ମୁକୁନ୍ଦଦେବ ନିହତ ହେଲେ, କୋଟସିମାଠାରେ ସୁଲେମାନଙ୍କ ସହିତ ମୁକୁନ୍ଦଦେବଙ୍କ ଯେଉଁ ସନ୍ଧି ହୋଇଥିଲା, ତଦନୁସାରେ ସୁଲେମାନଙ୍କ ପୁତ୍ର ବାଇଜିଦ୍ ମୁକୁନ୍ଦଦେବଙ୍କୁ ସାହାଯ୍ୟ-କରି ରାମଚନ୍ଦ୍ର ଭଞ୍ଜଙ୍କ ସହିତ ଯୁଦ୍ଧ କଲେ ଓ ସେଥିରେ ରାମଚନ୍ଦ୍ରଭଞ୍ଜ ନିହତ ହେଲେ । ମୁକୁନ୍ଦ ଦେବ ଓ ରାମଚନ୍ଦ୍ରଭଞ୍ଜ ଏକାଦନେ ନିହତ ହେଲେ ବୋଲି ବର୍ଣ୍ଣିତ ଅଛି । ଇତିହାସ ପକ୍ଷରେ ପରିତାପର ବିଷୟ ଏହି ଯେ, ମୁକୁନ୍ଦ ଦେବ ବହିଃଶତ୍ରୁଦ୍ୱାରା ନିହତ ନ ହୋଇ ଘର ଶତ୍ରୁ ହାତରେ ପ୍ରାଣ ହରାଇଲେ । ବାଲେଶ୍ୱରଜିଲ୍ଲା ଧାମନଗର ଥାନାର ଗୋହିରି ତିକିରିରେ ରାଜପ୍ରାସାଦରେ ହରିଚନ୍ଦନ ନିହତ ହୋଇଥିଲେ ବୋଲି ଜନଶ୍ରୁତି ଅଛି । ରଘୁଭଞ୍ଜ ଛୋଟରାୟ ଯେ ବନ୍ଦୀଶାଳାରେ ଥିଲେ, ସେ ମୁକ୍ତ ହୋଇ ରାଜା ହେବାପାଇଁ ବସିଲେ । ମାତ୍ର ସେ ଅବସ୍ଥାରେ ରାଜ୍ୟ କି ସହଜରେ ମିଳେ ? ବାଇଜିଦ୍‌ଙ୍କ ସାଙ୍ଗରେ ଥିବା କଳାପାହାଡ଼ ରଘୁଭଞ୍ଜ ଛୋଟରାୟଙ୍କୁ ହତ୍ୟା କଲେ । ଏହିରୂପେ ଓଡ଼ିଶା ୧୫୬୮ ଖ୍ରୀ: ରେ ଅଫଗାନମାନଙ୍କଦ୍ୱାରା ଅଧିକୃତ ହେଲା । କଳା ପାହାଡ଼ଙ୍କର ଅନ୍ୟ ନାମ କାଳିଦାସ ଗଜଦାନ । ସେ ବ୍ରାହ୍ମଣ-ଥିଲେ, ମାତ୍ର ଏକ ମୁସଲମାନ ଯୁବତୀର ପ୍ରେମରେ ପଡ଼ି ସମାଜଚ୍ୟୁତ ହୋଇଥିଲେ । ପରେ ସେ ହିନ୍ଦୁସମାଜର ଅନ୍ତର୍ଭୁକ୍ତ ହେବାପାଇଁ ଚେଷ୍ଟା-କରିଥିଲେ । କଥିତ ଅଛି ଯେ, ହିନ୍ଦୁଜଗତରେ ଜଗନ୍ନାଥ ମନ୍ଦିରର ଅଧ୍ୟକ୍ଷ ହିସାବରେ ଓଡ଼ିଶା ରାଜାଙ୍କର ସବୁଠାରୁ ବେଶୀ ପ୍ରତିପତ୍ତି ଅଛି ବୋଲି

ମନେ କରି କାଳିଦାସ ପୁନର୍ବାର ହିନ୍ଦୁସମାଜ ଅନ୍ତର୍ଭୁକ୍ତ ହେବାପାଇଁ ମୁକୁନ୍ଦ ଦେବଙ୍କ ସାହାଯ୍ୟ ଲୋଡ଼ି ପ୍ରତ୍ୟାଖ୍ୟାତ ହୋଇଥିଲେ । ସମାଜର କଠୋର ନିୟମ ଫଳରେ ସେ ସବୁଅଡ଼େ ଚେଷ୍ଟା କରି ବିଫଳ-ମନୋରଥ ହୋଇ ହିନ୍ଦୁମାନଙ୍କ ବିରୋଧରେ ପ୍ରତିହିଂସା ସାଧନ କରିବା ପାଇଁ ବ୍ରତବ୍ରତୀ ଗ୍ରହଣ କରିଥିଲେ । ସେ ପ୍ରତିହିଂସା ସେ ଓଡ଼ିଶା ବିଜୟ ବେଳେ ଚରିତାର୍ଥ କରିଥିଲେ । ଯୁଦ୍ଧରେ ଜୟଲାଭ କରି କଳାପାହାଡ଼ ଭୁବନେଶ୍ୱରରେ କେତେକ ମନ୍ଦିର ଭାଙ୍ଗି ପୁରୀରେ ଯାଇ ପହଞ୍ଚିଲେ । ତାଙ୍କର ପୁରୀ ଯିବାର ଖବର ପାଇ ଜଗନ୍ନାଥ ମନ୍ଦିରର ପରୀକ୍ଷା ଦିବ୍ୟସିଂହ ପଟ୍ଟନାୟକ ଦେବମୂର୍ତ୍ତିମାନଙ୍କୁ ଚିଲିକା ଭିତରେ ପାରିକୁଦରେ ଲୁଚାଇ ରଖିଲେ । ଏ ସମ୍ବାଦ ପାଇ କଳାପାହାଡ଼ ପାରିକୁଦ ଯାଇଁ ମୂର୍ତ୍ତିମାନଙ୍କୁ ଆଣିଥିଲେ । ପୁରୀ ମନ୍ଦିରର ବାବନକୋଠି ଭଣ୍ଡାର ଲୁଣ୍ଠନ କରି ମନ୍ଦିରକୁ 'ଆମଳକ' ପଥର ପର୍ଯ୍ୟନ୍ତ ଭାଙ୍ଗି ଦେଇଥିଲେ । କଳ୍ପବଟ ବୃକ୍ଷକୁ ଉପାଡ଼ି ପୋଡ଼ି ଭସ୍ମ କରି ଦେଇଥିଲେ । ଜଗନ୍ନାଥ ମୂର୍ତ୍ତିକୁ ସାଙ୍ଗରେ ବଙ୍ଗ ଦେଶକୁ ନେଇ ଯାଇ ସେଇଠି ପୋଡ଼ାଇଥିଲେ । କଳାପାହାଡ଼ଙ୍କ ପୁଅ ଅର୍ଦ୍ଧଦଗ୍ଧ ମୂର୍ତ୍ତିକୁ ଗଙ୍ଗା ଭିତରକୁ ଫୋପାଡ଼ି ଦେଇଥିଲେ ବୋଲି ମାଦଳା ପାଞ୍ଜିରେ ଅଛି । ବିଶାର ମହାନ୍ତି ବୋଲି ଜଣେ ଭକ୍ତ ଲୁଚିକରି ଜଗନ୍ନାଥଙ୍କ ସାଙ୍ଗରେ ଥିଲେ । ମୂର୍ତ୍ତି ପୋଡ଼ା ହେଲା ବେଳେ ତାଙ୍କ ନାଭିସ୍ଥଳ ସେ କୌଣସି ପ୍ରକାରେ ନେଇ ଆସିଥିଲେ ବୋଲି ଜନଶ୍ରୁତି ଅଛି । ଅବୁଲ ଫଜଲ ମଧ୍ୟ 'ଅକବରନାମା'ରେ କଳାପାହାଡ଼ ଜଗନ୍ନାଥ ମନ୍ଦିର ଉପରେ ହସ୍ତକ୍ଷେପ ଓ ଜଗନ୍ନାଥ ମୂର୍ତ୍ତିଙ୍କ ଅବମାନନା ବିଷୟ ବର୍ଣ୍ଣନା କରି ଅଛନ୍ତି ।

କଳାପାହାଡ଼ କୋଣାର୍କ ମନ୍ଦିର ଭାଙ୍ଗି ଦେଇଥିଲେ ବୋଲି କେତେକ ଅନୁମାନ କରନ୍ତି; ମାତ୍ର ତାହା ଭ୍ରମାତ୍ମକ ବୋଲି ମନେ ହୁଏ । ଯେତେଦୂର ଜଣାଯାଏ, ଭୁବନେଶ୍ୱର, ପୁରୀ ଓ କୋଣାର୍କରେ ବାହାରର କେତେକ ମୂର୍ତ୍ତି ଓ ଛୋଟ ଛୋଟ ମନ୍ଦିର କଳାପାହାଡ଼ଙ୍କଦ୍ୱାରା କ୍ଷତ

ହୋଇ ପାରିଥିଲା । ମନ୍ଦର ସବୁ କଳର ବିଶାଳତା ଯୋଗେ ଧ୍ୱଂସରୁ ରକ୍ଷା ପାଇ ଯାଇଥିଲେ । ଯାହାହେଉ ମନ୍ଦର ତୋଳାଇ ରାଜାମାନେ ଯେପରି ନାମ ରଖି ଯାଇଛନ୍ତି, ମନ୍ଦର ଭଙ୍ଗି କଳାପାହାଡ ସେହିପରି ନାମ ରଖିଯାଇଛନ୍ତି । କଳାପାହାଡ଼ ସେତେବେଳେ ଯେ ଗାଢ ସନ୍ତ୍ରାସ କରିଥିଲେ; ତାହା ଅନ୍ତଃସ୍ଥଳ ଲୋକମୁଖରେ କମ୍ପ ଜଣିତ ଗାଉଁଲି କବିତାରେ ପ୍ରକାଶ ପାଏ:—

"ଅଇଲା କଳାପାହାଡ଼
"ଭଙ୍ଗିଲା ଲହୁଡ଼ାର ବାଡ଼
"ପିଇଲା ମହାନଦୀ ପାଣି
"ସୁବର୍ଣ୍ଣ ଥାଳୀରେ ହେଡ଼ା ( ବା ଘାସ )—
ପଡ଼ିଲେ ମୁକୁନ୍ଦଦେବଙ୍କ ରାଣୀ ।।"

ମୁକୁନ୍ଦ ଦେବ ଓଡ଼ିଶାର ଶେଷ ସ୍ୱାଧୀନ ରାଜା । ସେ ଉତ୍ତରରେ ଯେପରି ମୁସଲମାନ ଆକ୍ରମଣର ପ୍ରତିରୋଧ କରିଥିଲେ, ଦକ୍ଷିଣରେ ମଧ୍ୟ ସେହିପରି ଓଡ଼ିଶା ରାଜ୍ୟ ଅକ୍ଷୁଣ୍ଣ ରଖିଥିଲେ । ପୂର୍ବ ଗୋଦାବରୀ ଜିଲ୍ଲାର ରାମଚନ୍ଦ୍ରପୁରମ୍ ତାଲୁକାରେ ଦ୍ରାକ୍ଷାରମ୍ ନାମକ ଗ୍ରାମରେ ଭୀମେଶ୍ୱର ସଂଲଗ୍ନ ଖ୍ରୀ: ୧୫୬୮ ସାଲରେ ଖୋଦିତ ଏକ ଶିଳାଲିପିରୁ ଜଣାଯାଏ ଯେ ସେତେବେଳେ ସୁଦ୍ଧା ସେ ଅଞ୍ଚଳ ମୁକୁନ୍ଦଦେବଙ୍କ ଅଧୀନରେଥିଲା । ତାହାହେଲେ ପ୍ରତାପରୁଦ୍ରଙ୍କ ସମୟରେ ଓଡ଼ିଶାର ବିସ୍ତୃତ ଯେତିକି ଥିଲା, ମୁକୁନ୍ଦଦେବଙ୍କ ସମୟରେ ମଧ୍ୟ ପ୍ରାୟ ସେତିକି ଥିଲା । ଏଥିରୁ ଜଣାଯାଏ ଯେ, ଗୋବିନ୍ଦ ବିଦ୍ୟାଧରଙ୍କ ସମୟରେ ଗୋଲକୁଣ୍ଡାର ସୁଲତାନ ଓଡ଼ିଶା ବିରୁଦ୍ଧରେ ଯେଉଁ ଅଭିଯାନ ଚଳାଇଥିଲେ, ତାର ଗୁରୁତ୍ୱ ସେପରି କିଛି ନଥିଲା ବା ଏହା ମଧ୍ୟ ହୋଇ ପାରେ ଯେ, ସେତେବେଳେ ଯେଉଁ ସବୁ ଅଞ୍ଚଳ ସୁଲତାନଙ୍କ ଦ୍ୱାରା ଅଧିକୃତ ହୋଇଥିଲା, ସେ ସବୁ ପୁଣି ମୁକୁନ୍ଦ ଦେବ ଫେରାଇ ଆଣିଥିଲେ ।

ସେନାପତି ହୁସାଦଙ୍କରେ ମୁକୁନ୍ଦଦେବ ନିହତ । ତାଙ୍କର ଇନ୍ଦ୍ରିୟାସକ୍ତି, ତଥା ତାଙ୍କ ବିରୋଧରେ ଭଞ୍ଜ ରାଜାମାନଙ୍କର ବିଦ୍ରୋହ ଓ ବିଶ୍ୱାସଘାତକତା ତାଙ୍କର ସର୍ବନାଶ ଘଟାଇବା ସଙ୍ଗେ ସଙ୍ଗେ ଓଡ଼ିଶାକୁ ମଧ୍ୟ କିଛି କାଳ ପାଇଁ ଅରାଜକତା ଓ ଅତ୍ୟାଚାରର ଘୂର୍ଣ୍ଣି ମଧ୍ୟକୁ ଠେଲି ଦେଲା ।

ମୁକୁନ୍ଦଦେବଙ୍କ ସମ୍ବନ୍ଧରେ ତିବ୍ବତର ବୌଦ୍ଧ ଲାମା ତାଙ୍କ 'ବୌଦ୍ଧଧର୍ମର ଇତିହାସ'ରେ ଏକ କୌତୂହଳଜନକ ସମ୍ବାଦ ଦେଇଛନ୍ତି । ସେ ଲେଖିଛନ୍ତି ଯେ, ଓଡ଼ିଶାର ଶେଷ ରାଜା ମୁକୁନ୍ଦ-ଦେବ ବୌଦ୍ଧ ଥିଲେ ଓ ଅନେକ ବୌଦ୍ଧ ମଠ ଓ ବିହାର ନିର୍ମାଣ କରାଇଥିଲେ ।

ଉତ୍ତର ଓଡ଼ିଶା ମୁସଲମାନମାନଙ୍କ ଦ୍ୱାରା ଅଧିକୃତ ହେବାର ଅଳ୍ପ କାଳ ମଧ୍ୟରେ ଦକ୍ଷିଣ ଓଡ଼ିଶା ମଧ୍ୟ ଗୋଲକୁଣ୍ଡା ସୁଲତାନଙ୍କ ଦ୍ୱାରା ଅଧିକୃତ ହୋଇଗଲା । ଖ୍ରୀ: ୧୫୭୧ ସାଲ ବେଳକୁ ଗୋଲକୁଣ୍ଡା ସୈନ୍ୟବାହିନୀ ଚିଲିକାଠାରୁ ପେନ୍ନାର ନଦୀ ପର୍ଯ୍ୟନ୍ତ ସମସ୍ତ ସମୁଦ୍ରୋପକୂଳ ଅଧିକାର କରି ନେଇଥିଲେ । ଗଞ୍ଜାମ ଓ ବିଶାଖାପାଟଣାର ଯେଉଁ ସାମନ୍ତ ରାଜାମାନେ ଥିଲେ, ସେମାନେ ଗୋଲକୁଣ୍ଡା ସୁଲତାନଙ୍କ ଆଧିପତ୍ୟ ସ୍ୱୀକାର କରିଗଲେ । ଯେତେଦୂର ଜଣାଯାଏ, ଗୋଲକୁଣ୍ଡା ସୁଲତାନ ଏସବୁ ରାଜ୍ୟର ଅଧିପତି ହୋଇ ମଧ୍ୟ ଖ୍ରୀ: ୧୬୮୧ ସାଲ ପର୍ଯ୍ୟନ୍ତ ପ୍ରତ୍ୟକ୍ଷ ଶାସନର କିଛି ବ୍ୟବସ୍ଥା କରି ନ ଥିଲେ । ସେହି ବର୍ଷ ଚିକାକୋଲଠାରେ ଏସବୁ ଅଞ୍ଚଳର ଶାସନ ନିମିତ୍ତ ଫୌଜଦାରୀ ଅଦାଲତ ପ୍ରତିଷ୍ଠିତ ହେଲା । ସେ ପର୍ଯ୍ୟନ୍ତ ଓଡ଼ିଶା ରାଜାଙ୍କ ଭୂତପୂର୍ବ ସାମନ୍ତମାନେ ଅଧିପତ୍ୟ ସ୍ୱୀକାର କରି ପ୍ରାୟ ସ୍ୱାଧୀନ ଭାବରେ ନିଜ ନିଜ ରାଜ୍ୟରେ ଥିଲେ ।

( ୩୬ )

# ବିଷ୍ଣୁଗର୍ଭପୁରାଣର ମୁଖବନ୍ଧ

## ( ବୌଦ୍ଧଧର୍ମ ବିଷୟରେ କିଞ୍ଚିତ୍ )

ରାୟ ବାହାଦୁର ଆର୍ତ୍ତବଲ୍ଲଭ ମହାନ୍ତି ଏମ୍. ଏ.

ବୁଦ୍ଧ ହିନ୍ଦୁର ସନ୍ତାନ ଓ ବୌଦ୍ଧଧର୍ମ ହିନ୍ଦୁଧର୍ମର ସନ୍ତାନ । ଗୃହତ୍ୟାଗ କଲା ପରେ ବୁଦ୍ଧଦେବ ପ୍ରଥମତଃ ସାଂଖ୍ୟ ଓ ଯୋଗ ଦର୍ଶନର ଉପଦେଷ୍ଟାମାନଙ୍କଠାରୁ ଶିକ୍ଷା ଗ୍ରହଣ କରିଥିଲେ । ସେଥିରେ ସେ ହୃଦୟର ଆକାଂକ୍ଷିତ ବିଷୟ ପ୍ରାପ୍ତ ହୋଇ ନ ଥିଲେହେଁ ଶିକ୍ଷା ଅର୍ଥାତ୍ ସାଂଖ୍ୟ ଓ ଯୋଗର ମତ ତାହାଙ୍କଠାରେ ପ୍ରଭାବ ବିସ୍ତାର କରିଥିବାରୁ ତାହା ଓ ସେହି କାଳର ପ୍ରଚଳିତ କୌତ୍ସ ଓ ଚାର୍ବାକାଦିଙ୍କ (ନାସ୍ତିକ) ମତ ମଧ୍ୟ ଅଳ୍ପାଧିକ ପରିମାଣରେ ମୁଖ୍ୟ ଓ ଗୌଣଭାବରେ ବୁଦ୍ଧଙ୍କ ପ୍ରଚାରିତ ଧର୍ମମତରେ ପରିଦୃଷ୍ଟ ହୁଏ । ହିନ୍ଦୁଧର୍ମ ଜଗତ୍ ସମକ୍ଷରେ ତାହା ଏକ ସମ୍ପୂର୍ଣ୍ଣ ନୂତନ ଧର୍ମମତ ରୂପେ ପ୍ରତିଭାତ ହୋଇ ନ ଥିଲା । ତତ୍କାଳୀନ ଭାରତୀୟ ଅନ୍ୟାନ୍ୟ ଧର୍ମମତ ପରି ଏହା ସଂସାର (ଜନ୍ମମରଣଧାରା) ଓ କର୍ମବାଦ ସ୍ୱୀକାର କରିଥିଲା । ବୁଦ୍ଧଦେବ ଓ ତାଙ୍କ କାଳର ବ୍ରାହ୍ମଣମାନଙ୍କ ମତରେ ପାର୍ଥକ୍ୟ ଏହି ଯେ, ସେମାନଙ୍କ ମତରେ ଈଶ୍ୱର ଜଗତର ସ୍ରଷ୍ଟା ଅଟନ୍ତି ଓ ଜୀବବଳିକ୍ରିୟା, ଯଜ୍ଞ, ଦେବପୂଜାଦି ଦ୍ୱାରା ମାନବ ଜନ୍ମମରଣକଷ୍ଟ ଦୂର କରି ମୁକ୍ତି ଲାଭ କରେ । ବୁଦ୍ଧଦେବ ଈଶ୍ୱର ବା ଆତ୍ମାର ସ୍ୱରୂପ ବା କାର୍ଯ୍ୟ ଓ ଜଗତ୍ ସହିତ ଈଶ୍ୱରଙ୍କ ସମ୍ବନ୍ଧ ବିଷୟ

ସ୍ୱଧର୍ମମତରେ ସ୍ଥାନ ଦେଇ ନ ଥିଲେ । ଦେବୋପାସନା ପଦ୍ଧତିକୁ ସେ ଅପ୍ରଧାନ କାର୍ଯ୍ୟରୂପେ ଗ୍ରହଣ କରିଥିଲେ; ନିର୍ବାଣକୁ ସ୍ୱଧର୍ମମତର ପ୍ରଧାନ ବିଷୟରୂପେ ପ୍ରତିପାଦିତ କରିଥିଲେ । ବୁଦ୍ଧଦେବ କି ନିମିତ୍ତ ଈଶ୍ୱର ବା ଅବତାର ସ୍ୱରୂପ ବା କାର୍ଯ୍ୟ ସମ୍ବନ୍ଧ ସ୍ୱୀକାର କରି ନ ଥିଲେ ତାହାର ବିଶେଷ କାରଣ ଅଛି । ସେ ସମୟରେ ଭାରତର ଲୋକେ ଯଜ୍ଞାଦି କ୍ରିୟାରେ ଅହରହ ପଶୁବଧ କରୁଥିଲେ । ଏହି ଧର୍ମଭାବ ଏପରି ପ୍ରବଳ ହୋଇଥିଲା ଯେ ତାହା ନିଷେଧ କରିବା ଅତିଶୟ କଠିଣ ହୋଇ-ପଡ଼ିଥିଲା । ଯଜ୍ଞରେ ପଶୁମାରଣର ମାତ୍ରା ଏପରି ବଢ଼ି ପଡ଼ିଥିଲା ଯେ, ରନ୍ତିଦେବ ପ୍ରମୁଖ ଲକ୍ଷ ଲକ୍ଷ ଗୋବଧ କରୁଥିଲେ । ଗୋଚର୍ମର ରକ୍ତ ନଦୀ ଆକାରରେ ପ୍ରବାହିତ ହୋଇ ଚର୍ମଣ୍ୱତୀ ଆଖ୍ୟା ପ୍ରାପ୍ତ ହେଲା । ସେ ସମୟରେ ସେ କ୍ରିୟା ଏପରି ପ୍ରଶଂସିତ ହୋଇଥିଲା ଯେ, ତାହା ପୁରାଣ ଶାସ୍ତ୍ରରେ ଓ ପରେ କାଳିଦାସଙ୍କ ମେଘଦୂତରେ "ରନ୍ତିଦେବସ୍ୟ କୀର୍ତ୍ତି" ନାମରେ କଥିତ ହୋଇଅଛି । ହିଂସାର ଏତାଦୃଶ ପ୍ରବଳ ଭାବରୁ— ଅର୍ଥାତ୍ ହିଂସାଜନିତ ମହାପାପରୁ ତଥା ଜରାମରଣ-ବ୍ୟାଧିଜନିତ ମହାତାପରୁ ଲୋକଙ୍କୁ ରକ୍ଷା କରିବା ନିମିତ୍ତ ବୁଦ୍ଧଦେବଙ୍କ ହୃଦୟ ଉପଯୁକ୍ତ ଉପାୟ ବିଧାନରେ ସାତିଶୟ ଆକୁଳ ହୋଇଥିଲା । ହୃଦୟର ସେହି ସ୍ୱତଃ ଉଦାର ଆକୁଳ ସ୍ପନ୍ଦନ ଜଗତର ଆକୁଳତା ନିବାରଣ କରିବା ଉଦ୍ଦେଶ୍ୟରେ ବିଶ୍ୱପ୍ରାଣତାର ଉଲ୍ଲୋଳ କଲ୍ଲୋଳମାଳାରେ ଜଗତକୁ ପ୍ଲାବିତ କରିବା ମାନସରେ, ବ୍ରହ୍ମମୟ ଜଗତ୍ ଓ ଜଗନ୍ମୟବ୍ରହ୍ମ ଏହାର ମୂଳ ବୀଜମନ୍ତ୍ର ଜଗତରେ ସଂସ୍ଥାପନ କରିବା ଅଭିପ୍ରାୟରେ ତାଙ୍କୁ ତାଙ୍କର ପ୍ରିୟତମା ପତ୍ନୀ, ପ୍ରାଣସମ ପୁତ୍ର, ଦେବୋପମ ପିତା ମାତା ଓ ବନ୍ଧୁ, ସ୍ୱଜନ ତଥା ରାଜ୍ୟ ପର୍ଯ୍ୟନ୍ତ ପରିତ୍ୟାଗ କରାଇଥିଲା; ଭିକ୍ଷୁକ ବେଶରେ ପଦବ୍ରଜରେ ଭ୍ରମଣ କରାଇ ସାଂଖ୍ୟ ଓ ଯୋଗଦର୍ଶନର ଉପଦେଷ୍ଟାଙ୍କ ସମୀପରେ ଶିଷ୍ୟରୂପେ ଉପସ୍ଥିତ କରାଇଥିଲା; ଦୀର୍ଘ ଷଡ଼ବର୍ଷବ୍ୟାପୀ ତପସ୍ୟାରେ ନିଯୋଜିତ କରିଥିଲା । କିନ୍ତୁ କୌଣସି ଦ୍ୱାରା ଫଳ ନ ଦର୍ଶାଇ ଶେଷରେ ଅଶ୍ୱତ୍ଥ ତରୁତଳରେ ଧ୍ୟାନରେ ସମାସୀନ କରାଇ

ଅନୁଭବଦ୍ୱାରା ବୋଧ ବା ଜ୍ଞାନ ପ୍ରଦାନ କରିଥିଲା । ସେ ନିର୍ବାଣର ଅର୍ଥ ସମ୍ୟକ୍ ଉପଲବ୍ଧି କଲେ । ବେଦବିରୁଦ୍ଧରେ ତଥା ଦେବ ବିରୁଦ୍ଧରେ ତାଙ୍କ ଜ୍ଞାନ ଖଡ୍ଗ ଧର ଦଣ୍ଡାୟମାନ ହେବାକୁ ପଡ଼ିଥିଲା । ସେ ଦେଖିଥିଲେ ଯେ ଲୋକେ ଅସାର ସଦ୍‌ଗତିଛଳରେ ଦେବତାଙ୍କ ଦ୍ୱାହି ଦେଇ ଯଜ୍ଞାନୁଷ୍ଠାନରେ ପଶୁମାରଣ ରୂପ ହିଂସା କର୍ମ କରି ସ୍ୱପ୍ରବୃତ୍ତିମାର୍ଗର ଯଥେଷ୍ଟ ତୃପ୍ତି ବିଧାନ କଲେ । ଏହି ପଶୁମାରଣାତ୍ମକ ଯଜ୍ଞାନୁଷ୍ଠାନ ମୂଳରେ କୁଠାରଘାତ କରିବା ଅଭିପ୍ରାୟରେ ତାଙ୍କୁ ଈଶ୍ୱର ଓ ଆତ୍ମା ଅସ୍ୱୀକାର କରିବାକୁ ହୋଇଥିଲା । ସେ ପ୍ରକୃତରେ ନାସ୍ତିକ ନ ଥିଲେ । ସେ ଆସ୍ତିକ ଥାଇ ଅପାତ ନାସ୍ତିକ ଧର୍ମ ପ୍ରଚାର କରିଥିଲେ । କାରଣ ସେ ଆସ୍ତିକ୍ୟ ଧର୍ମ ପ୍ରଚାର କରିଥିଲେ ଲୋକେ ପଶୁପାଣରୁ ନିବୃତ୍ତ ହୋଇ ନ ଥାଆନ୍ତେ । ବୌଦ୍ଧଧର୍ମ ହିନ୍ଦୁଧର୍ମର ବୈଦିକ ସାରାଂଶ ଗ୍ରହଣ କରି ସ୍ୱତନ୍ତ୍ରରୂପେ ଦଣ୍ଡାୟମାନ ହେଲା । ବେଦବହିତ ଯଜ୍ଞୀୟ ପଶୁମାରଣ ବିରୁଦ୍ଧରେ ସେହି ବେଦୋକ୍ତ "ମା ହିଂସ୍ୟାତ୍; ଗୋଽଘ୍ନ୍ୟଃ" ଅହିଂସା ପରମୋ ଧର୍ମଃ ରୂପେ ବୁଦ୍ଧଙ୍କ ଦ୍ୱାରା ବଜ୍ରନିନାଦରେ ନିନାଦିତ ହେଲା । ସେ ଜଗତର ଗୁରୁରୂପେ ଏହି ମହାସତ୍ୟକୁ ଜଗତ୍‌ସମକ୍ଷରେ ଅବ୍ରହ୍ମଚଣ୍ଡାଳଙ୍କ ନିକଟରେ ଉପସ୍ଥାପିତ କଲେ । ଜାତିଭେଦ ସଂକୀର୍ଣ୍ଣତା ଦୂର କରିଥିବା ହେତୁ ଏହି ମହାସତ୍ୟ ଅନ୍ୟାନ୍ୟ ଶିକ୍ଷା ସହ ଜଗତରେ ବ୍ୟାପିବାକୁ ଓ ଜଗତକୁ ଅନୁପ୍ରାଣିତ କରିବାକୁ ଲାଗିଲା । ଭାରତର କତିପୟ ରାଜନ୍ୟବର୍ଗଙ୍କ ଦ୍ୱାରା ବିଶେଷତଃ ଅଶୋକ ଓ କନିଷ୍କଙ୍କ ଦ୍ୱାରା ଅବଲମ୍ବିତ ହେବା ହେତୁ ତାହା ଭାରତରେ ପ୍ରବଳଭାବରେ ପ୍ରଚାରିତ ହେବାକୁ ଲାଗିଲା । ଶୂନ୍ୟବାଦୀ ଏହି ବୌଦ୍ଧଧର୍ମ ପରେ ଦୁଇ ପ୍ରଧାନ ଶାଖାରେ ବିଭକ୍ତ ହେଲା—ଯଥା ମହାଯାନ ଓ ହୀନଯାନ । ମହାଯାନ ଓ ହୀନଯାନର ପୁଣି ଦୁଇ ଦୁଇଟି ବିଭାଗ ହେଲା ତାହା ଯୋଗାଚାର ଓ ମାଧ୍ୟମିକ ଏବଂ ବୈଭାଷିକ ଓ ସୌତ୍ରାନ୍ତିକ । ଶଙ୍କରାଚାର୍ଯ୍ୟ ପ୍ରଭୃତି ବେଦାନ୍ତଭାଷ୍ୟକାରମାନେ ଶୂନ୍ୟବାଦୀ ଏହି ଚାରିମତକୁ ଭୀଷଣ ଭାବରେ ପ୍ରତିବାଦ କରି ଏମାନଙ୍କ ଅସାରତା ଦର୍ଶାଇଅଛନ୍ତି । ଶଙ୍କରଙ୍କ ମତରେ ବ୍ରହ୍ମହିଁ କେବଳ ସତ୍ୟ, ଅନ୍ୟ ସମସ୍ତ

ମାୟା । ଏହି ମାୟାବାଦ ପରେ ବୌଦ୍ଧଧର୍ମରେ ପ୍ରବେଶ ଲାଭ କଲା । ପରଯୁଗର ଦ୍ୱୈତବାଦୀମାନେ ସୋଽହଂବାଦୀ ଶଙ୍କରଙ୍କୁ ବୌଦ୍ଧଧର୍ମର ଶୂନ୍ୟସ୍ଥାନରେ ବ୍ରହ୍ମ ପ୍ରତିପାଦନ ଓ ଅନ୍ୟାନ୍ୟ ସମସ୍ତ ବସ୍ତୁକୁ ମାୟାରୂପେ ଗ୍ରହଣ କରିଥିବା ହେତୁ ତାଙ୍କ ମତକୁ ପ୍ରଚ୍ଛନ୍ନ ବୌଦ୍ଧମତ ବୋଲି କହୁଅଛନ୍ତି ।

ମାୟାବାଦମସତ୍ ଶାସ୍ତ୍ରଂ ପ୍ରଚ୍ଛନ୍ନଂ ବୌଦ୍ଧମେବ ଚ
ମୟୈବ କଥିତଂ ଦେବି କଲୌ ବ୍ରାହ୍ମଣରୂପିଣା ।(ବସ୍ତୁପୁରାଣ)

ଶଙ୍କରାଚାର୍ଯ୍ୟ ବୌଦ୍ଧଧର୍ମର ପ୍ରତିଦ୍ୱନ୍ଦ୍ୱୀ ହେଲେହେଁ ନିବୃତ୍ତି ମାର୍ଗ ଓ ଅହିଂସାଧର୍ମର ପ୍ରଧାନ ଉପଦେଷ୍ଟା ହେଲେ । କାଳର କୁଟିଳ ଗତିରେ ପ୍ରବୃତ୍ତିମାର୍ଗର ଯଥେଚ୍ଛାଚାରର ତୁଳନାରେ ଶ୍ରେୟ ବା ସତ୍ୟ, ପ୍ରେୟ ବା ମିଥ୍ୟାର ଭସ୍ମରାଶିର ଅନ୍ତରାଳରେ କ୍ଷୀଣପ୍ରଭ ହୋଇ ଅବସ୍ଥିତି କରେ । ଶ୍ରେୟସ୍କାମ ବା ସତ୍ୟକାମ ପୁରୁଷର ଶ୍ରେୟ ବା ସତ୍ୟର ଉଦ୍‌ଘୋଷଣାରେ ପ୍ରେୟସ୍କାମ ବା ସ୍ୱେଚ୍ଛାଲିପ୍ସୁର ପ୍ରେୟ ଉତ୍ତ୍ୟକ୍ତ ହୋଇ ପଡ଼େ । ସଂଗ୍ରାମ କରିବା ନିମିତ୍ତ ସନ୍ନଦ୍ଧ ହୋଇ "ରଣଂ ଦେହି, ରଣଂ ଦେହି" ବୋଲି ଚିତ୍କାର କରେ, କିନ୍ତୁ ସେହି ବାକ୍ୟବୀରର ବୀରତ୍ୱ କେବଳ ବାକ୍ୟରେ ପର୍ଯ୍ୟବସିତ ହୁଏ । ହୃଦୟରେ ନିଜକୁ ପରାଜିତ ମଣି ପରାଜିତ ବୋଲି ସ୍ୱୀକାର ନ କରି ତାହାର ଓ ଶ୍ରେୟର ସମକକ୍ଷତ୍ୱ ବା ସମଫଳତ୍ୱ ପ୍ରଦର୍ଶନ ନିମିତ୍ତ ପ୍ରମାଣନିଚୟ ଉପସ୍ଥାପିତ କରେ; କିନ୍ତୁ ତାହା ବୃଥା । ସତ୍ୟର ଅହ୍ୱାନରେ ସତ୍ୟ ପ୍ରତିବାକ୍ୟ ପ୍ରଦାନ କରେ । ସ୍ୱେୟର ନିଗଡ଼ ବନ୍ଧନରୁ ମୁକ୍ତ ହୋଇ ଶ୍ରେୟ ନିଜର ସତ୍ୟପ୍ରଭାରେ ଉଦ୍‌ଭାସିତ ହୁଏ । ବୁଦ୍ଧଙ୍କ ଧର୍ମଶିକ୍ଷାର ମୂଳମନ୍ତ୍ର ଶଙ୍କରଙ୍କଦ୍ୱାରା ପ୍ରବଳ ଭାବରେ ଉଦ୍‌ଘୋଷିତ ହେଲା । ନିର୍ବାଣ ମୁକ୍ତିପଦ ଲାଭ କଲା । ଅହିଂସା ପରମୋଧର୍ମ ଓ ନିବୃତ୍ତିମାର୍ଗର ଶିକ୍ଷା ଉତ୍ତମରୂପେ ପ୍ରଚାରିତ ହେଲା । ପରେ ପୁଣି ସେହି ବୁଦ୍ଧଙ୍କ ମହାଶିକ୍ଷା ଚୈତନ୍ୟଙ୍କ ଦ୍ୱାରା ଭକ୍ତିରୂପରେ ପ୍ରଦର୍ଶିତ ହେଲା । ଅହିଂସା ପରମୋଧର୍ମଃ" "ଜୀବରେ ଦୟା" ରୂପେ

ଗୃହୀତ ହେଲା । ଜାତିଭେଦଶୂନ୍ୟତା ପୁନର୍ବାର ପ୍ରକାରାନ୍ତରରେ ପ୍ରଚଳିତ ହେଲା । ଭକ୍ତ, ମୁକ୍ତ ଓ ଭକ୍ତିର ତାରତମ୍ୟ ପ୍ରଦର୍ଶିତ ହୋଇ ଭକ୍ତିକୁ ଉଚ୍ଚାସନ ପ୍ରଦତ୍ତ ହେଲା । ନାନା ଦୂଷଣ ପ୍ରବେଶ କରିବା ହେତୁ ବୌଦ୍ଧଧର୍ମ ଭାରତରୁ ବିତାଡ଼ିତ ହୋଇଥିଲେହେଁ ତାହା ଶୈବ, ବୈଷ୍ଣବ, ଶାକ୍ତ ଓ ଅନ୍ୟାନ୍ୟ ଧର୍ମମାନଙ୍କରେ ତାହାର ମୁଦ୍ରାଙ୍କ ପ୍ରଦାନ କରିଅଛି । ବୁଦ୍ଧ, ଶଙ୍କର ଓ ଚୈତନ୍ୟଙ୍କୁ ଏକ ମହାଶକ୍ତିରୂପେ ଗ୍ରହଣ କରିବାକୁ ହେବ । ସେମାନେ ଧର୍ମପ୍ରବର୍ତ୍ତନ ନିମିତ୍ତ ଦେଶ, କାଳ ପାତ୍ର ବିଚାରରେ ଏକ ମହାସତ୍ୟକୁ ଭିନ୍ନରୂପେ ଉପଦେଶ ଦେଇଥିଲେ । ବୁଦ୍ଧ, ଶଙ୍କର ଓ ଚୈତନ୍ୟଙ୍କୁ ଜଗଦ୍‌ଗୁରୁରୂପେ ଗ୍ରହଣ କରିବାକୁ ହେବ । ବିଶ୍ୱପ୍ରାଣ ଅର୍ଘ୍ୟଦ୍ୱାରା ବୁଦ୍ଧ, ଶଙ୍କର ଓ ଚୈତନ୍ୟ ଅବତାରରୂପେ ପୂଜିତ ହେଉଅଛନ୍ତି । ଚୈତନ୍ୟ ଦାସ ଚୈତନ୍ୟଚନ୍ଦ୍ରଙ୍କ ପୂର୍ବର ଲୋକ । ସେ ସମୟରେ ବୈଷ୍ଣବଧର୍ମ, ଶୈବଧର୍ମ ଓ ବୌଦ୍ଧଧର୍ମ ପ୍ରଭୃତିର ମିଶ୍ରଣରେ ଭାରତରେ ବିଶେଷତଃ ଉତ୍କଳରେ ଏକ ବିଶିଷ୍ଟ ଧର୍ମ ପ୍ରଚଳିତ ଥିଲା । ଯୋଗମାର୍ଗ ଧର୍ମର ପ୍ରଧାନ ଅଙ୍ଗରୂପେ ଗୃହୀତ ହୋଇଥିଲା । ଯନ୍ତ୍ର, ତନ୍ତ୍ର ଓ ମନ୍ତ୍ରର ବିଚାର ବ୍ୟତୀତ ଧର୍ମ ଅନୁଷ୍ଠିତ ହେଉ ନ ଥିଲା କହିଲେ ଚଳେ । ଯୋଗମାର୍ଗ ତଥା ମନ୍ତ୍ର, ଯନ୍ତ୍ର ତଥା ତନ୍ତ୍ରର ଚର୍ଚ୍ଚା ବୌଦ୍ଧ-ଧର୍ମର ପ୍ରଚାର ହେତୁ ଜନସାଧାରଣଙ୍କ ଦ୍ୱାରା ଅବଲମ୍ବିତ ହୋଇଥିଲା । ଉତ୍କଳର ବୈଷ୍ଣବ ସାଧୁମାନେ ସେ ସମସ୍ତ ଆଶ୍ରୟ କରି ନିଜର ଧର୍ମପଦ୍ଧତି ଗଢ଼ି ତୋଳିଥିଲେ । ଚୈତନ୍ୟଚନ୍ଦ୍ର ଉତ୍କଳକୁ ଆସି ବୈଷ୍ଣବ ସାଧୁଙ୍କ ଯୋଗାଶ୍ରିତ ଭକ୍ତିକୁ ସମର୍ଥନ କରିଥିଲେ; ତାହା ପଞ୍ଚସଖାଙ୍କ ଗ୍ରନ୍ଥମାନ ପାଠ କଲେ ସ୍ପଷ୍ଟ ପ୍ରତୀୟମାନ ହୁଏ । ଜ୍ଞାନମିଶ୍ରା ଭକ୍ତି ବିଶୁଦ୍ଧ ଭକ୍ତିର ସୋପାନ ରୂପେ ଗୃହୀତ ହେଲା । ବିଶୁଦ୍ଧ ଭକ୍ତି ଜ୍ଞାନର ସହାୟତାରେ ପ୍ରାପ୍ତ ହୁଏ ଓ ବିଶୁଦ୍ଧ ଭକ୍ତିର ପ୍ରାପ୍ତିରେ ଜ୍ଞାନର ପ୍ରାଧାନ୍ୟ ଲୋପ ହୁଏ । ଏହା ପରମାର୍ଥ ରୂପେ ପ୍ରତିପାଦିତ ହେଲା । ଏ ବିଷୟ ବୈଷ୍ଣବ ଗ୍ରନ୍ଥମାନଙ୍କର ପ୍ରତିପାଦ୍ୟ ।

# ହା ଅନ୍ନ

ଶ୍ରୀ କାହ୍ନୁଚରଣ ମହାନ୍ତି

ଦୁଃଖ ପରେ ଦୁଃଖ ମାଡ଼ି ଆସୁଛି, ସତେ କି ତା'ର ବିରାମ ନାହିଁ । ମଣିଷର ବା ଧୈର୍ଯ୍ୟ କେତେ ? ସଂସାରରେ ଆଶା କରିବାକୁ କେହି ନ ଥିଲେ ଜୀବନଟା ଏକା ଥରକେ ଅସହଣୀୟ ହୋଇ ଉଠେ । ଅଗଣିତ ଦୁଃଖର ମଝିରେ ଯଦି ମଣିଷ ପଦେ ସହାନୁଭୂତିସୂଚକ ମିଠା କଥା ବି ଶୁଣିବାକୁ ନ ପାଏ, ଜୀବନଟା ତାକୁ ଢେର ଲାଗେ—ଜୀବନଟା ତାକୁ ନୀରସ ଶୁଷ୍କ ବୋଧ ହୁଏ । ଯୌବନର ଉଦ୍ଦୀପନା ଭୁଲି ପ୍ରାଣର ମମତା ଛାଡ଼ି ସେ ଖୋଜି ବୁଲେ ମୁକ୍ତି—ନିଷ୍କୃତି ।

ଉମାର ସେ ମୁକ୍ତି—ନିଷ୍କୃତି କାହିଁ ? ତା'ର ପ୍ରତ୍ୟେକ ଚିନ୍ତାର ଅନ୍ତରାଳରେ ରହି ଭାଗ୍ୟ ଯେପରି ତାକୁ ଉପହାସ କରୁଛି । ଶାନ୍ତି ଏ ଜୀବନରେ ତା'ର ନାହିଁ । ଅର୍ଥ ଅଭାବରେ ସହସ୍ର ମାନବ ଯେଉଁ ନିଷ୍କୃତିର ପଥ ଅନୁସରଣ କରି ଯନ୍ତ୍ରଣାଜଡ଼ିତ ପରି ଆଗକୁ ଚାଲିଛନ୍ତି, ତାକୁ ମଧ୍ୟ ସେହି ନଇର ସ୍ରୋତରେ ମିଶି ଦୁର୍ଭିକ୍ଷ-ପୀଡ଼ିତର ଅଜମଣ୍ଟ ବାର୍ତ୍ତା ପ୍ରଚାର କରି ବୁଲିବାକୁ ହେବ ଦେଶ ସାରା; ଦ୍ୱାରେ ଦ୍ୱାରେ । ଏଥିକୁ ଲଜ୍ଜା ଭୟ, ଅପମାନ ତା ପକ୍ଷରେ ନାହିଁ । ଲଜ୍ଜା ଭୟ ଯେଉଁମାନଙ୍କୁ କରନ୍ତା,

ସେମାନେ ତ ସମଦଶାପନ୍ନ । ସେମାନେ ତ ଏକ ବାଟର ଭିଖାରି, ପଥର କାଙ୍ଗାଳ । କିନ୍ତୁ ନିରାଶ୍ରୟ ହୋଇ କେତେଦିନ ସେ ପରଦ୍ୱାରରେ ଗୋଡ଼ ଲମ୍ବି ଠିଆ ହେବ ? ଦ୍ୱାର ଦ୍ୱାର ବୁଲି ହାତ ପତାଇ ମୁଠିଏ ଖାଇବାକୁ ମାଗିବ ? ଭବିଷ୍ୟତରେ ସେ କରିବ କ’ଣ ? ଯେଉଁ ଜୀବନଟା ବଞ୍ଚିବାକୁ ସେ ଏତେ କଷ୍ଟ ସହିବ, ତା’ର ସେ ଜୀବନଟା ତ ସୁଖରେ ନିଶ୍ଚିନ୍ତରେ କଟିବ ନାହିଁ । ଆଜୀବନ ତାକୁ ଦୁଃଖ ଯନ୍ତ୍ରଣା ନିର୍ଯ୍ୟାତନାର ଭିତର ଦେଇ ମୁଣ୍ଡ ନୁଆଁଇ ଚାଲିବାକୁ ହେବ । ଏପରି ହୀନମାନିଆ ପଶୁ ଜୀବନ ଧରି ବଞ୍ଚି ରହିବା କି ପ୍ରୟୋଜନ ? ଜୀବନଟା ଯେ ରହିବ ତା’ର ବା ସ୍ଥିରତା କାହିଁ ? ତା’ର ପରି କେତେ ଲୋକ ତ ନିତ ଖାଇବା ବିନା ବାଟ ଘାଟରେ ପଡ଼ି ମରି ସଢ଼ୁଛନ୍ତି । ପଦାକୁ ଗୋଡ଼ କାଢ଼ି ଅନିଶ୍ଚିତର ଆଶ୍ରା ନେଲେ ଦିନେ ତା’ର ସେ ଦଶା ନ ହେବ ଏକଥା କିଏ କହିବ ?

ମା ତା’ର ଅଣହେଲାରେ ପଡ଼ି ମରୁଛି, ଦାଦଗଞ୍ଜ ଜଞ୍ଜାଳରୁ ମୁକ୍ତି ପାଉଛି । ତା ପାଇଁ ଆଖି ଓଦା କରିବାକୁ ଆଉ କେହି ନାହାନ୍ତି । ଦାଦ ଖୁଡ଼ୀଙ୍କର ଅତ୍ୟାଚାର ବେଳକୁବେଳ ବଢ଼ିବାକୁ ଲାଗିଛି । ଉମା ଆଉ ସହି-ପାରୁନାହିଁ । ସେ ବୁଝି ପାରୁଛି, ଦାଦ ଖୁଡ଼ୀଙ୍କର ଉଦ୍ଦେଶ୍ୟ—ସେ ଏପରି ଘର ଛାଡ଼ି ଚାଲିଯାଉ—ନୋହିଲେ ମରି ଯାଉ । ତେବେ ଯାଇ ସେମାନେ ଉମାର ଦାୟିତ୍ୱରୁ ରକ୍ଷା ପାଇବେ । ନିଜର ଛୋଟ ସଂସାରଟିକୁ କୌଣସି ମତେ ଚଳାଇବାକୁ ଚେଷ୍ଟା କରିବେ ।

ମା ମରିଛି, ଦୁଃଖରେ ତାକୁ ମନଇଚ୍ଛା କାନ୍ଦିବାକୁ ବେଳ ନାହିଁ । ଶବ ନେଇ ଲୋକେ ଶ୍ମଶାନରେ ପକାଇବାକୁ ଚାଲିଗଲେ । ଉମା ବାଡ଼ିଆଡ଼ ଶଜନାଗଛ ମୂଳରେ ବସି ମା କଥା ମନେ କରି କାନ୍ଦିବାକୁ ଲାଗିଲା ।

ବେଳ ଦିପହର ହେବ । ରେଣୁବୋଉ ବାଡ଼ିଆଡ଼କୁ ଆସି ନାକରେ ଲୁଗା ଦେଇ କହିଲେ, କିଲୋ ! ମା ଅଭାଗୀ ତ ମଲା, ତୋର କ’ଣ ତା ସଙ୍ଗରେ ଗୋଡ଼ାଇ ଯିବାକୁ ମନ ହେଉଛି କି ?

ଉମା ଆଉ କ'ଣ କହନ୍ତା ? ତା'ର ଆଖିର ଲୁହ ଆଖିରେ ଶୁଖିଛି, ମନର ଦୁଃଖ ମନରେ ମରିଛି, ପେଟର କୋହ ପେଟ ଭିତରେ ଲୁଚିଛି । ସେ ତା'ର ଖୁଡ଼ୀ ପାଖକୁ ଲାଗି ଅଳ୍ପ ତଳକୁ ମୁହଁ ପୋତି ଠିଆ ହେଲା ।

ରେଣୁବୋଉ ଘୁଞ୍ଚି ଠିଆ ହୋଇ ପୁଣି କହିଲେ ଆରେ, ଯିଏ ମଲା ତ ମଲା । କେବଳ ଯେମିତି ପଡ଼ିଛି କିଏ ଯେ ବଞ୍ଚି ରହିବ ଜୋର କରି କେହି କହି ପାରିବେ ନାହିଁ । ଆଜି ଯିଏ ଅଛି କାଲି ତା କୁ ଦେଖି-ବାକୁ ସପନ । ଦୁଃଖ ତ ହେବ । ଦୁଃଖକୁ ଧରି ବସିଲେ କିଛି ଲାଭ ନାହିଁ । ଅଷ୍ଟାବକ୍ର ବିପଦକୁ ପଛରେ ପକାଇ ଠିଆ ହେଲେ ସିନା ଭଲ । ଯିଏ ଯାଇଛି ତାକୁ ତ ଆଉ ଫେରି ପାଇବା ନାହିଁ । ରେଣୁବୋଉ ନାକର ଲୁଗା ନେଇ ଆଖିରେ ମାଇଲେ ।

ଉମା କାନ୍ଦିବାକୁ ଲାଗିଲା । ରେଣୁବୋଉ କହିଲେ, ଦେଖ୍ ତୋ ଘର ଦ୍ୱାର କିପରି ମଇଳା ହୋଇ ପଡ଼ିଛି । ମାଛିଗୁଡ଼ାକ ପଲ ପଲ ହୋଇ ବେଢ଼ିଛନ୍ତି । ଗନ୍ଧରେ ନାକ ଫାଟି ପଡ଼ୁଛି । ଘର ଦ୍ୱାର ସଫା ନ ରଖିଲେ ବେଳ କାଳ ପେଚର, ସମସ୍ତେ ତ କାରବାର ହେଉଥାନ୍ତି, କେତେବେଳେ କେଉଁ କଥା । ଠାକୁରାଣୀ ବଗିଡ଼ିଲେ ତାହା ପାଇବାର ଉପାୟ ଆଉ ରହିବ ନାହିଁ । ଟିକିଏ ଥମିଯାଇ ସେ ପୁଣି କହିଲେ, ମତେ କିଛି ବଳେଇ ପଡ଼ନ୍ତା ନାହିଁ, ତତେ କହନ୍ତି କାହିଁକି ? ତୁ ସେଥିରେ ଘାଣ୍ଟି ହେଉଛୁ ବୋଲି କହୁଛି । ରେଣୁ ବି ମୋ ପାଖ ଛାଡ଼ ନିହମାକେ କାହିଁ ଥୟ ଧରି ରହୁ ନାହିଁ ।

ଉମା ଛଳଛଳନେତ୍ରରେ ତା'ର ଖୁଡ଼ୀ ମୁହଁକୁ ଚାହିଁଲା······ । ସେ କହିଲେ ଆଉ କେତେ ବସିଛୁ କାହିଁକି ମା ? ଖଟଛାଡ଼ି ମାଡ଼ ଅଛି । ଆମକୁ ତ ଆଖରେଇ କରିବାକୁ ହେବ । ଯା, ଘରଟାକୁ ଓଳାଓଳି କରି ପରେ ପାଣି ପକାଇ ଝୁଣ୍ଟିକରା ମାରିଆଣ୍ । ପାଣି ପାଇଁ ପରସରକୁ ଖୋସାମତ୍

କରିବାକୁ ଯିବୁ କାହିଁକି ? କିଏ ଘରେ ସୁସଜ୍ଜ ଥିବ କି ନାହିଁ, କିଏ ଜାଣେ ନାକ ଛିଣ୍ଡାଇ ବସିବ । ଠାକୁରେ ଗୋଡ଼ହାତ ଦେଇଛନ୍ତି । ନଈ ଏବେ କେତେବାଟ କି ? ମୁଁ ଯିବା ପରି ହିଁଅ । ଘରେ ଯିବୁ ଟିଲଇ ହୋଇ ପଡ଼ିଲ । ତୋର ମା'ଟା ମରିଛି । ଅସମର୍ଥ ବୋଲି ଯାଉ ଯିବା କିଛି ବରୁଣିରୁ ନାହିଁ, ମୁଣ୍ଡ ଧୋଇ ଗାଧୋଇବୁ ତ !

ରେଣୁବୋଉଙ୍କର ଆଦର ଉଦ୍ଦେଶ୍ୟ ଓ ମିଠା କଥାର ମର୍ମ ସେ ବୁଝି ପାରିଲା । ପ୍ରତିବାଦ କି ଆପତ୍ତି କରିବାର ବେଳ ନୁହେଁ । କାଳ ବି ଲାଭ ନାହିଁ । ଭଲରେ କହୁଛନ୍ତି, ନ କଲେ ପୁଣି ବାଧ୍ୟ ହୋଇ ତ କରିବାକୁ ପଡ଼ିବ ତାକୁ । ସେ ଦ୍ୱିରୁକ୍ତି ନ କରି, ବିରସ ମନରେ ବଡ଼ିଣା ଧରି କାମରେ ଲାଗିଲା । ଖିଡ଼କୀ ଘରଭିତରକୁ ଗଲେ ।

ବେଳ ଦ୍ୱିପହରୁ ଗଡ଼ିଗଲାଣି । ଜମା ନଈ କୂଳରେ ଗୋଟିଏ ଛୋଟ ଆମ୍ବଗଛ ଛାଇରେ ବସି ଭାବୁଛି, ପାଖରେ ମାଠିଆ ଦୁଇଟି ଉଗୁଡ଼ା ହୋଇଛି । ଆଗରେ ନଈ, ପାଏ ବାଟ ତତଲା ବାଲି ପାରି ହେଲେ ପାଣି ଧାର । ଖରା ତାତିରେ ବାଲି ତ କଅଁ ଗୁଣ୍ଡ ପରି ତାତିଥିବ—ଝୁଲା ବାହାରୁଛି । ପାଣିର ଅବସ୍ଥା ତହୁଁ ବଳିଥିବ । କିଏ ଯେପରି ଫୁଟିଲା ପାଣି ଚୁଲିରୁ କାଢି ଅଜାଡ଼ି ରଖିଛି । ଚୁପ ବସିଥିଲେ ହେବ ନାହିଁ । ପ୍ରାଣ ଯାଉ କି ରହୁ ତାକୁ ଏହି କଅଁ ବାଲି ପାରି ହୋଇ ଫୁଟିଲା ପାଣିରେ ଗାଧୋଇବାକୁ ପଡ଼ିବ । ଅଲୋଡ଼ା ଅବେଇଜ ପ୍ରାଣ । ବିଲେଇ କୁକୁର ଛୁଆଙ୍କର ଜୀବନର ମୂଲ୍ୟ ଅଛି, ମନର ସ୍ୱାଧୀନତା ଅଛି; ଆଶାର ଆକର୍ଷଣ ଅଛି, ତା'ର ସେସବୁ ନାହିଁ । ସେ ମଣିଷ ପିଲା କିନ୍ତୁ ଅବହେଳିତ ବାଟର ଧୂଳିକଣା । ନିଜତ୍ୱ ନାହିଁ । ସମୟର ଫୁତ୍କାରରେ ତାକୁ ଉଡ଼ିବାକୁ ହେବ । ଅବସ୍ଥାର ପଦକ୍ଷେପ ମୁଣ୍ଡ ଉପରେ ସହିବାକୁ ପଡ଼ିବ ।

କିନ୍ତୁ ସେ ଯିବ କିପରି ? ଓଃ, କି ଭୀଷଣ ଦୃଶ୍ୟ । ଦିନ ପହରରେ ସୁଦ୍ଧା ଜନମାନବର ଦେଖା ନାହିଁ । ଡାହାଣ ହାତ—ନଈକୂଳ ବାଲି

ପଡ଼ିଥି ଉପରେ ହାଡ଼ ଲୁଡ଼ ଲୁଡ଼ ଗଦା ହୋଇଛି । ନବପୁରର ଯେତେ ଗାଈ ଗୋରୁ ଖାଇବାକୁ ନ ପାଇ ବସନ୍ତରେ ଫାଟୁଅରେ ମଲେ ସେମାନଙ୍କର ଅନ୍ତିମ ମିଳନସ୍ଥଳ ଶ୍ମଶାନ । ବର୍ତ୍ତମାନ ମଧ୍ୟ ଗୋଟାଏ ଅଷତ ମଡ଼ା ହାତ ଗୋଡ଼ ନାଠି, ତତଲ ଖାଲ୍ ଉପରେ ପଡ଼ିଛି । ପାଖ ଓସ୍ତ ଗଛ ଉପରେ ଦୁଇ ଗୃଧ୍ରଟା ଶାଗୁଣା ପକ୍ଷୀ ମେଲାଇ ବସି ଏକ ଧ୍ୟାନରେ ଶବଟିକୁ ଚାହିଁ ରହିଛନ୍ତି । ପରେ ହାଉ ନଈକୂଳରେ ବସି ଶବ ଅଡ଼କୁ ଚାହିଁ—କା, କା, ହେଉଛନ୍ତି । ବେଳେ ବେଳେ କେହି କେହି ଉଡ଼ିଯାଇ ଶବଟିର ଅଙ୍ଗ ଦାନ ଖୁମ୍ପିବାକୁ ଚେଷ୍ଟା କରୁଛନ୍ତି; କିନ୍ତୁ ରକ୍ତମୁଖା କୁକୁରଗୁଡ଼ାଙ୍କର ଗୋଡ଼ା ଗୋଡ଼ ଦେଖି; ଭାଉଁ ଭାଉଁ ଶବ୍ଦ ଶୁଣି,ଉପରେ ପୁଣି ସ୍ୱସ୍ଥାନକୁ ଫେରି ଆସୁଛନ୍ତି । ଦୂରରେ ପଡ଼ିଥିବା ଅନ୍ୟ ଗୋଟିଏ ଛଣ୍ଡାବଙ୍କାଳ ଦେହରୁ ଖୁମ୍ପି ଖାଇବାକୁ ଉଡ଼ିଯାଉଛନ୍ତି । ପଚା ଗନ୍ଧରେ ନାକ ଫାଟି ପଡ଼ୁଛି ।

ଅହା ! ଉମାର ଅକ୍ଷୁଣୀ ବୋଉଟି । ତା'ର ମଧ୍ୟ ଅନ୍ତ ଏଇ ଅବସ୍ଥା ହୋଇଥିବ । ସେ ବି ଅନ୍ତ କାଳ କୁକୁର ବିଲୁଅ ଶାଗୁଣାଙ୍କର ଆନନ୍ଦବର୍ଦ୍ଧକ ଖାଦ୍ୟ ସାମଗ୍ରୀ ହୋଇ ଶ୍ମଶାନଭୂଇଁରେ ପଡ଼ି ରହିଥିବ । ଉମା ଯାହାର ବକ୍ଷରେ—କୋଳରେ ବଢ଼ି ଆସିଛି, ତା'ର ଅନ୍ତ ଏଇ ଅବସ୍ଥା । ଏହି ନଶ୍ୱର ଦେହ । କେତେ ଯତ୍ନ ଏଇଥିପାଇଁ । ଏହାର ଶ୍ରୀବୃଦ୍ଧି ପାଇଁ, ଏହାର ଆନନ୍ଦ, ଏହାର ଉତ୍ତେଜନା, କ୍ଷଣିକ ସୁଖ ସମ୍ଭୋଗ ପାଇଁ ଦୁନିଆ ପାଗଳ ହୁଏ କାହିଁକି ? ଯୌବନର ପୁଷ୍ପ—ସୌନ୍ଦର୍ଯ୍ୟର ସୃଷ୍ଟି ତେବେ କ'ଣ ଶ୍ମଶାନଭୂଇଁ ପାଇଁ ?

ହଠାତ୍ ଉମାର ମନ ବଦଳିଗଲା । ସେ ଦୀର୍ଘଶ୍ୱାସ ଛାଡ଼ି ଆଖି ଫେରାଇଲା ନିଜର ଦେହକୁ । ଯୁବତୀ ସେ । ଦୈନ୍ୟର ତାଡ଼ନା ସହି ମଧ୍ୟ ଯୌବନର ମୋହମୟ କମନୀୟତା ତା'ର ଦେହରେ ଫୁଟି ଉଠିଛି । ତା'ର ସେ ଶୋଭା ଘୋଡ଼ାଇ ରଖିବାକୁ ସମ୍ବଳ ନାହିଁ । ବହୁଦିନର ଛିଣ୍ଡା ଲୁଗାଟା ପିନ୍ଧି ଲାଜରେ ପଦାକୁ ବାହାରିବାକୁ ସେ ସଙ୍କୁଚିତ ହୁଏ ।

ଅଉ ଲାଜ କ'ଣ ! ଶ୍ମଶାନଭୂମିରେ ଯୁବତୀର ନଗ୍ନ ଯୌବନ, ଭଗ୍ନ ସୌନ୍ଦର୍ଯ୍ୟ ଘୋଡ଼ାଇବାକୁ କେହି ଅସେ ନାହିଁ । ଲୁଗା ଖଣ୍ଡେ ନାହିଁ ବୋଲି ସେ କାହିଁକି ଲାଜରେ ସଙ୍କୁଚିତ ହୋଇ ଅଡ଼ହୋଇ ରହିବ ? ତା'ର ସେହି ଯୁବତୀ ଦେହଟା ଦିନେ ତ ଏହି ଶ୍ମଶାନଧୂଳିରେ ମିଶିଯିବ ।

ଦିପହରର ଗରମ ପବନଟା ଶିଵ୍ ଶିଵ୍ ହୋଇ ନଈ ଉପରୁ ବୋହି ଅସିଲା । ଉମା ର ମୁକୁଳା ଅସଂଯତ ବେଶବାସ ଉଡ଼ାଇ ତାକୁ ଅର୍ଦ୍ଧ ନଗ୍ନ କରିଦେଲା । ଉମା କେଶ ସଜାଡ଼ିଲା ନାହିଁ; ତାର ଛିଣ୍ଡା ଲୁଗାଟିକୁ ଟାଣିଅଣି ମୁକୁଳା ଦେହ ଘୋଡ଼ାଇବାକୁ ଚେଷ୍ଟା କଲା ନାହିଁ । କ ପ୍ରୟୋଜନ ? ଦ ଦିନଅ ଦେହ, କ୍ଷଣିକର ସୌନ୍ଦର୍ଯ୍ୟ ପାଇଁ ଏତେ ଯତ୍ନ କରିବା ଦରକାର ନାହିଁ । ଏତେ ସତର୍କ ହେବା ଲୋଡ଼ା କ'ଣ ? ସେ ମୂର୍ତ୍ତିପରି ବସି ରହି ପୁଣି ନିଜ ଚିନ୍ତାରେ ମନ ବୁଡ଼ାଇଲା । ଆଖି ଆଗରେ ଜ୍ୱଳନ୍ତ ବାଲୁକାରାଶି ଉପରେ ମରୀଚିକାର ମାୟା-ତରଙ୍ଗ ନାଚି ନାଚି ପ୍ରବାହିତ ହେଲା—ସତେ କି ତା'ର ମନ ଭୁଲାଇବାକୁ ।

ଘୂର୍ଣ୍ଣିବାୟୁ—ଖଣ୍ଡିଅଭୁତ, ନଈମଝିରୁ ଧୂଳିକଣା ଉଡ଼ାଇ କୂଳକୁ ମାଡ଼ ମାଡ଼ ଅସିଲା । ଉମା ଉଠି ଠିଆ ହେଲା । ପିଲାଦିନେ ଖଣ୍ଡିଅଭୂତ ଡରରେ ପିଲା ସାଥିରେ ଗୋଡ଼ାଇ କାଠିକୁଟା ଧରେ ବୋଲି, ବାପା ତାକୁ କୁଅଡ଼କୁ ଛଡ଼ନ୍ତି ନାହିଁ । ବେଳେ ବେଳେ ସେ ଲୁଚି ପଳାଏ । ହାବୁଡ଼େ ପଡ଼ିଲେ ବାପା ତାକୁ ଡରାଇ କହନ୍ତି—ଭୂତ ଉଡ଼ାଇ ନେବନି ? ଉମାର ମନ ଭିତରେ ସେ ସବୁ ଦୃଶ୍ୟ ଝାପ୍‌ସା ହୋଇ ରହିଛି । ତା'ର ଅଜି ସେ ଚପଳମତି ପିଲାମନ ଖେଳୁଆଳି ବୁଦ୍ଧି ନାହିଁ । ବାପାଙ୍କର ସ୍ନେହ, ସୋହାଗ, ମିଠା କଥାଁ ଲି କଥା; ଏହି ଅକାଶ ପବନ ଭିତରେ କେଉଁଠି ହଜିଯାଇଛି । ମା'ଟି ଥିଲା, ସେ ବି ଅଜି ନାହିଁ । ଯନ୍ତ୍ରଣାସକୁଳା ଦେହଟି ଧରି ଏକା ରହିଛି ସେ ।

ଉମାର ଆଖି ସଜଳ ହେଲା । ସେ ବାଁ ଆଡ଼କୁ ମୁହଁ ଫେରାଇଲା । ଟିକିଏ ଦୂରରେ ନଇକୂଳକୁ ଅଲଗାଟ ଛାଡ଼ି ଯେ ଯେଉଁ ଘଙ୍କା ବଢ଼ିଗଛଟି, ତା'ର ତଳେ ତାର ସ୍ନେହମୟୀ ମା'ର ପିଣ୍ଡ ଲମ୍ବାଇ ଦେଇ ଆସିଥିବେ । ତା'ର ଅମୂଲ୍ୟ ଦେହଟିକୁ ବୋଧହୁଏ ବର୍ତ୍ତମାନ କଲିଆ, କୁକୁର ଟାଣି ଖାଉଥିବେ । ଉମାର ଦେହ ଶୀତେଇ ଉଠିଲା । ସେ ଆକାଶକୁ ଗୃହିଁଲା । କେତୋଟି ଫୁଲଣ ଗୁଣା ମଶାଣି ଉପରେ ଉଡ଼ି ଚକ୍କର ଦେଉଅଛନ୍ତି । ଦୂର କଅଁବାଡ଼ତଳୁ ବାହାରି ଗୋଟାଏ ବିଲୁଆ ମନଖୁସିରେ ଲାଙ୍ଗୁଳ ଫୁଲାଇ ଏଣିକି ତେଣିକି ତରଙ୍ଗ ତରଙ୍ଗ ହୋଇ ଗୃହିଁ ମଶାଣି ଆଡ଼କୁ ଦଉଡ଼ୁଛି । ଇଚ୍ଛା ହେଲା, ଥରେ ତା ମା'କୁ ମଶାଣି ଭୂଇଁରେ ଶେଷ ଥର ପାଇଁ ଦେଖି ଆସିବ । ବଞ୍ଚିଥିବା ଯାଏ ଆଉ ତ ତାକୁ ଦେଖି ପାରିବ ନାହିଁ । ଓଃ ! କି ଅସୁନ୍ଦର, କେଡ଼େ ବିକୃତ, ଭୟଙ୍କର ଦେଖା ଯାଉଥିଲା ସେ ମୁହଁଟା ସକାଳେ । ତା ମା'ର ମୁହଁ କେଡ଼େ ସୁନ୍ଦର । ଦେଖିବାକୁ ଯିବ କାହାକୁ, କ'ଣ ଦେଖିବ । ମାଟିର ଘଟଟା ଭିତରେ ତା'ର ମା ବୋଲି ଯେତେକ ଥିଲା ସେତେକ ଅନ୍ତ ମାୟାପୁରରେ—ଅଜଣା ସ୍ୱର୍ଗରେ ।

ପଛ ଖଡ଼ଖଡ଼ ଶୁଣି ପଛକୁ ଫେରି ଗୃହିଁଲା । ବେତବୁଦା, କଅଁବାଡ଼ ବଡ଼ରୁ ବାହାରି ଜଗୁଭାଇ ତା'ର ଆଡ଼କୁ ମୋହିଛି । ସେ ପ୍ରଥମେ ବିସ୍ମିତ ହେଲା, ପରେ ସଙ୍କୁଚିତ ହୋଇ ଲୁଗାପଟା ସଜାଡ଼ି ମୁହଁ ତଳକୁ ପୋତିଲା । ଜଗୁଭାଇ—ପରପୁଅ । ତା ସାଙ୍ଗରେ ତା'ର ବା କି ସମ୍ପର୍କ ମଣିଷର ଦୁଃଖ ଦେଖିଲେ, ବିପଦ କଥା ଶୁଣିଲେ ସାଧାରଣତଃ ମଣିଷ ସହାନୁଭୂତି ଦେଖାଇବାକୁ ଆହା କରିଥାଏ । ଜଗୁଭାଇ ତାହା ଛଡ଼ା ତା ପାଇଁ ତ ଆଉ ଅଧିକ କିଛି କରି ନ ହିଁ, କରି ପାରିବ ନାହିଁ ମଧ୍ୟ । ଖାଇବାକୁ ନ ପାଇ ପେଟର ଜାଳା ସହି ନ ପାରି ଯେତେବେଳେ ସେ ଛତରରେ ପଶିବ, ଜଗୁଭାଇ ତାକୁ ଅଟକାଇ ରଖି ପାରିବ ନାହିଁ, ପଛରେ ଗୋଡ଼ାଇ ଯିବ ନାହିଁ । ଗାଁର ଅଉ ପାଞ୍ଚଟାଙ୍କ ପରି ସେ ବି ଇଲଇଲା କରି ତା'ର ଯିବା ବାଟକୁ ଗୃହିଁ ରହିଥିବ ।

ଉମାର ପେଟ ଭିତରୁ ଗୋଟାଏ କପଟ ଅଜଣା କୋହ ଉଠିଲା, ରୁଦ୍ଧ ଆବେଗ, ରୁଦ୍ଧ ଅଭିମାନ ସତେ ଯେପରି ଲୋତକ ଛଳରେ ତା'ର ଦୁଇ ଆଖିରୁ ଝରି ପଡ଼ିଲା । ସେ ଆଖି କୋଣରେ ତା'ର ଜଗୁଆଳକୁ ଚାହିଁଲା— କେଡ଼େ ମଳିନ ବେଶ । ଧୂଳିରେ ଦେହଟା ଧୂସର ହୋଇଛି । ମୁଣ୍ଡର ବାବୁରି ବାଳ ଝଡ଼ରେ ଶୁଖି ପବନରେ ଅଲଗା ହୋଇଛି । ମୁହଁ କଳାକାଠ ପଡ଼ିଛି । ରକ୍ତଚନ୍ଦନଟା ନାଲି ଆଖି ଦିଟା ଭ୍ରୂଲତା ତଳକୁ ଦି ଅଙ୍ଗୁଳ ପଶି ଯାଇଛି, ଗାମୁଛ ଖଣ୍ଡି କାନ୍ଧରେ । ହାତରେ ଗୋଟାଏ ଠେଙ୍ଗା ।

ଜଗୁ ପାଖକୁ ଆସି ଉମାକୁ ଚାହିଁଲା—ଏ କ ବେଶ । ଦାଣ୍ଡର ଭିକାରୁଣୀ ପରି ମଳିନବେଶ । ପିନ୍ଧିଲା ଲୁଗାଟିର ଅବସ୍ଥା ନାହିଁ— ସାତ ଗଣ୍ଠି । ତଥାପି ଦୁର୍ବଳ ଦେହଲତାଟି ଭଲ କରି ଆବୃତ କରିବାର ଉପାୟ ନାହିଁ । ଦରଫୁଟା ଝଡ଼ମଉଳା ମଲ୍ଲୀଫୁଲଟି ଝାଉଁଳି ପଡ଼ିଛି । ଦିନ କେଇଟାରେ ଏ କ ପରିବର୍ତ୍ତନ । ଉମା—ତା'ର ଧର୍ମର ଠିକ ଭଉଣୀ, ଉମାକୁ ଏପରି ଅବସ୍ଥାରେ ଦେଖିବ ବୋଲି ସେ ଆଶା କରି ନ ଥିଲା ।

ଉମାହିଁ ପ୍ରଥମେ ମୁହଁ ଖୋଲି ପଚାରିଲା, ତମେ ଏ ଝଡ଼ରେ କେଉଁଠୁଁ ଆସିଲ...... ?

ଜଗୁ ବ୍ୟଥିତ ହେଲା ପରି ଦୁଃଖଭରା ଆଖିରେ ତାକୁ ଅନାଇ ରହି କହିଲା, ସବୁ ତ ମାମୁଁ ଘରୁ ବାହାରି ଆସୁଛି । ଦେଶର ଅବସ୍ଥା କହିଲେ ନ ସରେ । ଖାଇବାକୁ ନ ପାଇ ନାନା ପ୍ରକାର ରୋଗ ବୈରାଗରେ ଲୋକେ ମରି ମଶାଣିରେ ସନ୍ତୁଳନ୍ତି । ଯେଉଁ ଗାଁରେ ପଶିଲି ଖାଲି କାନ୍ଦବୋବାଳି ପଡ଼ିଛି । ଶୁଣିଲି, ଖାଇବା ବିନା ଲୋକେ ବାଟଘାଟରେ ଖପରା ଧରି ପଡ଼ିଛନ୍ତି । ଦେହରେ ହାଡ଼ ଦିଖଣ୍ଡ ଛଡ଼ା ରକ୍ତ ମାଂସର ଦେଖା ନାହିଁ । ଏସବୁ ଦେଖି ମୋର ମନ

ବଡ଼ ଉଚ୍ଛନ୍ନ ହେଲା । ଗାଁର ହାଲଚାଲ କ'ଣ ଜାଣିବାକୁ ବ୍ୟଗ୍ର ହୋଇ ଧାଇଁଛୁ । ଅଛ ଉମି, ଅମର ଏ ଗାଁ ମଶାଣିରେ ଗୋଟାଏ ଶବ ଦେଖି ଆସିଲି—କୁକୁର, ଶାଲୁଅ ଓଟରି ଓଟରି କରି ଖାଉଛନ୍ତି । ଦେଖିବାକୁ ପାଖକୁ ଯାଉଥିଲି, ଗୋଟାଏ ପାଗଳା କୁକୁର ଭୁକି ଭୁକି ହୋଇ ଧାଇଁ ଆସିଲା । ମୁଁ ତାକୁ ଠେଙ୍ଗା ଦେଖାଇ କୌଣସି ମତେ ଉଦ୍ଧାର ପାଇ ପଳାଇ ଆସିଲି । ମୁଁ ମାମୁଁ ଘରକୁ ଯିବା ବେଳେ ଆମ ଗାଁରେ ତ କେହୁ ସେପରି ବାଧକା ପଡ଼ି ନ ଥିଲା, ହଠାତ୍ ଏପରି କ'ଣ ହୋଇ କଏ ମରିଗଲା କେ ?

ଉମା ଆଉ କି ଉତ୍ତର ଦଅନ୍ତା ? ସେ ଯାହା ଅନୁମାନ କରୁଥିଲା ତାହାହିଁ ଘଟିଛି । ତା'ର ନିସ୍ତବ୍ଧ ଆଖି ଦଓଟି ପୁଣି ଲୁହରେ ପୁରି ଉଠିଲା । ସେ ଅସ୍ୱଚ୍ଛ ଦେହକୁ ଅଉଜାଇ ପକାଇ ଦୁଇ ହାତ ପାପୁଲିରେ ମୁହଁ ଘୋଡ଼ାଇ ଭୁଣ ଭୁଣ କାନ୍ଦିବାକୁ ଲାଗିଲା ।

ଜଗୁର ଆଖି ବିସ୍ମୟରେ ବିସ୍ଫାରିତ ହୋଇଗଲା । କାହାକୁ ଖୋଜିଲା ପରି ଚାରି ପାଖକୁ ଚାହିଁ, କ'ଣ ମନରେ ପାଞ୍ଚି ବଡ଼ ବ୍ୟସ୍ତ ହୋଇ ଉମା ପାଖକୁ ଘୁଞ୍ଚିଗଲା । ତା ପିଠିରେ ହାତ ରଖି ଉଦ୍‌ବିଗ୍ନ ହୋଇ ପଚାରିଲା, ଉମି, ଉମି, କୋଉ କାହିଁ କେ......?

ଉମାର ରୁଦ୍ଧ ବେଦନା ଅଶ୍ରୁ ପାଇ ଉଚ୍ଛୁଳି ପଡ଼ିଲା । ସେ କିଛି ଉତ୍ତର ନ ଦେଇ କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲା ।

ଜଗୁ ଆଉ ସମ୍ଭାଳି ପାରିଲା ନାହିଁ । ଘଟଣା ଜାଣିବା ଆଗରୁ ତା'ର ପେଟ ଭିତରଟା ଯେପରି କାନ୍ଦି ଉଠିଲା । ଆଖିରେ ଲୁହ ଛଳ-ଛଳ ହେଲା । ସେ ଉମାର ମୁହଁକୁ ଟେକି ଧରି ବସିଲା, କରୁଣ ସ୍ୱରରେ ପଚାରିଲା କହ ଉମି...... ।

କିନ୍ତୁ ଜମାର ଉତ୍ତରକୁ ଆଉ ସେ ଅପେକ୍ଷା କରି ପାରିଲା ନାହିଁ । ଜମାର ଲୁହଧୁଆ ମୁହଁ, ତା ସଜଳ ଆଖିପତା, ଶୁଖିଲା ଓଠରୁ ସେ ତା'ର ପ୍ରଶ୍ନର ଉତ୍ତର ପାଇଲା । ତେବେ ସେ ମଶାଣିଭୂଇଁରେ ଯାହାର ଶବ ଦେଖି ଆସିଲା ସେହି ତା'ର ବୋଉ । ଏତେ ଶୀଘ୍ର ଏପରି ଭାବରେ ନିଅଶ୍ରା କରି, ବାଘପଲ ଭିତରେ ଅସହାୟରେ ଏକୁଟିଆ ଛାଡ଼ି, ଯା, ଦିଅରଙ୍କର ଅତ୍ୟାଚାରରୁ ଉଦ୍ଧାର ପାଇ ଖସି ଚାଲିଗଲା । ଜମା ଅନାଥ ନିରାଶ୍ରୟ । ଘର ଆଜି ତାର ଶୂନ୍ୟ ।

ଜଗୁର କଣ୍ଠ ରୁଦ୍ଧ ହୋଇ ଆସିଲା । ସେ ଜମାର ହାତ ଦିଓଟି ଧରି ତଳକୁ ଚାହିଁଲା । ମାଟିଆ ଦ'ଠା ଉଗୁଡ଼ା ହୋଇଛି । ଦୁଃଖ ସଙ୍ଗେ ସଙ୍ଗେ ରାଗରେ ତା'ର ଦେହ ସାରା ଥରି ଉଠିଲା । ଓହୋ ! ଲୋକଙ୍କର ଦୟା ମାୟା ଟିକିଏ ନାହିଁ । ଦୁଃଖରେ ଅଧା ପାଗଳ ହେବା ତେଣିକି ଥାଉ, ଆଉ ଏ ନିଘଞ୍ଚ ଖରା, ନିଛାଟିଆ ଜଙ୍ଗଲ ଦିପହରଟାରେ ଏକୁଟିଆ ମଶାଣି ଘାଟକୁ ପାଣି ପାଇଁ ତାକୁ ପଠାଇଛନ୍ତି । ନିଅଁଗୁଣ୍ଡାପରି ତତଲା ବାଲିରେ ଗୋଡ଼ ଦେଲେ ଫୋଟକା ହେଉଛି । କି ନୃଶଂସ ! ଏଡ଼େ ବଡ଼ ବିପଦ ଭିତରେ କି ଗରିବ ଜମାର ପରିତ୍ରାଣ ନାହିଁ !

ଜଗୁର ଛାତି ଭିତର କାନ୍ଦି ଉଠିଲା । ସେ ଉତ୍ତେଜିତ ହୋଇ ଜମାର ସଜଳ ମୁଖକୁ ଛାତି ଭିତରକୁ ଟାଣି ଆଣି ଭଙ୍ଗା ସ୍ୱରରେ କହିଲା, ଭଉଣୀ,ଭଉଣୀ, ଜମି ! ତୋର ବୋଉ ସିନା ମରିଛି, ତୋର ଜଗୁଭାଇ ତ ବଞ୍ଚିଛି ।

ଜମା ଧୀରେ ଧୀରେ ଜଗୁର ଛାତି ଉପରୁ ମୁହଁ ଟେକି ବେଳଣି କାହିଁକି ତାର ଅଶ୍ରୁପୂର୍ଣ୍ଣ ଆଖି ଦିଓଟିକୁ ଚାହିଁ ରହିଲା ।

( ୩୪ )

# ପରଜା

ଗୋପୀନାଥ ମହାନ୍ତି

ଦୁଇ ପାଖ ପାହାଡ଼ର ଧାଡ଼ି ଧାଡ଼ିକା ତେଜ କେତେ ଗଦା ଗଦା ହୋଇ ମେଘର ସ୍ତର ସଜା ହୋଇ ରହେ ଶ୍ରାବଣର। କେତେ ବର୍ଣ୍ଣର ସେ; ସେଇ ଦିଗ୍‌ବଳୟ ସେପାରିରୁ ମେଘର ଧୂଆଁ ଝୁସି ଝୁସି ଆସେ, ଅଜାଡ଼ି ଦେଇ ଯାଏ। ଭେଳିକି ଲଗାଇଲା ଭଳି ଘଡ଼ି ଘଡ଼ିକେ ଦିନର ରଙ୍ଗ ବଦଳୁଥାଏ; ପାଉଁଶିଆ, ମୁଗୁନିଆ, କସସ୍ୱ, ନେଳିଆ। ବଡ଼ ବଡ଼ କଳା-ମେଘ ଝୁସି ବୁଲେ। ତା'ର ଧଳା, ନାଳ ଧଡ଼ି, ଛଢରେ ଛିଗ ଛିଗ ହୋଇ ଫଟା ଫଟା ଗାର, ଆକାଶର ଏ ପାଖରୁ ସେପାଖ।

ଢିଏ ଯେପରି ତୂଳି ଧରି କ'ଣ ଆଙ୍କିବାକୁ ଯାଉ ଯାଉ ଆପଣା ଭୁଲି ହୋଇ ମନର ଖିଆଲ ଆଙ୍କି ଯାଉଛି, କେତେ ପ୍ରକାର ରୂପର ଛବି କେଉଁଠି ତୂଳି ବସ୍ତି ଯାଉଛି, କାଳି ଝରି, କେଉଁଠି ହାଲୁକା କଳା, କେଉଁଠି ଧୋବଫରଫର ଛେଚରୁଛି ବରଷା, କେତେବେଳେ ଧୂଆଁଳିଆ, କେତେବେଳେ ଟାଉଁସିଆ ଧଳା।

ସେ ଚିତ୍ର ସ୍ଥିତିବାନ୍ ନୁହେଁ, ସେଥିରେ ଗତି ଅଛି, ଅସ୍ଥେ ଆପଣାକୁ ଭାଙ୍ଗୁଛି ଗଢ଼ୁଛି—ସେ ଆପେ ବଦଳୁଛି।

ରୁପରେ ରୁପର ଖେଳ, ତଳେ ପାହାଡ଼ର ଅଭିଷେକ । କେତେ-ବେଳେ ହଣ୍ଡା କଳା ମେଘର କଣାବାଟେ କେଳଗ୍ଗ୍ କସଗ୍ଗ ମୁହଁରେ ସୂର୍ଯ୍ୟ ଟିକିଏ ଅନେଇ ଦେଇଯାଏ । ସେଇ ତରୁଣ ଅଲ୍ପ ହସରେ ତଳର ସବୁ ପୁଣ୍ଡିତା ଉପରେ । ବଳର ଧୂଅ ପଡ଼ୁଛି, ପାହାଡ଼ ଉପରୁ ମଣିଷଚଲ୍ଲ ବାଟରେ ଗଡ଼ ଗଡ଼ ଝରଣା ଓହ୍ଲାଇ ଗୁଲିଛି । ସାରୁଙ୍ଗା ପାହାଡ଼ରେ ରୂପାର ପଇତା ପରି । ଗାଁ ଭିତରୁ ତଳକୁ ହଳଦିଆ ଧୂଅ ବୋହି ଗୁଲିଛି । ଗୁରିଆଡ଼େ ଖାଲି ଧୂଅ ଆଉ ପାଣି ।

ଘଡ଼ଘଡ଼ି ମାରେ । କଇମୁଣ୍ଡ ଡାକେ । ଝୋଲ୍ଲକୂଳରେ ଶୀତେଇ ଶୀତେଇ ରୁମ ଠାକୁର ଠାକୁର କଣ୍ଟାଳିଆ ହୋଇ ଫୁଲ ଫୁଟେଇ କଦମ୍ବ ଠିଆ ହୋଇ ରହେ, ତଳ ପାଣିରେ ରୂପ ଦେଖି ହୁଏ । ଝୋଲ୍ଲ ସେ ପାଖରୁ ତୋଫାନ ପରି ଘୁଘୁ ଶବ୍ଦ ମାଡ଼ ଆସେ । ପାଣି ଫୁଲିଛୁଗ୍ଗ ମରେ, ପାଣିରେ ଫେଣ ଆସେ । ଗୁହୁଁ ଗୁହୁଁ ଏକାଥରକେ ଅକାତ ପାଣି କେଉଁ ଡଙ୍ଗରୁ ବୋଲି ବଜ୍ରକ ବେଗରେ ଛୁଟି ଆସେ; ମୁହଁପାଖେ ବଡ଼-ବଡ଼ ଗଛ ଡ଼ାଳ ବୁଲେଇ ବୁଲେଇ ପିଟିପିଟି, କେତେ ଘିବଜନ୍ତୁ ଭସି ଗୁଲି ଯାଆନ୍ତି । କେତେ ଜୀଅନ୍ତା—କେତେ ମଲା ।

ଦରମଲ୍ଲ ସୂର୍ଯ୍ୟର କରୁଣ ଛାଇ ପୃଥିବୀରେ ପଡ଼େ । ସବୁ ବିମର୍ଷ ଦିଶେ । ଯେପରି ଏତେ ପୁଣ୍ଡିତା ଉପରର ଅଜ ତଳର, ସବୁ ଖାଲି ଦୁଃଖ ।

ବେଳ ବୁଡ଼େ, ମେଘର କେଉଁ ଫାଟବାଟେ ଛକ ଛକ ହୋଇ ଶେଷ ଶଗ୍ଗ ଉଙ୍କି ମାରି ଯାଏ । ଦୂରର ବରଷଣା ମେଘ ଅସ୍ତରେ ରଙ୍ଗ ଦେଇ ଯାଏ । ଗୁରିଆଡ଼େ ପାଣି କଅଁ ପରି ଦିଶେ । ଗୋଳ ପାଣିର ଲହିରରେ ରକ୍ତର ରେଣୁ ମିଶି ଯାଏ । କସ୍ତୁରୀ ଜଙ୍ଗଲ କରେ କରେ ଗୋଟିକିଆ ଡେଙ୍ଗା ଶାଳଗଛ ମୂଳେ ଗମ୍ଭୀର ଝୋଲରେ କାଳିପାଣି ଶୋଇ ରହେ ।

ନା'ଲ୍ ଫିକା ପଡ଼ିଅସେ । ଖାଲ ଭିତରକୁ ଗଛ ଧାର କଟିଣ୍ଡପଡେ, ଦୁରଦୁରକୁ, ପାହାଡ଼ର ମଥାନରେ ଜାଙ୍ଗରେ, ଫାଳେ ଅନ୍ଧାର, ଏକାଠି ଅଲଗା ହେଲାପରି ସବୁଜା ନାଲ୍, ମଝିରେ ବଡ଼ ଜଳାଶିଖ ।

ଅନ୍ଧାର ପଡ଼ ଅସେ, ପାହାଡ଼ର ଡାଲ୍ ଏ ଡାଲ୍ ଏ କେତେ ଖୁଣ୍ଟା, ଗଛ, ବଡ଼ପଥର ବଣଜନ୍ତୁ ପରି କଳା କଳା ଦିଶନ୍ତି । କିଛି ବାରି ହେଉ ନ ଥିଲା ଯେଉଁଠି ସେଠି ଜଣାପଡେ ସତେ ଅବା ବାର୍ହାର ମୁଣ୍ଡ, ଭାଲୁର ଫୁଲ୍‌କା ଦେହ, ଅଜଗରର ଲାଞ୍ଜ ଲମ୍ବ ।

ମୟୂର ପାଟି କରି କରି କରି ବଡ଼ଗଛକୁ ଚଢ଼ିଯାଆନ୍ତି । ବେକକୁ ବେକ ଝଞ୍ଜି ପକ୍ଷୀକୁ ପକ୍ଷୀ ବଛେଇ ଦେଇ ଜାଳସର ଉଡ଼ି ଗୁଳି ଯାଆନ୍ତି । କମେ ବଣଦେଶରେ ଶବ୍ଦ କମେ । ହଠାତ୍ ପାଣି ସୁଲ୍ ସୁଲ୍ ବେଢ଼ା କ୍ଷେତ ଭିତରୁ ପୁରୁଷେ ପୁରୁଷେ ଉଷ୍ଣ କୁତ୍ରର ଚଡ଼େଇ ଏକାଥରକେ ଶଙ୍କିଲ ହୋଇ ଚିତ୍କାର କରନ୍ତି ପାହାଡ଼ ମନ୍ଦିରରୁ କୁହା ବୋବାଏ, ଅରକ୍ଷିତ, ଘଣ୍ଟା ଦେଖି ଦେଖି ସମୟର ବ୍ୟବଧାନ ଠିକ୍ ରଖିଲା ପରି । ସଞ୍ଜ ବୁଡ଼େ । ଦିନ ଗୁଳି ଯାଏ ।

ପତଳା ଅନ୍ଧାରରେ, ଗାଁ ଗୋଠାକର ଧୂଆଁ ଏକାଠି ହୋଇ କେତେବେଳେ ଛାତ, ତୋଟା ଉପରେ ଲହଡ଼ି ଖେଳୁଥାଏ, ଗାଁ ଗୁରିପାଖେ ଓଦା ଭୂଇଁ, ବେତା ନଈ (ବିଲ) ଉପରୁ କୁହୁଡ଼ିର ବାମ୍ପ ଉଠେ, ଗୁରିଅଡ଼ ହୋଇଯାଏ କୁହୁଡ଼ିଆ ।

ଅନ୍ଧାର, ଖାଲ ଧୂଆଁ ଳିଆ ସବୁ । ମଝିରେ ଏଠି ସେଠି ଗୋଟିଏ ଗୋଟିଏ ଗାଁର ନିଆଁ । ଗୁରିଅଡ଼୍ଅନ୍ଧାର କମେ ଗୁପି ଗୁପି ଗ୍ରାସ କରି ଅସେ । ଗାଁର ନିଆଁ ନିଭିଯାଏ, ଖାଲ, ଖୋଲ, ପାହାଡ଼, ଅଜାଣ ଅବୋଧ୍ୟ ଖାଲି ଅନ୍ଧାରର ହାଣ୍ଡିକଳା । କିସଣ ଲାଗେ ।

ଜାଲ୍ ଗୁଟ୍ ହୋଇ ବସି ରହିବେ । ରହିଲେ ଲୋକ କମେ ନାହିଁ, ବଢ଼େ ।

ଶ୍ରେଷ୍ଠ ପଇଟି ପାଖେ ପ୍ରତିଦାନ ପାଇବା ତା'ର ଅଭ୍ୟାସ ହୋଇ ଯାଇଥିଲା, କିନ୍ତୁ ହେଲେ ନୂଆ ପାଇବ', ଆଉ ଆଜି ଏ କେତେ ଦିନ ହୋଇଗଲା—ଖାଲି ଛେଚା ଲୁଟି ବରଷା—ଅଜ ଛଟପଟ, ଭିତରେ ବାହାରେ, ସବୁଠି ।

ଦିନଯାକ ଲୁଳକାମ, ବର୍ଷାରେ ଭିଜିବା ବୁଡ଼ିବା, ସଞ୍ଜରେ ଅବସାଦ, ଏବୃଷ୍ଟିଅ ଖାଲି । ବର୍ଷାର ଏତେ ଚଣ୍ଡ ପୂର୍ଣ୍ଣତା, ମନ ଭିତରର ସବୁ ଫାଙ୍କ ସବୁ ଖାଲି ଜାଗା, କେବଳ ପଦାକୁ ବାହାର କରେ, ବର୍ଷାର ଶବ୍ଦରେ ଦଣ୍ଡେ ମନଗଭୀରର ସବୁ ଅପୂର୍ଣ୍ଣତା', ସବୁ ଅଭାବ । ପତ୍ରୁଣା ଦରଜ ପୁଣି ବାହାରେ, ଫମ୍ପା ଅସ୍ଥିକୁଟା ଠଣକ ଉଠେ ହୁହୁ-ହୁସିଅ ପବନରେ ମଶାଣିର ମୁଣ୍ଡହାଡ଼ ପରି ।

ନ ଜାଣି କେଉଁଠାଣି ସାଂରେ ହୁଡ଼ମୁଣ୍ଡରେ ବସି ସୁ ସୁ ପବନରେ ତଳୁ ତଳ୍ର ଫଟା ବର୍ଷାତି ସଙ୍ଗାଢ଼ ବାନ୍ଧି ବେଳେ ଥରେ ଗୃହପାଖକୁ ଅନେଇଲେ ଦଣ୍ଡେ, ଦୂର ପାହାଡ଼ ଉପରେ ଖଣ୍ଡ ଖଣ୍ଡ କଳା ମେଘ ଉଠୁଛି, ଅକାଶଯାକ ମେଘ, ହାଲୁକା ଧଳା କଳା । ପାହାଡ଼ର ବଡ଼ ବଡ଼ ମୁଣ୍ଡିଆ ପରି ବଡ଼ ବଡ଼ ମେଘଖଣ୍ଡ ତଳୁ ଉପରକୁ, ଉପରୁ ତଳକୁ ହେଉଥାଏ, ଅକାଶବ୍ୟାପୀ ତୋଫାନରେ ଉହୁଲିଲା ପରି ଗୋଳିଆ ପାଉଁଶିଆ ସମୁଦ୍ର ତଳେ ବଦଳି କଳା ନେଳ; ତହିଁରୁ କେତେ ପାହାଡ଼ ଉଠେ, କେତେ ମେଘର ପାହାଡ଼ ଉପରୁ ଢଣ୍ଡିପଡ଼ି ସେହି ସମୁଦ୍ରରେ ବୁଡ଼ିଯାଏ, ମେଘ ବରଷେ, ଦୃଷ୍ଟିର ପରସର ଝାପ୍ସା ହୋଇ ଆସେ, ଖାଲି ତେଢ଼ା ତେଢ଼ା ମେଘର ଧାର ମୁହଁ ଉପରେ ଠପର ଠପର ପିଟି ଦେଇଯାଏ ।

ଝଡ଼ ବରଷା ଶୀତକାଳରେ ସବୁ ଖାଲି କାନ୍ଦୁଥା ଲାଗେ । ଏତେ ଖଇ ଖଟି ଦିନଗୋଠାକର ଖୋସିକି ଅଧା ବସ୍ତ୍ରରେ ମିଳେ, ପେଟ

ପୂରେ ନାହିଁ, ପିଠିକୁ କଷ୍ଟ ହୁଏ । ଯେତେ ଧନ ଏକ୍ସପର୍ ସୁଖ ଦୁଃଖରେ ଗଡ଼ି ଗଲୁଥିବ, ଥରେ ସ୍ୱାଚ୍ଛଲ୍ୟ ଦେଖିବ ପରେ, ଥରେ ମଜଲିସ୍‌ରେ ସେଓ୍ ଯାଇଟିରେ ବୁଲି ଅସିଲ ପରେ, ସାନ ଅଶ୍ରବ ଦଶୁଛି ବଡ଼ ହୋଇ ବଡ଼ ଅଶ୍ରବ ତ, ଖାଲି ହତାଶା ।

ସଞ୍ଜବେଳେ ମନ୍ଦ ସାପ ପରି ଜାଲି ପଡ଼ିରହେ । ଧାଂଡ଼ୀ ବସାଘରକୁ ଯିବାକୁ ଡର ମାଡ଼େ । କାହିଁକି ବୃଥା । ଘରେ ଶୋଇଥିଲେ ସ୍ୱପ୍ନରେ କେତେ କେତେ ବେଳେ ନିଦ ଭାଙ୍ଗିଯାଏ, ଦେଖେ ପାଖରେ ବାଲି ନାହିଁ । ପଦାକୁ ବାହାରେ । ଦାଣ୍ଡଘରେ ଦେଖେ ବୁଢ଼ା ଏକୁଟିଆ, ପାଖରେ ନନ୍ଦବାଲି ନାହିଁ । କବାଟ ଖୋଲି ପଦାକୁ ଦେଖେ । ଖାଲି ପବନରେ ସୁ ସୁ—ଖାଲି ବାହାର ଫୁସ୍ ଫୁସ୍ କଥା । ଫେରି ଆସେ । ନିଦ ମାଡ଼େ ନାହିଁ ।

ଯେତେବେଳେ ନନ୍ଦବାଲି ଥାଏ, ବାଲି ଥାଏ, କେଉଁ ଫିକରରେ ହେଲେ ଦୁହେଁ ଗୋଟାଏ ପାଖକୁ ଉଠି ଯାଆନ୍ତି, ଜାଲି ଏକୁଟିଆ ପଡ଼ିରହେ ।

କାଉ ପରଜା ଅବସର ସମୟରେ ଖବର ବୁଝି ଆସେ, ପୁବପଣ ଖାଲିଆ ଖାଲିଆ ଆଖିରେ ଅନେଇଁ ରହେ । ଯଦି ସେ ଉପରେ ପଡ଼ୁଥାନ୍ତା ହୁଏ ତ ଜାଲି ତାକୁ ସହି ପାରୁଥାନ୍ତା । ସେ ଖାଲି ତପସ୍ୟା କରେ । ତହିଁରେ ତା'ର ରୂପ ହେବ, ଜାଲି କହେ 'ହଁ' ।

ଦିନେ, ଦିନେ, ଧାଂଡ଼ୀ ବସାଘରେ ଶୋଇ ରହିଥିବା ବେଳେ ଅନ୍ଧାର ରାତିରେ ଧାଂଡ଼ୀ ବସାଘରୁ ଢୁଙ୍ଗୁଢୁଙ୍ଗା ଡାକେ । ପଦାର ଶୀତ ସାଙ୍ଗେ କଣ୍ଢଆ କରି ଦେହର ରକ୍ତ ଗରମ ହୋଇ ଫୁଟେ । ସାତ ପାଞ୍ଚ ଧାଙ୍ଗ୍ରା କଳାବୂତ ପରି ଧାଂଡ଼ୀ ବସାଘର ଉପରେ ଚଢ଼ାଉ କରନ୍ତି । ରନ୍ଧା ମଦ ପାଖରେ ଥାଏ । ଘୋର ଅନ୍ଧାର ଅଉ ମେଘ ଘଡ଼ଘଡ଼ି ।

ଜଣକୁ ଅପଣାକୁ ଭୁଲାଇ ଦିଏ । ଭୂତର ଭେଦାଭେଦ ଘେନି ପାଇନି ଛୁଟାଇ ଦେଇଛି, କଳା ବସ୍ତୁଟି ଭିତରେ ପାପ ପୁଣ୍ୟ ଘୂରି ମାରନ୍ତି । ସବୁ ଏକାକାର ହୁଏ ।

ଖାଲି ଦିନେ ଦିନେ । କିନ୍ତୁ ସକାଳ ଗାଢ଼ହେଲେ ଜଣେ ଅଗପର ଶୁଣିବ ଠାଇ ଠାଇରେ ଗପ ରହିଥାଏ, ନାଲିଟିଅଣା, ସିଧର ରୂପ ଭିନେ, ଦିନର ଅନ୍ୟ ପ୍ରକାର । ଅନ୍ୟ ସିଧର ଫୁର୍ତ୍ତିରେ ଅଭାବ ଘୂଞ୍ଚେ ନାହିଁ ମନର କି ଦେହର । ସେଇ ଫଟା ଲେଞ୍ଜିଆ ପରଜା, ଫୁସ୍ପା ପରଜା ଦିନ ବେଳେ ବି ଦଶା ଚଡ଼ନ୍ତି, କିନ୍ତୁ ସେମାନେ ଅତି ଉଦାର, ଅତି ଖୋଲା ମେଲା । ସେଇ ଜଣେ ଅଡ଼କୁ ଅଣିମିଟିକା ମାରିଦେଇ ତାହାର ଅଗରେ ବୁଲି କି ମିଶିଯାଇ କି ଭିଡ଼ିଯାଇ କାହାକୁ ଦେଖି ତା ପଛେ ପଛେ ଧାଇଁ ଯାଆନ୍ତି ସେଠିକି ଅଗ୍ରହରେ । ଦେହ ଜଳିଯାଏ । ସିଗ ହୁଏ । କେତେ ସିଧ ଜଣି ମଜା କରିଦିଏ, କେଉଁ ହୁଏ, କଥା ଯାଏ ପିଟାପିଟି ହୈବା ଉତ୍ସବ ପର୍ଯ୍ୟନ୍ତ । ଫଟାଲେଞ୍ଜିଆକ ଫୁସ୍ପାପରଜା ଦିକାର କରନ୍ତି ନାହିଁକି ସଜେଇ ହୁଅନ୍ତି ନାହିଁ; ଢୋଲେ ଢୋଲେ ମଦ ପିଇ ଦେଇ ସ୍ୱପ୍ନରେ ପାରି ସିଅନ୍ତେ ଛୁଟନ୍ତି । କାଲିର ମନଗମ୍ଭୀରରୁ ବାହାରେ ଅନୁଶୋଚନା । ଷଡଟା ଏକୁଟିଆ ତାଅରେ । ଲାଭ ଅଉ ସମସ୍ତଙ୍କର । ଏ ଖେଳରେ ପଇସା ରୋଜଗାର ହୁଏ ନାହିଁ । ଖାଲି ତୃଣ ସଗଗ, ସେ ପୁଣି ଅଳ୍ପ ସମୟ ପାଇଁ ସେଥିରେ ଜୀବନ କଟିବାର ବ୍ୟବସ୍ଥା ହୁଏନାହିଁ । ଫଟାଲେଞ୍ଜିଆ କି ଫୁସ୍ପା ପରଜା କେହି ଉଦ୍ବିଗ୍ନ ହୁଅନ୍ତି । ଟୋକା ବାନ୍ଧିଦେଇ ବସି ହୋଇ ପଡ଼ିବାକୁ । ତାଙ୍କର ସ୍ମୃତି ଖୁବ୍ ପତଳା ଅଉ ସାଧା ।

ବାଟରେ କାହାର ସିଙ୍ଘାଣିନାକୀ ପିଲାଟିଏ ଦେଖିଲେ ଭାଟେଖଇ ଫକେଇବାକୁ ମନେ ହୁଏ । ତା ସାଙ୍ଗେ ଟିକିଏ ହସ ଖେଳ କଲେ ଖୁସି ଲାଗେ । ତାକୁତ୍ର ପିଲାକୁ ଗେଲ କରି ଲୁହ ପୋଛି ଦେଇ ଛାତିରେ ଜାକି ଧରିଲେ ମନଟା ଥଣ୍ଡା ଲାଗେ, ଗେଲ କରୁ କରୁ ଦେହ ଭିତରେ ଯେପରି କି ଚନ୍ଦନର ଧାର ବୁହେ । ତା ବସ୍ତ୍ରର କେତେ ଠୋକା କେଉଁ ଗାଁରେ

ପିଲାର ମା ହେଲେଣି । କେହି କୁଆଡ଼େ ନ ଥିଲା ବେଳେ ସାନ ପିଲାକୁ କୁଣ୍ଢେଇ ଜିଲି ଖେଳ କରେ । ହସି ହସି ଥଣ୍ଟା କଲା ପରି କାନ ପାଖେ କହେ, "ମତେ ମା ବୋଲି ଡାକ, ଖଜା ଦେବି ।"

କେତେ ପ୍ରକାର ଚିନ୍ତା ତ ଆସେ, ଚିନ୍ତା ଆଉ ସ୍ୱପ୍ନ, ସେଥିରେ ଶାନ୍ତି ନାହିଁ, ମନଟା କହୁଚି ହଏ ।

ହାଁ ହାଁ ହୋଇ ଏହିପରି ବୁଲୁଥିଲାବେଳେ ଥରେ ଆସି ପହଞ୍ଚିଲା ମଧୁଘାସି ଯିଏ ପୂର୍ବରୁ ଲଗାଏତ୍ କେତେଥର ଗୁଡି ଅଧରେ ଅନ୍ୟମାନଙ୍କ ସାଙ୍ଗେ ମିଶି ସେ ଫୁର୍ତ୍ତି କରିବାକୁ ଆସିଛି । ଚିନ୍ତା ପଡ଼ିଚ ଥିଲା ଜିଲି ସାଙ୍ଗେ, କେଳବୁଡେ କାମଧନ୍ଦା ପରେ ମଧୁଘାସି ଆସି କହିଲା, "ଏ ଜିଳି, ଆ ଟିକିଏ ମୋ ସାଙ୍ଗେ, କାମ ଅଛି ।"

କାଠପାଖ ଆମ୍ବଗଛ ତଳକୁ ଡାକି ନେଇ ମଧୁଘାସି କହିଲା, "ଦେଖିଲୁ, ଏ ଦୋରଅ ଜାମାଟି କେଡ଼େ ସୁନ୍ଦର ହେଉଛି, ଅଉ ଏ ଛତା ଖଣ୍ଡ । ଆମପରି ଲୋକଙ୍କର ମୁଣ୍ଡ ଅଛି କି ଏମିତିଆ ମାନ କରିବାକୁ ? ଟେବେ, ହଁ, ବଡ଼ ବଡ଼ ଲୋକ ଦୟା କଲେ କାହିଁ ନ ମିଳିବ ତା କୁହେଁ । ହଁ, ତୋ କଥା କହୁଥିଲି, ସେଇ ଗାଇଟିକୁ ଯାଉଥିଲି, ସେଠି ଭୂଜ ହେଲେ ଟଗଜଗାର କରୁଥିଲି । ଏବେ ଖାଦ ମଧରେ (ମଧ୍ଯ) ଫାଟିଗଲାଣି, ମୁଣ୍ଡକୁ ତେଲ ଟିକିଏ ମିଳୁ ନାହିଁ । କେଡ଼େ ସୁନ୍ଦର ଗୋରା ରଙ୍ଗ ହୋଇଥିଲା, ଦେହ କଳା ପଡ଼ି ଆସିଲାଣି ।"

ଜିଲି ମୁହଁକୁ ତଳକୁ ପୋତି ଠିଆ ହୋଇ ଦୀର୍ଘଶ୍ୱାସ ମାରୁଥାଏ । "ହଁ, ଏବେ ଶୁଣ, ଏ ଜାମା ଛତା ଏଠା ସେଠା, ସବୁ ମତେ ଦେଉଛି ଆମ ଗାଁର ଯେଉଁ ସାହୁକାର ଅଛି ସେ, ତୋର ସ୍ୱଭ ଦୁଇଟା ଏବେ ମଧ ତା ପାଖେ ଗୋତି ଅଛନ୍ତି; ତୁ ଜାଣି ନ ଥିବୁ କି । ବେଶି ପଇସା ଅଛି ତା'ର, ସୁନା ଗଦା ଗଦା ରୁପା ରୁପା, ଅଉ ଏଡ଼େ ଭଲ ଲୋକଟିଏ,

ଯାହା ତାକୁ ମାଗିବ ସେ ତା ଦେବ । ମୁଁ କହୁଛି ତୁ ଶୁଣ୍ । କେହି ମିଶା ଜାଣିବେ ନାହିଁ । ସେ ସାହୁକାରକୁ ଯଦି ଧରି ପାରିବୁ, ତୁ ଯାହା ଇଚ୍ଛା କରିବୁ ତା ପାଇବୁ । କପାଳରେ ଥିଲେ ସୁନା ଗୋଟେ ଧୁଇଁଟା ରୂପା ମିଶା ପାଇ ପାରିବୁ । ମୋ କଥା ଶୁଣ୍ ତୁ ଆଉ ନାହିଁ କରନା ।"

"ତୁ ମୋତେ ନଶେଇବାକୁ ବସିଛୁ ମଧୁ, ଛି, ଛି, ଆମେ କବୁ, ଆମେ ନାଚୁ ।" କହି ଦ' ପାହୁଣ୍ଡ ପଛେଇ ଗୁଲିଗଲା । ମଧୁ ଘାସି ଏ ସବୁ ଧରଣର ପହୁଡ ଭାବ ଚିହ୍ନା । କହିଲା "ଏତେ ତନ୍ଦ୍ରା ନାହିଁ । ସାହୁକାର ଏବେ ଘରକୁ ଯାଇଛି, କେତେଦିନ ଗଲେ ଆସିବ । ଏବେ ନାହିଁ କରୁଥା ପଛେ, ସେତେବେଳେ ଆଉ ନାହିଁ କରିବୁ ନାହିଁ । ସଉକୁ ଗୋଟେ ଟଙ୍କା, ବୁଝିଲୁ ତୁ ଯା ମୁଁ ପରେ ଆସିବି ତା ।"

ମଧୁଘାସି ଗୁଲିଗଲା, କହି ଭାବ ରଗିଲା ପରି ଦଶୁଥାଏ । ସତେ ଏତେ ସାହାସ । ତୁ ଗାଁର କୋଉ ଶୁଣ୍ଡିପଟକାର, ବୁଢ଼ା ଡୋକା । ଏମିତି ଟଙ୍କା ଦେଇଜାଣେ ସେ । ଏବେ ବାପାକୁ କହି ଦେଲେ ମଧୁଘାସିର ପାଇଟି କରି ଦେବ ନାହିଁ କି ସେ ? ଏତେ କଥା ।

କଥା ଗୁଡ଼ାକ ଆଉ ତା'ର ଭାବ ଖୁବ୍ ଚଞ୍ଚଳ ଗାଡ଼ ଯୋଖି ଦେଇ ପରି ଘଡ଼ ଘଡ଼ ହୋଇ ଗଡ଼ ଗୁଲିଗଲା ତା'ର ମନ ଭିତରେ । ଆଉ ସେହି ଗାଈ ସାଙ୍ଗେ ସତେ ଯେମିତି ଗୁଡ଼ାଏ ତତଲା ପବନ, ଯାହା ସବୁ ମିଲ ସବୁ ଶୁଖେଇ ଗଡ଼େଇ ଦେଇଯାଏ, ତତଲା ପବନ ଗୁଡ଼ାଏ ଗୁଲିଲା ଭଉଁରି ଖେଳ । କିନ୍ତୁ ଥରେ ମୋଟେ, ଥରେ ତା'ର ମୁଣ୍ଡର ଶିରଗୁଡ଼ାକ ଟଣକେଇ କାନମୂଳ ତତେଇ ଦେଇ ଧରଣୀଗୁଡ଼ାକ ଗୁଲିଗଲା । ତାପରେ, ଏ ତାଢର ସିହ୍ନା ଦାଗ 'ବ ରହିଲା ନାହିଁ କୋଉଠି । ମଧୁଘାସିର କଥା ଗୁଡ଼ାକ ମନ ଗହ୍ୱରକୁ ବୁଡ଼ିଗଲା ।

ଟାଣୁଆ ହୋଉ ପଛେ, ସେ ମଜ୍ଜି ।

ତା'ପରେ ଦନଗୋଷ୍ଠାର ଜନା କଥାରେ ଖାଲି ଅପଣା ଉପରେ ଚିଡ଼ ଚିଡ଼ ଲାଗୁଥାଏ, ଯଣ୍ଡ ଅସ୍ତବ ଅଖିରେ ପଡ଼ୁଥାଏ । ଲୁଗା ଖଣ୍ଡେ ବି ଦର ଦେଇ ନାହିଁ । ବାପାଙ୍କୁ କହୁଚନ୍ତି ବି କିଛି ଫଳ ନାହିଁ । କି ସୁନ୍ଦର ଝୁମ୍ପିରେ ଥିଲି ସେ ବେଡ଼ ପାଇଟି ଉପରେ; ଏବେ ଦେଖ, କେଡ଼େ ଦଇସ୍ୱଣ । ଚିଡ଼ ଚିଡ଼ ଲାଗୁଥାଏ, ମନ ଉଚାଟୁ—ବାହାର ମନରେ ଏଇ ଧାରଣା ଅସୁଥାଏ, ଅଉ ଥରେ ଅସନ୍ତା କି ମଧୁଘାସି ତା'ର ମୁଣ୍ଡଟା ଗେଡ଼େଇ ଗେଡ଼େଇ ଖାଇଲେ ହୁଅନ୍ତା, ମହା ପଟ୍‌କାର ସେ ।

ଘରେ ନଡବାଲା କହୁଛି "ମୁହଁଟା ହାଣ୍ଡିପରି କରିଚୁ କାହିଁକି ଅଣା, ହାଣ୍ଡି—ନାଇଁ ତ, ଚଳୁନ ପିଠା ପରି । ଟିକିଏ ହସ ମୁଁ ଦେଖୁଁଦେଖୁଁଟା ଅଣେ । ଏ ବଲ, ତୁ ଟିକିଏ ନାଚ୍ ।"

ମୁଦ୍ରାକର—ଶ୍ରୀ ନୀଳମଣି ସାଉତସି, ପ୍ରଜାତନ୍ତ୍ର ପ୍ରେସ, କଟକ—୧୯୫୦

ମୁଦ୍ରାକର:—
ଶ୍ରୀ ନୀଳମଣି ରାଉତରା
ପ୍ରଜାତନ୍ତ୍ର ପ୍ରେସ, କଟକ
୧୯୫୦